# ବାରିପଦା ବାରିପଦା

(ସ୍ମୃତିକଥା)

**ଲେଖକ :**
ପ୍ରିୟବ୍ରତ ଦାସ

*ପ୍ରଥମ ପ୍ରକାଶ:* ୨୦୦୦

*ପ୍ରକାଶକ :*
ମହାବୀର ପ୍ରକାଶନ
ପୁରୁଣା ବସ୍‌ଷ୍ଟାଣ୍ଡ ପାଖ
ଅଶୋକ ନଗର, ଭୁବନେଶ୍ୱର-୯

*ପ୍ରଚ୍ଛଦ ଅଙ୍କନ :*
ବିଜୟ କୁମାର ପ୍ରଧାନ

*ମୁଦ୍ରଣ ଏବଂ ଅକ୍ଷର ସଜ୍ଜା :*
ପଦ୍ମା କମର୍ସିଆଲ ସେଣ୍ଟର
୪୨, ମଧୁସୂଦନ ନଗର,ୟୁନିଟ୍-୪,
ଭୁବନେଶ୍ୱର-୧, ଫୋନ୍-୪୦୨୧୬୨



*ମୂଲ୍ୟ :* ଟ୫୦.୦୦ମାତ୍ର

**BARIPADA BARIPADA**

*(Memoir)*

***Author :***
Priyabrata Das

***First Edition :*** 2000

***Publishers :***
Mahabir Prakashan
Near Old Bus-stand,
Ashok Nagar,
Bhubaneswar-9

***Cover design :***
Bijoy Kumar Pradhan

***DTP & Printed at :***
Padma Commercial Centre
42, M.S. Nagar, Unit-4,
Bhubaneswar-1, Ph:402162



**Price : Rs.50/-only**

ଶ୍ରୀମତୀ ସୁଦୀପ୍ତା ପଟ୍ଟନାୟକ
ଶ୍ରୀମାନ ମନମୋହନ ପଟ୍ଟନାୟକ
**କଲ୍ୟାଣୀୟେଷୁ**

## ଲେଖକଙ୍କର ଅନ୍ୟ କେତେଖଣ୍ଡ ବହି

| | | | |
|---|---|---|---|
| ୧. | ଧୂସର ଧରିତ୍ରୀ | - | ଗଳ୍ପ ସଙ୍କଳନ |
| ୨. | କାଇଁଚ ଫୁଲର କଥା | - | ,, |
| ୩. | ନିରଞ୍ଜନା | - | ,, |
| ୪. | ସ୍ୱର୍ଣ୍ଣ କମଳ | - | ,, |
| ୫. | ଚତୁର୍ଗୃହ | - | ଉପନ୍ୟାସ |
| ୬. | ଜୀବନ ସଂହିତା | - | ,, |
| ୭. | ପ୍ରଜାପତିର ରଙ୍ଗ | - | ,, |
| ୮. | ମୁକ୍ତି | - | ,, |
| ୯. | ସୁରଭି | - | ,, |
| ୧୦. | ବିବିନଗରର ଉପକଥା | - | ,, |
| ୧୧. | ଜିଘାଂସା | - | ,, |
| ୧୨. | ସନ୍ଧିକାଳ | - | ,, |
| ୧୩. | ମହାଭାରତ କଥା | - | ଶିଶୁ ସାହିତ୍ୟ |
| ୧୪. | ଦୁଇ ସଙ୍ଗାତ କଥା | - | ,, |
| ୧୫. | ପଦଚିହ୍ନ | - | ସ୍ମୃତି କଥା |

*ରସରାସମୟୀ କଳା କୁଞ୍ଜଭୂମୀ*

*ତୁ ସୁନ୍ଦରୀ ନର୍ମଦା*

*ବାରିପଦା ବାରିପଦା*

*ପ୍ରବାସୀ କବିର ଅନ୍ତର ତଳେ*

*ଜାଗ୍ରତ ତୁହି ସଦା*

*ବାରିପଦା ବାରିପଦା ।*

ଏହା ଥିଲା କବି ରାଧାମୋହନ ଗଡ଼ନାୟକଙ୍କର ବାରିପଦା ସହର ପ୍ରତି ଶ୍ରଦ୍ଧାର୍ଘ୍ୟ । ଅନେକ ଦିନ ତଳେ ଥରେ ମୁଁ ଗଡ଼ନାୟକଙ୍କୁ ପଚାରିଥିଲି, 'ବାରିପଦା କଣ ଆପଣଙ୍କୁ ଏତେ ଭଲ ଲାଗିଥିଲା ଯେ ଆପଣ ବାରିପଦାକୁ ନେଇ ଏମିତି ଗୋଟିଏ ରୋମାଣ୍ଟିକ କବିତା ଲେଖିଦେଲେ ?'

ମୁଁ ତାଙ୍କୁ ଏ କଥା ପଚାରିବାର ପ୍ରାୟ ପଚିଶ ବର୍ଷ ପୂର୍ବରୁ ତାଙ୍କର ବାରିପଦା ସହ ଯୋଗାଯୋଗ ଥିଲା । ଗଡ଼ଜାତ ପ୍ରଜାଆନ୍ଦୋଳନ ସଙ୍ଗଠନ କାମରେ ସେ ବାରିପଦା ଯାଉଥିଲେ । ଏକାଦିକ୍ରମେ ବେଶିଦିନ ରହୁନଥିଲେ ସେ ସେଠାରେ । ତଥାପି ତାଙ୍କର ବାରିପଦାକୁ ନିୟମିତ ଯିବା ଆସିବା ଥିଲା । ତାପରେ ସେ ଅନେକ ଦିନ ହେବ ବାରିପଦା ଯାଇନଥିଲେ । ବାରିପଦା ସହିତ ତାଙ୍କର ଯୋଗାଯୋଗ ବିଚ୍ଛିନ୍ନ ହୋଇଯାଇଥିଲା ।

ମୋ ପ୍ରଶ୍ନ ଶୁଣି କବି ଗଡ଼ନାୟକ ଆଖି ବୁଜି ମନେ ମନେ ଚିନ୍ତା କଲେ କେତେ ସମୟ । ସ୍ମୃତିଚାରଣ କଲେ ବୋଧହୁଏ । ତାପରେ ଆଖିଖୋଲି ମୋତେ ଉଜ୍ଜ୍ୱଳ ଦୃଷ୍ଟିରେ ଚାହିଁ କହିଲେ- 'ଅପୂର୍ବ ।'

ସତରେ ଅପୂର୍ବ ଥିଲା ସେ ସମୟର ବାରିପଦା ସହର । ମୁଁ ଚଳିତ ଶତାବ୍ଦୀର ତିରିଶରୁ ପଚାଶ ଦଶକର ବାରିପଦା ସହର କଥା କହୁଛି । ମୋର ବାଲ୍ୟ ଓ କୈଶୋରର ବାରିପଦା । ଆଜିକାଲିର ପରିଭାଷା ଅନୁଯାୟୀ ସେତେବେଳର ବାରିପଦାକୁ ଗୋଟିଏ ସହର ରୂପେ ନିରୂପିତ କରାଯିବା କଥା ନୁହେଁ । ମାତ୍ର ଆଠଦଶ ହଜାର ଜନସଂଖ୍ୟା ବିଶିଷ୍ଟ କୌଣସି ଜନପଦକୁ ଆଜିକାଲି ସହର ସଂଜ୍ଞା ଦିଆଯାଉନାହିଁ । କିନ୍ତୁ ପ୍ରାକ୍ତନ ନେଟିଭ ଷ୍ଟେଟ୍

ମୟୂରଭଞ୍ଜର ରାଜଧାନୀ ବାରିପଦା ଗୋଟିଏ ସହର ଥିଲା । ସେହି ସହରର ରାସ୍ତା ବିଜୁଳି ଆଲୁଅରେ ଆଲୋକିତ ହେଉଥିଲା । ସହରରେ ପାଇପ୍ ପାନୀୟ ଜଳ ଯୋଗାଣ ବ୍ୟବସ୍ଥା ଥିଲା । ରାସ୍ତା ଧାରରେ ପିଇବା ପାଣି କଳ ବସିଥିଲା । ସହରର ସାଧାରଣ ସ୍ୱାସ୍ଥ୍ୟ ଓ ପରିମଳ ସେବା ଗୋଟିଏ ପୌର ପାଳିକା ହାତରେ ସମର୍ପିତ ହୋଇଥିଲା । ସେତେବେଳେ ଏ ସବୁ ବ୍ୟବସ୍ଥା ଓଡ଼ିଶାର ଅନ୍ୟ କୌଣସି ସହରରେ ନଥିଲା । ଏପରିକି କଟକ ସହରରେ ବିଜୁଳି ଆଲୁଅ ଓ ପାଣିକଳ ବ୍ୟବସ୍ଥା ହୋଇଥିଲା ଅନେକ ପରେ । ସେହିପରି ବାରିପଦା ସହରରେ ଅନେକ ଦିନୁ ଟେଲିଫୋନ ସେବା ଥିଲା । ଯାହା ଓଡ଼ିଶାର ଅନ୍ୟାନ୍ୟ ସହରରେ ଅନେକ ପରେ ପ୍ରବର୍ତ୍ତିତ ହୋଇଥିଲା । ବାରିପଦା ସହରରେ ଅନେକ ମୋଟର ଗାଡ଼ିଥିଲା । କେବଳ ମୟୂରଭଞ୍ଜ ମହାରାଜାଙ୍କର ପଚାଶରୁ ଅଧିକ ମୋଟର ଗାଡ଼ି ଥିଲା । ସେଥି ମଧ୍ୟରୁ ଅନେକଗୁଡ଼ିଏ ଥିଲା ରୋଲ୍ସରଏସ୍ କିମ୍ୱା ମର୍ସିଡିଜ୍ ବେଞ୍ଜ ଭଳି ଅତି ମୂଲ୍ୟବାନ ମୋଟର ଗାଡ଼ି । ତାଛଡ଼ା ପଦସ୍ଥ ରାଜକର୍ମଚାରୀ ଓ ଅନ୍ୟାନ୍ୟ ସମ୍ଭ୍ରାନ୍ତ ଲୋକମାନେ ମଧ ମୋଟର ଗାଡ଼ି ରଖୁଥିଲେ । ସହର ମଧ୍ୟରେ ପରିବହନ ପାଇଁ ଭଡ଼ାରେ ସବାରୀ ଘୋଡ଼ା ଗାଡ଼ି ମିଳୁଥିଲା । ବାରିପଦାରେ ହାତଟଣା ରିକ୍ସା ନଥିଲା । ଉଠାଣି ଗଡ଼ାଣି ରାସ୍ତାରେ, ରିକ୍ସା ଟିଡ଼ିବା ଅତି କଷ୍ଟସାଧ ଥିଲା । କିନ୍ତୁ ସାଇକେଲ ରିକ୍ସା ପ୍ରଚଳନ ପରେ ବାରିପଦା ସହରରେ ସାଇକେଲ ରିକ୍ସା ଚାଲି, ଘୋଡ଼ାଗାଡ଼ି ଉଠିଯାଇଥିଲା ।

ବାରିପଦା ସହରକୁ ବହିର୍ଜଗତ ସହିତ ସଂଯୁକ୍ତ କରି ରଖିଥିଲା ମୟୂରଭଞ୍ଜ ଲାଇଟ ରେଲୱେର ଅଢ଼େଇଫୁଟ ଓସାରର ନେରୋଗଜ ରେଳଗାଡ଼ି । ଚଳିତ ଶତାବ୍ଦୀର ପ୍ରାରମ୍ଭରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ରୂପସା ଠାରୁ ତାଳବନ୍ଧ ପର୍ଯ୍ୟନ୍ତ ଏହି ଛୋଟ ରେଳପଥଟି ନିର୍ମାଣ କରିଥିଲେ । ଆରମ୍ଭରୁ ବି.ଏନ୍.ଆର୍ କମ୍ପାନୀ ମହାରାଜାଙ୍କ ଏଜେଣ୍ଟ ହିସାବରେ ଏହି ରେଳପଥ ପରିଚାଳନା କରୁଥିଲେ । ପରବର୍ତ୍ତୀ କାଳରେ ବି.ଏନ୍.ଆର କମ୍ପାନୀ ଏହି ରେଳପଥକୁ କିଣିନେଇଥିଲେ ଓ ନିୟମିତ ଭାବେ ରୂପସାଠାରୁ ବାଙ୍ଗିରିପୋଷି ପର୍ଯ୍ୟନ୍ତ ରେଳସେବା ଯୋଗାଉଥିଲେ । ଆଜିବି ସାଉଥ୍ ଇଷ୍ଟର୍ଣ୍ଣ ରେଳବାଇ ଅଧୀନରେ ରୂପସା ଠାରୁ ବାଙ୍ଗିରିପୋଷି ଭିତରେ ଏଇ ଛୋଟ ରେଳଗାଡ଼ି ଚଳାଚଳ କରୁଚି । ଇତି ମଧ୍ୟରେ ଭାରତବର୍ଷରେ ପ୍ରଚଳିତ ଅଧିକାଂଶ ନେରୋ ବା ମିଟାରଗଜ ରେଳପଥ ବ୍ରଡ଼ଗଜ ରେଳପଥରେ

ରୂପାନ୍ତରିତ ହୋଇସାରିଛି । କିନ୍ତୁ ଦେଶ ସ୍ୱାଧୀନ ହେବାର ଅର୍ଦ୍ଧ ଶତାବ୍ଦୀ ପରେ ମଧ୍ୟ ବାରିପଦାର ଛୋଟ୍ ରେଳର ଭାଗ୍ୟ ପରିବର୍ତ୍ତନ ହୋଇନାହିଁ । ପ୍ରତି ସାଧାରଣ ନିର୍ବାଚନ ପୂର୍ବରୁ ଏହି ଛୋଟ ରେଳଲାଇନକୁ ବଡ଼ଲାଇନ କରି ବାଦାମ୍ ପାହାଡ଼ ଦେଇ ଟାଟାନଗରରେ ସଂଯୋଗ କରିବା ପାଇଁ ନିର୍ବାଚନ ଲଢୁଥିବା ପ୍ରାର୍ଥୀମାନେ ପ୍ରତିଶ୍ରୁତି ଦିଅନ୍ତି । କେବେ କେମିତି ଏହି କାମର ଶୁଭ ବି ଦିଆଯାଏ । କିନ୍ତୁ ନିର୍ବାଚନ ସରିଗଲେ କୌଣସି କାମ ହୁଏ ନାହିଁ । ସମସ୍ତେ କଥାଟାକୁ ସହଜରେ ପାଶୋରି ଦିଅନ୍ତି । ମୟୂରଭଞ୍ଜ ବାସୀଙ୍କ ପାଇଁ ପ୍ରତାରଣାର ପ୍ରତୀକ ହୋଇ ରୂପସା ଠାରୁ ବାଙ୍ଗିରିପୋଷି ପର୍ଯ୍ୟନ୍ତ ସତୁରି ମାଇଲ ଲମ୍ବର ଛୋଟ ରେଳପଥଟି ଆଜିବି ରହିଚି । ଅବଶ୍ୟ ବହିର୍ଜଗତ ସହିତ ସଂଯୋଗ ସ୍ଥାପନ ପାଇଁ ବାରିପଦା ଲୋକମାନେ ଆଉ ରେଳସେବା ଉପରେ ନିର୍ଭର କରୁନାହାନ୍ତି । ବର୍ତ୍ତମାନ ବାରିପଦା, କଲିକତା, ଟାଟାନଗର, ବାଲେଶ୍ୱର, କଟକ, ପୁରୀ, ଭୁବନେଶ୍ୱର, କେଉଁଝର ପ୍ରଭୃତି ବିଭିନ୍ନ ସହର ସହିତ ବସ ସେବା ଦ୍ୱାରା ସଂଯୁକ୍ତ । ରେଳ ଯୋଗେ ଦୂରସ୍ଥାନକୁ ଯିବାକୁ ଚାହୁଁଥିବା ଲୋକମାନେ ରୂପସା ପରିବର୍ତ୍ତେ ବାଲେଶ୍ୱର ଷ୍ଟେସନରୁ ଗାଡ଼ି ଧରିବାକୁ ପସନ୍ଦ କରୁଛନ୍ତି । ବାଲେଶ୍ୱର ବଡ଼ ଷ୍ଟେସନ, ସେଠାରେ ସବୁଗାଡ଼ି ଅଧିକ ସମୟ ରହେ । ତେଣୁ ସେଠାରୁ ଗାଡ଼ି ଧରିବା ସୁବିଧାଜନକ ।

ମୟୂରଭଞ୍ଜ ଷ୍ଟେଟର ରାଜଧାନୀ ବାରିପଦାରେ କୋର୍ଟ କଚେରୀ ଥିଲା ସେକ୍ରେଟେରିଏଟ ଆଉ ହାଇକୋର୍ଟ ଥିଲା । ପରମାନନ୍ଦ ଆଚାର୍ଯ୍ୟଙ୍କ ଗୋଟିଏ ବିବରଣୀରୁ ଜଣାଯାଏ ଯେ ବାରିପଦା ଦଣ୍ଡପାଟ ଭଞ୍ଜରାଜବଂଶକୁ ଓଡ଼ିଶା ରାଜାଙ୍କଠାରୁ ଯୌତୁକ ସୂତ୍ରରେ ମିଳିବା ପରେ ମୟୂରଭଞ୍ଜର ରାଜଧାନୀ ଖିଚିଂରୁ ବାରିପଦାକୁ ସ୍ଥାନାନ୍ତରିତ ହୋଇଥିଲା । ପରେ ଏହା ଦକ୍ଷିଣରେ ୧୧ମାଇଲ ଦୂରବର୍ତ୍ତୀ ହରିପୁରକୁ ସ୍ଥାନାନ୍ତରୀତ ହୋଇଥିଲା । ମୁସଲମାନ ଓ ବର୍ଗୀମାନଙ୍କ ଆକ୍ରମଣରେ ହରିପୁର ଧ୍ୱଂସ ହୋଇଯାଇଥିଲା । ୧୮୦୩ରେ ଓଡ଼ିଶା ବ୍ରିଟିଶ ଶାସନାଧୀନ ହେବାପରେ ମହାରାଜା ତ୍ରିବିକ୍ରମ ଭଞ୍ଜ ହରିପୁରରୁ ବାରିପଦାକୁ ରାଜଧାନୀ ଉଠାଇ ଆଣିଥିଲେ । ହାକିମ ଅମଲାମାନେ ବାରିପଦାରେ ରହୁଥିଲେ, ଓକିଲ ମୁକ୍ତାରମାନେ ରହୁଥିଲେ । ବାରିପଦାରେ ସ୍କୁଲ ଥିଲା- ଖୁବ୍ ବଡ଼ ସ୍କୁଲ ହଜାରେ ବାରଶହ ପିଲା ପଢୁଥିଲେ ସେ ସ୍କୁଲରେ । ବଡ଼ ଡାକ୍ତରଖାନା ଥିଲା, ସେ ଡାକ୍ତରଖାନାରେ ଏକ୍ସରେ ବ୍ୟବସ୍ଥା ଥିଲା । ସ୍ତ୍ରୀ ଓ ପ୍ରସୂତୀ ମାନଙ୍କ ପାଇଁ ଅତି ଆଧୁନିକ ଜନାନା

ହସ୍‌ପିଟାଲ ଥିଲା । ଏହି ଡାକ୍ତରଖାନାରେ ଚିକିତ୍ସିତ ହେବାପାଇଁ ଦୂର ଦୂରାନ୍ତରୁ ରୋଗୀମାନେ ଆସୁଥିଲେ । ବାରିପଦା ସହର ମଧ୍ୟସ୍ଥଳରେ ଗୋଟିଏ ସୁପରିକଳ୍ପିତ ଦୈନିକ ବଜାର ଥିଲା । ତା ନାମ ଥିଲା ଗୁଜୁରି ବଜାର । ବହୁ ପଣ୍ୟ ସମ୍ଭାରରେ ସମୃଦ୍ଧ ହୋଇ ରହୁଥିଲା ତାର ବିପଣୀ ସବୁ । ଗୋଟିଏ ଆଧୁନିକ ସହରରେ ଯେଉଁସବୁ ସୁଖ ସୁବିଧା ଓ ସ୍ୱାଚ୍ଛନ୍ଦ୍ୟ ମିଳିବା କଥା ସେ ସବୁ ଥିଲା ବାରିପଦାରେ ।

ଏହି ସହରୀ ଚାକଚକ୍ୟ କଣ ଥିଲା ବାରିପଦାର ବୈଭବ ? ତାହାହିଁ କଣ ମୁଗ୍ଧ କରିଥିଲା ପ୍ରବାସୀ କବି ରାଧାମୋହନଙ୍କୁ ? ସେଇଥିପାଇଁ କଣ ବାରିପଦାର ସବୁ ଅଧିବାସୀ ଏତେ ଭଲ ପାଉଥିଲେ ସେମାନଙ୍କ ପ୍ରିୟ ସହରଟିକୁ ? ବାରିପଦାରୁ ବିଚ୍ଛିନ୍ନ ହୋଇ ରହିବାପାଇଁ କୌଣସି ବାରିପଦାବାସୀ କେବେ ବି ଚିନ୍ତା କରି ପାରୁନଥିଲେ । ବାରିପଦାର ବହୁ ଶିକ୍ଷିତ ଓ ଯୋଗ୍ୟ ବ୍ୟକ୍ତିଙ୍କର ବାରିପଦା ବାହାରେ ଅଧିକ ଆୟକାରୀ ଜୀବିକା ଖୋଜି ନେବାପାଇଁ ସୁଯୋଗ ଥିବା ସତ୍ତ୍ୱେ ସେମାନେ ବାରିପଦା ଛାଡ଼ି ଯାଉନଥିଲେ । ଚଳିବା ମୁତାବକ କିଛି ଗୋଟିଏ ଚାକିରି ଯୋଗାଡ଼ କରି ସେମାନେ ରହିଯାଉଥିଲେ ବାରିପଦାରେ । ଜୀବିକା ବ୍ୟତୀତ ସେମାନଙ୍କ ପାଇଁ ବହୁ ଆକର୍ଷଣ ଥିଲା ବାରିପଦାରେ ।

ବାରିପଦା ସହର ପ୍ରଥମେ କିଏ ଓ କେବେ ପତ୍ତନ କରିଥିଲା ତାର ସଠିକ ଇତିହାସ ମୁଁ ଜାଣେ ନାହିଁ । ଯେତେଦୂର ଜଣାଯାଏ ବାରିପଦା ଗୋଟିଏ ବହୁ ପୁରାତନ ଗ୍ରାମଥିଲା । ଷୋଡ଼ଶ ଓ ସପ୍ତଦଶ ସପ୍ତାବ୍ଦୀ ବେଳକୁ ବାରିପଦାର ରାଜନୈତିକ ଗୁରୁତ୍ୱ ବୃଦ୍ଧି ପାଇଥିଲା । ଭଞ୍ଜରାଜାମାନେ ଏଠାରେ ରାଜଧାନୀ ସ୍ଥାପନ କରିବା ପୂର୍ବରୁ ବଗସାମଲ ଗଡ଼ ବୋଲି ଗୋଟିଏ ମାଟିର ଦୁର୍ଗ ନିର୍ମାଣ କରିଥିଲେ ଓ ମହାରାଜା ବୈଦ୍ୟନାଥ ଭଞ୍ଜ ବାରିପଦାର ବଡ଼ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ବଗସାମଲ ଗଡ଼ର ଧ୍ୱଂସାବଶେଷ, ତାର ଗଡ଼ଖାଇ ଇତ୍ୟାଦି ବହୁଦିନ ଧରି ରହିଥିଲା । କୁହାଯାଏ ଏଠାରେ ଗୋଟିଏ ସାମଲ ପକ୍ଷୀ (ଛଞ୍ଚାଣ)କୁ ଗୋଟିଏ ବଗ ମାଡ଼ି ବସି କାବୁ କରିଦେଇଥିବା ଭଳି ଏକ ବିସ୍ମୟକର ଦୃଶ୍ୟ ଦେଖିବା ପରେ ଏହି ସ୍ଥାନର କୌଣସି ମହାତ୍ମ୍ୟ ଅଛି ଭାବି, ଜଣେ ଭଞ୍ଜରାଜା ବଗସାମଲ ଗଡ଼ ସ୍ଥାପନ କରିଥିଲେ । ଏହି ଦୁର୍ଗର ଗଡ଼ଚଣ୍ଡୀଥିଲେ ଅମ୍ବିକା । ଆମ ପିଲାଦିନେ ଅମ୍ବିକା ଗୋଟିଏ ଛୋଟିଆ ମନ୍ଦିରରେ ଗ୍ରାମଦେବୀ ଭାବେ ପୂଜିତା ହେଉଥିଲେ । ବାରିପଦାର ଏପରି

ନାମକରଣ କାହିଁକି ହେଲା ସେ ବିଷୟରେ ମତ ଦେଇ ପ୍ରାଚ୍ୟବିଦ୍ୟା ମହାର୍ଣ୍ଣବ ସାର୍ ଏନ. ଏନ. ବୋଷ କୁହନ୍ତି ଯେ ଏଠାରେ ପୂର୍ବେ ବାଉରୀ ବା ବାଥୁଡ଼ିମାନଙ୍କ ବସତି ଥିବାରୁ ଏହାର ନାମ ପ୍ରଥମେ ବାଉରିପଦା ହୋଇଥିଲା; ପରେ ଅପଭ୍ରଂଶ ହୋଇ ତାହା ବାରିପଦା ହୋଇଛି । କିନ୍ତୁ ବାରିପଦା ଓ ତାର ନିକଟବର୍ତ୍ତୀ ଅଞ୍ଚଳରେ ବାଉରି ବା ବାଥୁଡ଼ିମାନେ ବସବାସ କରୁ ନଥିବାରୁ ଏପରି ଅନୁମାନ ଯଥାର୍ଥ ବୋଲି ମନେହୁଏ ନାହିଁ । ବରଂ ଏହି ସହରକୁ ବୁଢ଼ାବଳଙ୍ଗ ଚିପଟ ଛରାଳି ସରାଳି ଶୁକଯୋଡ଼ା ପ୍ରଭୃତି ଅନେକ ନଦୀ ନାଳ ଘେରି ରହିଥିବାରୁ, ଏହି ବାରିପୂର୍ଣ୍ଣ ଅଞ୍ଚଳର ବାରିପଦା ନାମକରଣ କରାଯାଇଥିଲା ବୋଲି ଅନେକେ ମତ ଦିଅନ୍ତି ଓ ତାହା ଯୁକ୍ତିଯୁକ୍ତ ବୋଲି ମନେହୁଏ ।

ସେ ଯାହା ହେଉନା କାହିଁକି ବାରିପଦା ଅବିନ୍ୟସ୍ତ ଭାବେ ଗଢ଼ିଉଠିଥିବା ଗୋଟିଏ ଜନପଦ ନଥିଲା । ଏହାଥିଲା ସୁପରିକଳ୍ପିତ ଗୋଟିଏ ସହର, କୁଞ୍ଜବନ ପରି ସଜା ହୋଇଥିବା ଛୋଟ ଗୋଟିଏ ସହର । ସହରର ମଧ୍ୟସ୍ଥଳରେ ଥିଲା ରାଜପ୍ରାସାଦ । ତାକୁ ଲୋକେ ରାଜବାଟି ବୋଲି କହୁଥିଲେ । ରାଜବାଟି ପଛପଟେ ବୋହି ଯାଉଥିଲା ବୁଢ଼ାବଳଙ୍ଗ ନଦୀ ଆଉ ପଶ୍ଚିମର ଦୂର ଦିଗ୍‌ବଳୟରେ ଦେଖା ଯାଉଥିଲା ଶ୍ୟାମଳ ଶିମିଳିପାଳ ପର୍ବତମାଳା । ଆଗରୁ କହିଛି ଏଇ ସହରକୁ ଘେରି ରହିଥିଲେ କେତେଗୁଡ଼ିଏ ଛୋଟବଡ଼ ନଦୀ । ସେମାନଙ୍କ ଭିତରେ ବୁଢ଼ାବଳଙ୍ଗ ପ୍ରଧାନ । ଏହାକୁ ବଳଙ୍ଗ ବି କହନ୍ତି । କବିବର ରାଧାନାଥ କାବ୍ୟକରି ଏହି ନଦୀର ନାମକରଣ ବଳାଙ୍ଗୀ ବୋଲି କରିଥିଲେ । ଏହି ନଦୀ ଖୁବ୍ ବଡ଼ ନୁହେଁ । ଶିମିଳିପାଳ ପର୍ବତରୁ ନିର୍ଗତ ହୋଇ ଏହା କିଛିଦୂର ଉତ୍ତର ଓ ଉତ୍ତରପୂର୍ବ ଦିଗରେ ପ୍ରବାହିତ ହେବାପରେ ଦକ୍ଷିଣାଭିମୁଖୀ ହୋଇ ବାରିପଦା ନିକଟ ଦେଇ ବୋହିଯାଇ ବାଲେଶ୍ୱର ସହରର ଅନତିଦୂରରେ ବଳରାମଗଡ଼ି ଠାରେ ବଙ୍ଗୋପସାଗରରେ ପଡ଼ିଅଛି । ସବୁ ବର୍ଷା ପ୍ଲାବିତା ନଦୀ ଭଳି ବଳଙ୍ଗରେ ମଧ୍ୟ ବର୍ଷାଋତୁରେ ପାଣି ରହେ । ଅନ୍ୟ ଋତୁମାନଙ୍କରେ କ୍ଷୀଣତୋୟା ନଦୀ ବାଲୁକା ଶଯ୍ୟାରେ ଝରି ଝରି ହୋଇ ବୋହିଯାଏ । ସୂର୍ଯ୍ୟାଲୋକରେ ନଦୀବାଲି ହୀରାକଣି ପରି ଝକ୍ ମକ୍ କରିଉଠେ । ଶରତରେ କାଶତଣ୍ଡୀ ବଣ ଉହାଡ଼ରେ ବଳଙ୍ଗକୁ ଦେଖି ମନେହୁଏ ସତେ ଯେମିତି ଗୋଟିଏ ଲାଜକୁଳି ଝିଅ ପ୍ରେମାସ୍ପଦର ବିମୁଗ୍ଧ ଦୃଷ୍ଟି ଆଗରେ ଆହୁରି ଲାଜେଇ ଯାଇ ଦୁଇ ହାତ ପାପୁଲିରେ ମୁହଁ ଡାକି ଦେଇଛି । ବଳଙ୍ଗକୁ

ଛାଡ଼ିଦେଲେ ଚିପଟ, ଝରାଳି, ସରାଳି, ଶୁକଯୋଡ଼ା ନଈଗୁଡ଼ିକ ବାରିପଦାକୁ ଘେରି ରହିଛନ୍ତି । ଏହି ନଦୀଗୁଡ଼ିକ ହେଲେ ବଳଙ୍ଗର ଉପନଦୀ - ବାରୁଣୀଘାଟ ନିକଟରେ ବଳଙ୍ଗ ସହିତ ମିଶି ଯାଇଛନ୍ତି । ତେବେ ଏମାନଙ୍କୁ ନଦୀ ନକହି ନାଳ କହିବା ଅଧିକ ସମୀଚୀନ ହେବ । ବଳଙ୍ଗ ପରି ତାର ଉପନଦୀ ଗୁଡ଼ିକରେ ବି କେବଳ ବର୍ଷାଋତୁରେ ପାଣି ରହେ । ଅନ୍ୟଦିନ ମାନଙ୍କରେ ଶୁଖିଲା ପଡ଼ିରହେ ନଦୀଶଯ୍ୟା । ସେହି ବାଲୁକା ଶଯ୍ୟାରେ ଚୁଆ ଖୋଳି ସେଥିରୁ ପିଇବା ପାଇଁ ସ୍ୱଚ୍ଛ ଜଳ ସଂଗ୍ରହ କରନ୍ତି ନଦୀକୂଳ ସାହିର ସୀମନ୍ତିନୀମାନେ । ସେତେବେଳର ବାରିପଦା-ରାଇରଙ୍ଗପୁର ରାସ୍ତାକୁ ବାରିପଦା ସହରର ପଶ୍ଚିମ ଉପକଣ୍ଠରେ ଛେଦ କରୁଥିଲା ଚିପଟ ନଦୀ । ତା ଉପରେ ପକାପୋଲ ଥିଲା । ଆମ୍ଭେମାନେ ସାନ୍ଧ୍ୟ ଭ୍ରମଣରେ ଚିପଟ ପୋଲ ପାଖକୁ ଯାଉଥିଲୁ ସୂର୍ଯ୍ୟାସ୍ତର ଶୋଭା ଦେଖିବା ପାଇଁ । ପଶ୍ଚିମ ଦିଗ୍‌ବଳୟର ପିଠାବଟା ଆଉ ଲୁଲୁଙ୍ଗ ପାହାଡ଼ ପଛପଟେ ସୂର୍ଯ୍ୟ ଲୁଚିଯିବା ଆଗରୁ ପଶ୍ଚିମ ଆକାଶଟା ବର୍ଣ୍ଣାଳୀର ସାତରଙ୍ଗରେ ବର୍ଣ୍ଣମୟ ହୋଇଯାଉଥିଲା । ଆକାଶର ସେହି ଇନ୍ଦ୍ରଧନୁ ରଙ୍ଗର ଓଢ଼ଣା ତଳେ ଜଣେ ସୁନ୍ଦରୀ ଲଲାଟରେ ଝଟକୁଥିବା ସିନ୍ଦୁର ବିନ୍ଦୁ ପରି ଆରକ୍ତ ସୂର୍ଯ୍ୟ ଧୀରେ ଧୀରେ ଢେଉ ଢେଉକା ପାହାଡ଼ ଆରପଟେ ଲୁଚି ଯାଉଥିଲେ । ତାପରେ ଆକାଶରୁ ସବୁରଙ୍ଗ ପୋଛିହୋଇ ଯାଇ ପଶ୍ଚିମର ଆକାଶଟା ଲାଲ ହୋଇଯାଉଥିଲା । ଏହାପରେ ସନ୍ଧ୍ୟା ତାର ପାଉଁଶିଆ ଶାଢ଼ୀ କାନିରେ ଆକାଶର ସିଲଟରୁ ସବୁରଙ୍ଗ ଆସ୍ତେ ଆସ୍ତେ ପୋଛି ଦେଉଥିଲା । ଗୋଧୂଳୀ ଆକାଶକୁ କଳରବରେ ମୁଖରିତ କରି ପକ୍ଷୀମାନେ ଫେରିଯାଉଥିଲେ ସେମାନଙ୍କ ନୀଡ଼କୁ । ଚିପଟ ନଈ ଆରପଟରେ ଥିବା ଗୋଚରକୁ ଚରିଯାଇଥିବା ଗୋରୁପଲ ଘରକୁ ଫେରୁଥିଲେ । ଆକାଶରେ ଗୋଟି ଗୋଟି ଫୁଟି ଉଠୁଥିଲେ ତାରାମାନେ ଆଉ ଆହାର ଅନ୍ୱେଷଣରେ ଉଡ଼ିଯାଉଥିଲେ ବାଦୁଡ଼ି ପଲ । ଆମେ ସବୁ ଚିପଟପୋଲ ବାଡ଼ା ଉପରେ ବସି ଗପ ଯୋଡ଼ିଦେଉଥିଲୁ ସନ୍ଧ୍ୟା ଆହୁରି ବିଳମ୍ବିତ ହେବାଯାଏ ।

ବାରିପଦା ସହରର ଉତ୍ତରରୁ ଦକ୍ଷିଣକୁ ଯାଇଥିବା ତିନୋଟି ପ୍ରଧାନ ସଡ଼କକୁ ପୂର୍ବରୁ ପଶ୍ଚିମକୁ ଯାଇଥିବା ଅନେକ ଗୁଡ଼ିଏ ସଡ଼କ ଛେଦ କରିଛନ୍ତି । ତେଣୁ ସହରର ଗୋଟିଏ ସ୍ଥାନରୁ ଅନ୍ୟ ଗୋଟିଏ ସ୍ଥାନକୁ ଯିବାପାଇଁ ଅନେକ ଗୁଡ଼ିଏ ବିକଳ୍ପ ରାସ୍ତା ମିଳେ । ରାଜୁଡ଼ା ଶାସନ ସମୟରେ ସହରର ରାସ୍ତାଗୁଡ଼ିକୁ

ପିଚୁ କରାଯାଇନଥିଲା । ସେଗୁଡ଼ିକ ଥିଲା ନାଲିଗୋଡ଼ି ସଡ଼କ । ପ୍ରତିବର୍ଷ ବର୍ଷାଋତୁ ଆରମ୍ଭରେ ସବୁ ସଡ଼କରେ ନାଲିଗୋଡ଼ି ବିଛାଯିବାପରେ ଭାରି ହାତଟଣା ରୋଲାର ଟଣାଯାଇ ସମତଳ କରାଯାଉଥିଲା । ଓଦା ମୋରମ ଶୁଖିଯିବାପରେ ଜମିଯାଇ ରାସ୍ତା ଶକ୍ତ ହୋଇଯାଏ । ଏଇ ରାସ୍ତାଉପରେ ଶଗଡ଼ ଚାଲିବା ବାରଣ ଥିଲା । ଗୋଡ଼ି ରାସ୍ତାରେ ଶଗଡ଼ ଚାଲିଲେ ଗୁଳା ପଡ଼ି ରାସ୍ତା ଖାଲ ଢିପ ହୋଇଯିବାର ଆଶଙ୍କା ଥିବାରୁ ସଡ଼କ ଧାରରେ ଶଗଡ଼ ଗୁଳା ବ୍ୟବସ୍ଥା ରହୁଥିଲା । ଓଡ଼ିଶା ସହିତ ମିଶ୍ରଣ ପୂର୍ବରୁ ମୟୂରଭଞ୍ଜରେ ୧୯୪୮ ମସିହାରେ ଯେଉଁ ଲୋକପ୍ରିୟ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା, ସେହି ସମୟରେ ବାରିପଦା ସହରର ସବୁରାସ୍ତାଗୁଡ଼ିକୁ ପିଚୁ କରାଯାଇଥିଲା ।

ପ୍ରତିଦିନ ଅନେକ ଶଗଡ଼ ଆସେ ବାରିପଦା ସହର ଭିତରକୁ । ମାର୍ଗଶୀର ମାସରେ ଧାନକଟା ସରିଲେ, ମଫସଲ ଚାଷ ଘରୁ ଧାନ କଳେଇ ବୋଝେଇ ଶଗଡ଼ ନେଇ ଭାଗଚାଷୀ ପ୍ରଜା ଆସି ସହରରେ ବାବୁମାନଙ୍କ ଘରେ ରାଜଭାଗ ଦେଇଯାନ୍ତି । ଜଙ୍ଗଲରୁ ଜାଳେଣି କାଠ ବୋଝେଇ ହୋଇ ବିକ୍ରିପାଇଁ ଶଗଡ଼ ଆସେ । ଯେଉଁ ମାନଙ୍କର ନିଜର ଶଗଡ଼ ଥାଏ ସେମାନେ ଜଙ୍ଗଲ ବିଭାଗରୁ ପ୍ରଜାଛାଡ଼ ନେଇ ବାରିପଦା ସହର ଉପକଣ୍ଠରେ ଥିବା ଖେସରା ଜଙ୍ଗଲରୁ ଜାଳେଣି କାଠ ସଂଗ୍ରହ କରିଆଣନ୍ତି । ଅନ୍ୟମାନେ ବିକ୍ରିପାଇଁ ଆସୁଥିବା କାଠ ଶଗଡ଼କୁ ମୂଲଚାଲ କରି କିଣନ୍ତି । ପରେ କାଠ ଚିରା ମୂଲିଆମାନେ ଆସି ସେହି ଗର କାଠକୁ ସରୁ ସରୁ କରି ଚିରିଦେଇ ଯାନ୍ତି । ବାଡ଼ବନ୍ଧୀ ପାଇଁ ପଳାଶଝଟା ବୋଝେଇ ହୋଇ ଶଗଡ଼ ଆସେ, ଘର ଛପର ପାଇଁ ବା ଗାଈଗୋରୁଙ୍କ ଖାଦ୍ୟପାଇଁ ନଡ଼ାକୁଟା ବୋଝେଇ ଶଗଡ଼ ଆସେ ।

ଶୀତଦିନେ ସକାଳ ଆଠଟା ଯାଏ ବାରିପଦା ସହର ବହଳିଆ କୁହୁଡ଼ି ଚଦର ଢାଙ୍କିହୋଇ ଘୁମାଇ ପଡ଼ି ରହିଥାଏ । ଆଠଟା ପରେ ଯାଇ ସୂର୍ଯ୍ୟ କୁହୁଡ଼ି ଆଢ଼େଇ ମୁହଁ ଦେଖାନ୍ତି, ଖରାପଡ଼େ । ଘାସ ପଡ଼ିଆରେ ଅସଂଖ୍ୟ କାକରବୁନ୍ଦା ଉପରେ ଝିଲିମିଲି କରି ଝଟକି ଉଠେ ସୂର୍ଯ୍ୟଙ୍କ ସୁନେଲି କିରଣ । ସକାଳ ଆଠଟାରେ ଟେଲିଫୋନ ଏକ୍ସଚେଞ୍ଜରୁ ସାଇରେନ୍‌ର ଶବ୍ଦ କୁହାଟି ଉଠେ । ସେ ଶବ୍ଦ ସାରା ସହରକୁ ଶୁଭେ । ସମସ୍ତେ ସଜାଗ ହୋଇଉଠନ୍ତି- ଆଠଟା ବାଜିଲା । ଏଥର ଉଠିବାକୁ ହେବ, ନିତ୍ୟକର୍ମ ଶେଷ କରି ସ୍କୁଲଯିବା ପାଇଁ, କଚେରି ଯିବାପାଇଁ ସମସ୍ତେ ତତ୍ପର ହୋଇଉଠନ୍ତି । ସର୍ବସାଧାରଣଙ୍କୁ ସମୟ ଜଣାଇ ଦେବାପାଇଁ ସକାଳ ଆଠଟା ଓ ରାତି ନ'ଟା ବେଳେ ସାଇରେନ୍

ଫୁଙ୍ଗା ବଜାଇବା ବ୍ୟବସ୍ଥା ଥିଲା ସେତେବେଳେ । ତାଛଡ଼ା ଟ୍ରେଜେରୀ, ଜେଲ୍‌ଖାନା ଓ ରାଜବାଟୀର ସଶସ୍ତ୍ର ପୋଲିସ୍ ସେଣ୍ଟ୍ରିମାନେ ପ୍ରତି ଘଣ୍ଟାରେ ଘଣ୍ଟା ବାଡ଼େଇ ସମୟ ଘୋଷଣା କରୁଥିଲେ । ସହରର ବହୁ ଅଞ୍ଚଳକୁ ସେସବୁ ଘଣ୍ଟାଧ୍ୱନୀ ଶୁଣାଯାଉଥିଲା ।

ଶୀତଦିନେ, ଖରା ନ ପଡ଼ିବାଯାଏ ରେଜେଇ ଭିତରୁ ବାହାରିବାକୁ ମନ ହୁଏନାହିଁ । ବଡ଼ିଭୋର୍‌ରୁ ନିଦ ଭାଙ୍ଗିଯାଇଥିଲେ ବି ଆମେ ରେଜେଇ ଭିତରେ ଘାଳେଇ ହୋଇ ପଡ଼ିରହି ଉଷୁମ୍ ଟାଣୁ ଆଉ ରାସ୍ତାରେ ଯାଉଥିବା ଶଗଡ଼ମାନଙ୍କର କେଁ କଟର ଶବ୍ଦ ଶୁଣୁ ।

ବାରିପଦାରେ ଶୀତଦିନେ ଯେମିତି ବହୁତ ଶୀତହୁଏ, ଖରାଦିନେ ସେମିତି ବହୁତ ଗରମ ହୁଏ । ଶୀତଦିନେ ସର୍ବନିମ୍ନ ଉତ୍ତାପ ସାତ ଆଠ ଡିଗ୍ରୀ ସେଲ୍‌ସିୟସକୁ ଖସି ଆସେ । ଆଉ ଖରାଦିନେ ବ୍ୟାରୋମିଟାରର ପାରା ବୟାଳିଶ, ତେୟାଳିଶ ଡିଗ୍ରୀକୁ ଉଠିଯାଏ । ନିଦାଘ ମଧ୍ୟାହ୍ନରେ ବାରିପଦାରେ ଅଗ୍ନି ବୃଷ୍ଟିହୁଏ । ଚରାଚରକୁ ଜାଳିଦେବାପାଇଁ ମହାକାଳ ଶିବଙ୍କ ତୃତୀୟ ନୟନରୁ ଉଦ୍‌ଗତ ହୁତାଶନ ବାରିପଦା ଆକାଶରେ ଘୂରିବୁଲେ । ରାତିର ବାୟୁମଣ୍ଡଳ ହୋଇଯାଏ ନିସ୍ତରଙ୍ଗ । ସେଥିରେ ସାମାନ୍ୟତମ କମ୍ପନ ବି ହୁଏନାହିଁ, ଗଛର ପତ୍ରଟିଏ ବି ହଲେ ନାହିଁ । ଓଃ ବଡ଼ ପୀଡ଼ାଦାୟକ ନିଦାଘର ସେହି ସବୁ ବିନିଦ୍ର ରଜନୀ । ଘର ଭିତରେ ଶୋଇବା ଅସମ୍ଭବ ହୋଇପଡ଼େ । ଅଧିକାଂଶ ଲୋକ ସଡ଼କଧାରରେ, ଅଗଣାରେ କିମ୍ବା କୋଠାଘରର ଖୋଲା ଛାତରେ ଦଉଡ଼ିଆ ଖଟିଆ ପକାଇ ଶୁଅନ୍ତି । ରାତିର ତାରଭରା ଆକାଶକୁ ଚାହିଁ ଚାହିଁ ପାହାନ୍ତା ପହରକୁ କେତେବେଳେ ଆଖି ଲାଗି ଆସେ ସେମାନଙ୍କର । ଗ୍ରୀଷ୍ମପରେ ଆସେ ବର୍ଷା । ଆଷାଢ଼ର ପ୍ରଥମ ଦିବସରେ ପ୍ରଥମ ବର୍ଷାର ଭିଜାମାଟିର ଗନ୍ଧ ଏବେ ବି ମୋ ନାସାରନ୍ଧ୍ରକୁ ସୁରଭିତ କରିଦେଉଚି । ଆଃ- ସେତେବେଳର ବର୍ଷା । ଧାରାଶ୍ରାବଣର ବର୍ଷା ଝରଝର ହୋଇ ଅବିଶ୍ରାନ୍ତ ଭାବେ ଝରିଯାଉଚି କରୋଗେଟେଡ ସିଟ ଟିଣ ଛପର ଉପରେ ଝମ୍ ଝମ୍ ହୋଇ । ଜଣେ ଚପଳା ନୃତ୍ୟାଙ୍ଗନାର ନୂପୁର ନିକ୍ୱଣ ପରି ଶୁଭୁଛି ସେ ଶବ୍ଦ । ଝଡ଼ିପାଗ ଲାଗି ରହିଚି- କେବେବୋ ତିନିଦିନ, କେତେବେଳେ ବା ପାଞ୍ଚଦିନ କି ସାତଦିନ ଅବିଶ୍ରାନ୍ତ ଭାବେ ଖାଲି ଝରିଯାଉଚି ବର୍ଷା ଆଉ ବର୍ଷା । ସେଇ ବର୍ଷାରେ ଭିଜି ଭିଜି ଆମେ ସ୍କୁଲ ଯାଉଚୁ, ସ୍କୁଲରେ ରେନିଡ଼େ ଉପଲକ୍ଷେ ଛୁଟି ହୋଇଯିବ ଏକଥା ଜାଣିବା ସତ୍ତ୍ୱେ । ହୁଙ୍କାରୁ ବାହାରି ଝଡ଼ି

ପୋକ ଉଡୁଛନ୍ତି... ଆମ ଖେଳପଡ଼ିଆରେ ନାଲି ଗୁଲୁ ଗୁଲୁ ସାଧବ ବୋହୂଙ୍କ ମେଳା ବସିଛି । ବଳଙ୍ଗରେ ବନ୍ୟା ଆସିଛି । ମଧୁବନ, ପୂର୍ଣ୍ଣଚନ୍ଦ୍ର ସର୍କଲ ଗୋଲେଇଛକ ପାଖ ଖାଲୁଆ ଅଞ୍ଚଳରେ ବନ୍ୟାପାଣି ପଶିଯାଉଛି । ଖବର ପାଇ ହାଇସ୍କୁଲର ସ୍କାଉଟ ପିଲା ଆଉ ଅନ୍ୟ ସ୍ୱେଚ୍ଛାସେବୀମାନେ ତ୍ରାଣକାର୍ଯ୍ୟରେ ଲାଗିପଡ଼ିଛନ୍ତି । ବନ୍ୟା ଛାଡ଼ିଯିବା ପରେ ବନ୍ୟା ତ୍ରାଣ ସମିତି ଗଠିତ ହୋଇ ଯେଉଁ ଗରିବଲୋକଙ୍କ ଘର ଦ୍ୱାର ବନ୍ୟାରେ ଭାଙ୍ଗିଯାଇଚି ସେମାନଙ୍କୁ ସାହାଯ୍ୟ କରିବା ପାଇଁ ସ୍ୱେଚ୍ଛାସେବକମାନେ ଚାନ୍ଦା ମାଗିବା ପାଇଁ ବାହାରିପଡ଼ନ୍ତି । ଜଣେ ସିଙ୍ଗଲହିଡ଼ ହାରମୋନିୟମଟିଏ କାନ୍ଧରେ ପକାଇ ଗାଏ- 'ଆଜିପୁଣି ଥରେ ତୁମରି ଦୁଆରେ ଭିକ୍ଷାଥାଳ ଧରି ଆସିଛୁ ହେ... ଅନ୍ୟମାନେ କୋରସ ଧରନ୍ତି । ତ୍ରାଣ ସମିତିର ସ୍ୱେଚ୍ଛାସେବୀମାନେ ଗୃହସ୍ଥମାନଙ୍କଠାରୁ ଟଙ୍କା ପଇସା ଚାଉଳ ବା ପୁରୁଣା ଲୁଗାପଟା ସଂଗ୍ରହ କରିନିଅନ୍ତି- ରିଲିଫ ବାଣ୍ଟିବା ପାଇଁ । ବର୍ଷା ଛାଡ଼ିଗଲେ ବାରିପଦାର ପଡ଼ିଆ ମାନଙ୍କରେ ଛତୁଫୁଟେ- ବାଲିଛତୁ, ନାଡ଼ଛତୁ, ହୁଙ୍କାଛତୁ କେତେ ପ୍ରକାର ଛତୁ । ବାରିପଦା ଗୁଜୁରିବଜାରର ପରିବା ମାର୍କେଟକୁ ଭାର ଭାର ଛତୁ ବିକ୍ରିହେବା ପାଇଁ ଆସେ ।

ବାରିପଦାରେ ବସନ୍ତ ଋତୁର ସ୍ଥାୟୀତ୍ୱ ଖୁବ୍ କମଦିନ ପାଇଁ । ତାହା କେତେବେଳେ ଆସି ପୁଣି କେତେବେଳେ ଚାଲିଯାଏ ଜାଣିହୁଏ ନାହିଁ । ଶୀତଋତୁ ଭଲଭାବେ ନ ସରିବା ଆଗରୁ ଗ୍ରୀଷ୍ମର ପ୍ରଖରତା ଆରମ୍ଭ ହୋଇଯାଏ । ସେହି ସମୟରେ ଆମ୍ବ ଗଛରେ ବଉଳ ହୁଏ, ଶାଳଗଛ ସବୁ ନବପଲ୍ଲବ ଓ ଶୁଭ୍ର ମୁକୁଳରେ ମଣ୍ଡି ହୋଇଯାଏ । କଞ୍ଚା କଞ୍ଚା କେନ୍ଦୁଗଛଗୁଡ଼ା ରକ୍ତବର୍ଣ୍ଣର ନବ କିଶଳୟରେ ଡାଙ୍କିହୋଇ ନାଲି ବସ୍ତ୍ର ପିନ୍ଧିଥିବା ସାନ୍ତାଳ ଝିଅ ପରି ଦିଶନ୍ତି । କାଞ୍ଚନ ଗଛ ଭରିଯାଏ ଫୁଲର ସମ୍ଭାରରେ ଆଉ ଶିମୁଳି ପଳାଶ ଗଛରେ ନିଆଁ ଲାଗେ- ଯୌବନର ନିଆଁ । ଅନାବାଦି ଜାଗା ଗୁଡ଼ିକରେ ଜଙ୍ଗଲ ସୃଷ୍ଟି କରିଥିବା କୁରେଇ ଗଛଗୁଡ଼ା ଧଳା ଧଳା ଫୁଲ ସ୍ତବକରେ ନଇଁ ପଡ଼ନ୍ତି । ନାଗଅଇରି ନଟିଗୁଡ଼ିକ ଧଳା ଓ ଗୋଲାପି ଫୁଲରେ ଛାଇ ହୋଇଯାଆନ୍ତି । ସେଠି ଅସଂଖ୍ୟ ଚିତ୍ରିତ ପ୍ରଜାପତିଙ୍କ ମେଳା ବସିଯାଏ । ଝିଲ୍ଲିର ବନ୍ଧ ଭରିଯାଏ ଶ୍ୱେତ ପଦ୍ମର ସ୍ତବକରେ । ଏତେଦିନ ଧରି କେଉଁଠି ଲୁଚି ରହିଥିବା କୋଇଲି ଗାଇ ଉଠେ । ଶିମୁଳି ଗଛ ମାନଙ୍କରେ ଝାଙ୍କ ଝାଙ୍କ ବଣି ଚଢ଼େଇଙ୍କ କଳରବ ଶୁଭେ ଆଉ ଶୁଣାଯାଏ ଗୋବରା ଚଢ଼େଇଙ୍କ ମଧୁର

କୂଜନ । ବେଳେବେଳେ ରାତିର ନିସ୍ତବ୍ଧତା ଓ ପ୍ରଭାତ ଲଗ୍ନର ଶାନ୍ତ ପରିବେଶକୁ କ୍ଷଣକ ପାଇଁ ମୁଖରିତ କରି ଶୁଭେ ପାପିହାର ସ୍ୱର- 'କିଏ ସେ ଗୋ ?' 'କିଏ ସେ ଗୋ ?' ଦ୍ୱାର ଦେଶରେ ଆଗନ୍ତୁକର କରାଘାତ ଶୁଣି ଗୃହାଭ୍ୟନ୍ତରରେ ରହିଥିବା ଏକାକିନୀ ନବବଧୂଟିଏ ଯେପରି ଶଙ୍କିତ ସ୍ୱର ପ୍ରଶ୍ନ କରୁଚି.... କିଏ ସେ ଗୋ ? ବଡ଼ ମଧୁର ସେ ସ୍ୱର । ଜଣା ପଡ଼ିଯାଏ ଋତୁରାଜ ବସନ୍ତ ଆସିଚି । କିନ୍ତୁ ତାକୁ ସ୍ୱାଗତ କରିବା ପାଇଁ ପ୍ରସ୍ତୁତ ହେବା ଆଗରୁ ଗ୍ରୀଷ୍ମର ପ୍ରଚଣ୍ଡତା ଅନୁଭୂତ ହୁଏ । ଚୈତ୍ରର ପବନ ଉତପ୍ତ ହୋଇ ଖଣ୍ଡିଆ ଭୂତ ପାଲଟିଯାଏ..... ଝରାପତ୍ର, ଛିଣ୍ଡା କାଗଜ ଓ ଧୂଳିକୁ ବୁଲାଇ ବୁଲାଇ ଉଡ଼ାଇ ନେଇ ଯାଏ ଦୂରକୁ । ଶରତର ଦିନଗୁଡ଼ିକ କିନ୍ତୁ ଭାରି ମନୋରମ ହୁଏ ବାରିପଦାରେ । ବଲଙ୍ଗ ଓ ଚିପଟ ନଈକୂଳ କାଶତଣ୍ଡୀ ଫୁଲର ଶୁଭ୍ରତାରେ ଭରିଯାଏ । ବୈଦୂର୍ଯ୍ୟର ଶ୍ଳେଟପରି ଉଜ୍ଜ୍ୱଳ ନୀଳ ଆକାଶରେ ଭାସିବୁଲେ ଝିଣା ତୁଳା ପରି ଶୁଭ୍ର ମେଘ ଖଣ୍ଡମାନ । କଳରବ କରି ଦୂରକୁ ଉଡ଼ିଯାଏ ବଳାକା.... ଗଙ୍ଗ ଶିଉଳି ଆଉ ମାଳତି ଫୁଲ ସୁବାସରେ ସୁରଭିତ ହୋଇଯାଏ ରାତିର ଆକାଶ..... ଜଗତ ଜନନୀ ଦୁର୍ଗାଙ୍କ ଆବାହନ ପାଇଁ ନିଜକୁ ଅପୂର୍ବ ବେଶରେ ଧରଣୀ ସଜାଇ ନିଏ । ବଗ ସାମଲ ଗଡ଼ର ପରିତ୍ୟକ୍ତ ଗଡ଼ଖାଇରେ ଅସଂଖ୍ୟ କଇଁଫୁଲ ଫୁଟେ । କୁଆଁର ପୂନେଇ ଓଷାର କୋଠିଘର କରିବା ପାଇଁ ଝିଅମାନେ ସେଇ କଇଁଫୁଲ ତୋଳିବା ପାଇଁ ଗହଳି କରନ୍ତି ।

ଏହାପୂର୍ବରୁ ମୁଁ ବାରିପଦାର ସଡ଼କ କଥା କହୁଥିଲି । ସହରର ପୂର୍ବ-ପଶ୍ଚିମ, ଉତ୍ତର-ଦକ୍ଷିଣ ଦିଗରୁ ଲମ୍ବି ପରସ୍ପରକୁ ଛେଦ କରିଥିବା ସବୁ ସଡ଼କ ଧାରରେ ଆଭିନ୍ୟୁ ପ୍ଲାଣ୍ଟେସନ କରାଯାଇଥିଲା । ସେ ସବୁଗଛ କିଏ ଲଗାଇଥିଲା ସେ କଥା ମୁଁ କହିପାରିବି ନାହିଁ । କିନ୍ତୁ ସୁଚିନ୍ତିତ ଭାବେ ସେ ଗଛଗୁଡ଼ିକ ଲଗାଯାଇଥିଲା । ବାରିପଦା ରାସ୍ତାକଡ଼ରେ ଖାଲି ବର ଅଶ୍ୱଥ ପରି ଛାୟା ପ୍ରଦାନକାରୀ ଗଛ କିମ୍ବା ଆମ୍ବ ପଣସ ପରି ଫଳଗଛ ସବୁ ଲଗାଯାଇନଥିଲା, ଅନେକ ପ୍ରକାର ବଡ଼ ବଡ଼ ସ୍ଥାୟୀ ଫୁଲ ଗଛ ବି ଲଗାଯାଇଥିଲା । ସେହି ଗଛଗୁଡ଼ିକ ପଥଚାରୀଙ୍କୁ ଛାୟା ପ୍ରଦାନ କରିବା ସହିତ ପରିବେଶକୁ ସୁନ୍ଦର ଓ ସୁରଭିତ କରିଦେଉଥିଲେ । ବିଭିନ୍ନ ସଡ଼କ ଧାରରେ ବିଭିନ୍ନ ପ୍ରକାର ଗଛ ଥିଲା ଯେପରି ବଡ଼ ପୋଖରୀ ଓ ଚାପଲ ପୋଖରୀ ଆଦି ରାସ୍ତାରେ ଥିଲା, କରଞ୍ଜଗଛ ଓ ସୀତାହାର ଫୁଲ ଗଛ । ଶୀତଋତୁରେ ଡେଙ୍ଗା ଡେଙ୍ଗା ଗଛରେ

ମଧୁମାଳତୀ ଫୁଲ ଢଙ୍ଗର ପେଣ୍ଡି ପେଣ୍ଡି ଧଳା ସୀତାହାର ଫୁଲ ଫୁଟେ । ସେହିଫୁଲ ହେମାଳ ପବନରେ ଝରି ଗଛମୂଳରେ ପଡ଼ି ସେ ଜାଗାଟିକୁ ଧଳା କରିଦିଏ । ସେହିଫୁଲର ଲମ୍ବା ଲମ୍ବା ଡେମ୍ଫକୁ ବେଣୀକରି ଜୁଡ଼ାରେ ପିନ୍ଧିବା ପାଇଁ ଗଜରାମାଳ କରନ୍ତି ଝିଅମାନେ । ସୀତାହାର ଗଛମୂଳେ ଫୁଲ ସାଉଁଟୁଥିବା ଜଣେ ବୁଢ଼ୀ ମୋତେ ଥରେ କହିଥିଲା, ଏଇ ଫୁଲ ନାମ ସୀତାହାର କାହିଁକି ହୋଇଛି ଜାଣିଚ ବାବୁ ? ବନବାସବେଳେ ସୀତୟାଙ୍କ ପାଖରେ ତ ଛୁଞ୍ଚି ସୂତା ନଥିଲା, ସେ ଫୁଲମାଳ ଗୁନ୍ଥି ପାରୁନଥିଲେ । ଏଇ ଫୁଲ ଡେମ୍ଫରେ ବେଣୀ କରି ଜୁଡ଼ାରେ ପିନ୍ଧୁଥିଲେ । କଚେରି ରାସ୍ତାରେ ଥିଲା ମୁଚୁକୁନ୍ଦ ଫୁଲ ଗଛ । ବଡ଼ ବଡ଼ ଗଛରେ ବଡ଼ ବଡ଼ ପତ୍ର । ପାଚିଲା କଦଳୀକୁ ଚାରି ଚିରୁଡ଼ା କରି ଚିରିଦେବା ପରି ଫୁଲ । ରାତିଫୁଟା ଫୁଲ, ଭାରି ବାସ୍ନା ସେ ଫୁଲର । ହାଇସ୍କୁଲ ଆଗରେ ଥିଲା, ବଉଳଫୁଲର ବୀଥିକା । ସାରାରାତି ବଉଳଫୁଲ ଝରି ସବୁ ଗଛମୂଳ ହୋଇଯାଏ ସଫେଦ ଶୁଭ୍ର ଆଉ ସେ ଅଞ୍ଚଳର ପବନ ଭାରି ହୋଇଯାଏ ବକୁଳ ଗନ୍ଧରେ । କଚେରୀ ହତା ଚାରିପଟେ ଥିଲା କୃଷ୍ଣଚୂଡ଼ା ଗଛ । ପୂର୍ଣ୍ଣଚନ୍ଦ୍ର ସମାଧି ମନ୍ଦିର ପାଖରେ ଥିଲା ଚିନି ଚମ୍ପାର ଝାଡ଼ । ସେ ଫୁଲ କଢ଼ ଥିବାବେଳେ ସାଗୁଆ ଦିଶେ, ଫୁଟିଗଲେ ବାସନ୍ତି ରଙ୍ଗ ହୋଇଯାଏ । ଛୋଟିଆ ଫୁଲଟିରେ ବହଳିଆ ପାଞ୍ଚଟା ପାଖୁଡ଼ା କିନ୍ତୁ ପାଚିଲା କଦଳୀ ବାସ୍ନା ପରି ଅପୂର୍ବ ତାର ସୁବାସ । ସେ ଫୁଲର ବାସ୍ନା ଭାରି ତୀବ୍ର । ଗୋଟିଏ ଯୋଡ଼ିଏ ଫୁଲ ଫୁଟିଥିଲେ ବି ଖଣ୍ଡ ମଣ୍ଡଳ ସୁରଭିତ ହୋଇଯାଏ ତା ସୁଗନ୍ଧରେ । ତାଛଡ଼ା ବିଭିନ୍ନ ରାସ୍ତା କଡ଼ରେ କାଠଚମ୍ପା, କଞ୍ଚନ ଆଉ ସୁନାରୀ ପରି ଫୁଲଗଛ ବି ଥିଲା । କେଉଁଠି କେଉଁଠି ଆମ୍ବ ପଣସ ଗଛ ଥିଲା । ନିମ୍ବ ଜାମୁକୋଳି ବା ବେଲ ଗଛ କିମ୍ବା ଇଉକାଲି ପଟାସ ଗଛ କିମ୍ବା ବଡ଼ ବଡ଼ ନିଦ୍ରାବତୀ ଗଛ ବି ଥିଲା । ମାଘ ଫାଲ୍‌ଗୁନରେ ଆମ୍ବ ବଉଳ ବାସ୍ନାରେ ଭାରିହୋଇ ଉଠୁଥିଲା ରାତିର ନିଶ୍ୱାସ । ନିମ୍ବଗଛ ବେଲ ଗଛ ଓ ଜାମୁକୋଳି ଗଛରେ ବି ଫୁଲ ଫୁଟୁଥିଲା ଆଉ ସବୁଫୁଲର ନିଜସ୍ୱ ସୁରଭି ଥିଲା । ବଡ଼ ବଡ଼ ଆମ୍ବଗଛରେ ମାଡ଼ିଥିଲା ମାଳତି ଲତା । ମୋର ବାଲ୍ୟ ଓ କୈଶୋରକୁ ମୋହାଚ୍ଛନ୍ନ କରି ରଖିଥିଲା ବାରିପଦା ସହରର ଅନେକ ବନସ୍ପତି ଓ ତାର ପୁଷ୍ପ ସମ୍ଭାରର ସୌରଭ ।

ବାରିପଦାରେ ଫୁଲର ଆଦର ଥିଲା । ବାରିପଦା ବଜାରରେ ମଲ୍ଲୀ ଆଉ ଯୁଇଫୁଲର ମାଳ ବିକ୍ରି ହେଉଥିଲା । ଅନେକ ଦାମ ଥିଲା ସେ

ଫୁଲମାଳର । ପଇସାରେ ଚାରିଟା ଖିଲିପାନ ମିଳୁଥିଲା ସେତେବେଳେ କିନ୍ତୁ ଛୋଟ ଗୋଟିଏ ମଲ୍ଲୀମାଳର ଦାମ ଥିଲା ଅଣାଏ (ଚାରିପଇସା) । ତଥାପି ଲୋକମାନେ ସେହିଫୁଲମାଳ କିଣି ହାତକବ୍ଜିରେ ଗୁଡ଼ାଉଥିଲେ, ସ୍ତ୍ରୀଲୋକମାନେ ଜୁଡ଼ାରେ ପିନ୍ଧୁଥିଲେ ।

ବାରିପଦା ସହର ଭିତରେ ଅନେକ ଗଛ ଥିଲା, ଆଉ ବୋଧହୁଏ ସେଇଥିପାଇଁ ଖରାଦିନେ ଅତ୍ୟଧିକ ଗରମ ହେବା ସତ୍ତ୍ୱେ ସେ ଗରମ ସହ୍ୟ କରି ହେଉଥିଲା । ଏବେ ଆଉ ଆଗର ସେ ବାରିପଦା ନାହିଁ । ରାସ୍ତାକଡ଼ର ଗଛ ସବୁ ବୁଢ଼ାହୋଇ ମରିଗଲାଣି । ସେହି ସବୁ ଗଛ କଟାଯାଇ ତା ଜାଗାରେ ନୂଆ ଗଛ ଲଗାଯାଇନାହିଁ । ସେହି ଜାଗାରେ ମୁନିସିପାଲିଟି ଦୋକାନଘର କରିଛି । ଲୋକମାନେ ସରକାରି ଜାଗା ଅବରୋଧ କରି କ୍ୟାବିନ ପକାଇ ଦୋକାନ ଖୋଲିଛନ୍ତି । ଆଗେ ଯେମିତି ବାରିପଦା ଗଛମୟ ଥିଲା ଏବେ ହୋଇ ଯାଇଚି ଦୋକାନମୟ । ଯୁଆଡ଼େ ଚାହଁ ଦୋକାନ । ସବୁ ରାସ୍ତାଧାରରେ ଖାଲି ଦୋକାନ ଆଉ ଦୋକାନ ।

ଆମେ ପଢ଼ିବାବେଳେ ଆମ ହାଇସ୍କୁଲ ହତାରେ ଅନେକ ପ୍ରକାର ବିରଳ ଗଛଥିଲା । ବାରିପଦା ହାଇସ୍କୁଲ ହତା ନାମଥିଲା ଗୋଲାପବାଗ । ସେଟା ଥିଲା କେହି ଜଣେ ଗଛପାଗଳା ସାହେବର ବାଗାନବାଡ଼ି । ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ସେତେବେଳର ବାରିପଦା ସହରର ଉପକଣ୍ଠରେ ବିସ୍ତୀର୍ଣ୍ଣ ଜମି ଉପରେ ଫଳ-ଫୁଲର ବଗିଚା ଭିତରେ ଗୋଟିଏ ଦ୍ୱିତଳ ଗୃହ କରି ରହୁଥିଲେ ସେ ସାହେବ । ବର୍ତ୍ତମାନ ଯେଉଁ ଦୁଇମହଲା କୋଠାଟାରେ ବାରିପଦା ଏମ୍.କେ.ସି ହାଇସ୍କୁଲର ହେଡ଼ମାଷ୍ଟରଙ୍କ ଅଫିସ୍, ଟିଚରସ୍ କମନରୁମ୍ ଲାଇବ୍ରେରୀ ଇତ୍ୟାଦି ଅଛି ସେଇଟା ଥିଲା ସେ ସାହେବଙ୍କର ବଙ୍ଗଳା । ତା ସାମ୍ନାର ଖୋଲାପଡ଼ିଆଟା ଥିଲା ଗୋଲାପ ବଗିଚା । ସେଇଥିପାଇଁ ସେ ଜାଗାର ନାମଥିଲା ଗୋଲାପବାଗ । ସେ ସାହେବ ମରିଯିବା ପରେ ତାଙ୍କ ଉତ୍ତରାଧିକାରୀମାନଙ୍କ ପାଖରୁ ଗୋଲାପବାଗ କିଣି ନେଇ ରାଜ ସରକାର ଊନବିଂଶ ଶତାବ୍ଦୀର ଶେଷ ପାଦରେ ବାରିପଦା ହାଇସ୍କୁଲ ସ୍ଥାପନ କରିଥିଲେ । ଅନେକ ବିରଳ ପ୍ରଜାତିର ଗଛ ଥିଲା ହାଇସ୍କୁଲ ହତାରେ । ଯେମିତି ହାଇସ୍କୁଲ ଅଫିସ୍ ଆଗରେ ଥିଲା, ଅନନ୍ତ-ନାଗେଶ୍ୱର ଗଛ । ବିଶାଳଗଛ, ଏହାର ଗଣ୍ଡିରେ ପଣସ ଫଳିବା ପରି ବଡ଼ ବଡ଼ ଡେମ୍ଫରୁ ପେଛି ପେଛି ଫୁଲ ଫୁଟେ । ଈଷତ ଗୋଲାପୀ ରଙ୍ଗର ସାତ ଆଠଟା ପାଖୁଡ଼ା

ପଦ୍ମଫୁଲ ପାଖୁଡ଼ା ପରି ଫୁଟେ ତା ମଝିରେ ଥିବା କେଶରଟି ସହସ୍ର ଫଣାଯୁକ୍ତ ଅନନ୍ତ ନାଗ ପରି ରହିଥାଏ ଓ ତା ତଳେ ଛୋଟ ଗୋଟିଏ ଶିବ ଲିଙ୍ଗ । ଏଇଥିପାଇଁ ଏ ଫୁଲର ଏପରି ନାମକରଣ । ଏହା ଭାରତୀୟ ଫୁଲ ନୁହେଁ । ତାହା ଦକ୍ଷିଣ ପୂର୍ବ ଏସିଆରୁ ଅଣାଯାଇଥିବା ଗଛ ବୋଲି ଶୁଣିଥିଲି । ସ୍କୁଲ ପ୍ରବେଶ ପଥ ଦୁଇ କଡ଼ରେ ଥିଲା ଓକ୍ ଗଛ ଓ ଡ୍ରୁପିଙ୍ଗ ଦେଓଦାରର ବୀଥିକା । ଓକ୍ ଗଛର ପତ୍ର ନିମଗଛ ପତ୍ରପରି ତେଣୁ ସେ ଗଛକୁ ଲୋକେ ମହାନିମ କହୁଥିଲେ । ଦେବଦାରୁ ଗଛ ଗୁଡ଼ା ବୁଢ଼ା ହୋଇ ବହୁତ ଡେଙ୍ଗା ଡେଙ୍ଗା ହୋଇ ଯାଇଥିଲା । ଗୋଟିଏ ଗଛର ବହୁତ ଉଚ୍ଚରେ ଶାଖା ପ୍ରଶାଖା ବାହାରିଥିଲା । ସେହି ଶାଖାଗୁଡ଼ିକରେ ପ୍ରତିବର୍ଷ ବାଘୁଆ ମହୁମାଛି ଆସି ଫେଣା କରୁଥିଲେ । ସେହିଗଛ ଡାଳରୁ ବିରାଟ ବିରାଟ ମହୁଫେଣା ଝୁଲି ରହୁଥିଲା । ସ୍କୁଲ ସାମ୍ନାରେ ପଡ଼ିଆର ଗୋଟିଏ ଅଂଶରେ ଗୋଟିଏ ଭାରତବର୍ଷର ବିଶାଳ ରିଲିଫ ମ୍ୟାପ୍ ଥିଲା । ସେତେବେଳର ଭାରତବର୍ଷ- ପାକିସ୍ଥାନ, ବାଲାଂଦେଶ, ବର୍ମା,(ମିଆମାର) ଓ ସିଂହଳ (ଶ୍ରୀଲଙ୍କା) ସମେତ ତାହା ଥିଲା ବ୍ରିଟିଶ ସରକାରଙ୍କ ଭାରତ ସାମ୍ରାଜ୍ୟ । ସେଥିରେ ପାହାଡ଼ ପର୍ବତ ନଦୀ ନାଳ ସବୁଥିଲା । ପାଣିକଳ ଖୋଲିଦେଲେ ସିନ୍ଧୁ ବ୍ରହ୍ମପୁତ୍ର ଗଙ୍ଗା ଯମୁନା ସବୁ ନଦୀରେ ପାଣି ବୋହି ଆସୁଥିଲା- ସାଗର ଓ ମହାସାଗର ଜଳପୂର୍ଣ୍ଣ ହୋଇଯାଉଥିଲା । ରିଲିଫ୍ ମ୍ୟାପ୍‌ର ଗୋଟିଏ କୋଣରେ ଥିଲା ଗୋଟିଏ ମଣ୍ଡାରୁଞ୍ଜ ଗଛ- ଗଛଟି ଥିଲା ଚାକୁଣ୍ଡା ଜାତିର ଗଛ । ସେଥିରେ ପେଛି ପେଛି ଚାକୁଣ୍ଡା ଫଳ ଭଳି ଫଳ ଫଳୁଥିଲା । ବିନ୍ଧୁଇଁ ଭଳି ଫଳଗୁଡ଼ିକ ଭିତରେ ମଣ୍ଡାପିଠା ଆକୃତିର ଧଳା ଧଳା ମଞ୍ଜି ଦୁଇଧାଡ଼ି । ଫଳଟି ପାଚି ଶୁଖିଗଲେ ଧଳାମଞ୍ଜି ଗୁଡ଼ିକ ସିନ୍ଦୁରପରି ଲାଲ ହୋଇଯାଏ ଓ ଛୁଇଁଟି ଫାଟିଯାଇ ରକ୍ତବର୍ଣ୍ଣର ମଣ୍ଡାରୁଞ୍ଜ ଗଛମୂଳେ ବିଛୁଡ଼ି ହୋଇପଡ଼େ । ଆମେମାନେ ରୁଞ୍ଜରେ ଯୋଡ଼ ବେଯୋଡ଼ ଖେଳୁଥିଲୁ । ପ୍ରତିପକ୍ଷକୁ ଲୁଚାଇ ଗୋଟିଏ ହାତରେ କେତେଟା ରୁଞ୍ଜ ମୁଠାଇ ଧରି ଜଣେ ପିଲା ପଚାରୁଥିଲା କହ ଯୋଡ଼ ନା ବେଯୋଡ଼ । ସେ ଯୋଡ଼ ଉତ୍ତର ଦେବା ପରେ ମୁଠା ଖୋଲି ଦେଖା ଯାଉଥିଲା । ଯଦି ଦୁଇ ଚାରି ଛଅ ଆଠ ଭଳି ଯୋଡ଼ା ସଂଖ୍ୟକ ରୁଞ୍ଜ ଥିଲା ତେବେ ଉତ୍ତର ଦେଇଥିବା ପିଲା ଜିତିଯାଇ ସେଇ ରୁଞ୍ଜଗୁଡ଼ିକୁ ନେଇ ଯାଉଥିଲା । ହାରିଗଲେ ସମସଂଖ୍ୟକ ରୁଞ୍ଜ ପ୍ରଶ୍ନକର୍ତ୍ତାକୁ ଦେବାକୁ ପଡୁଥିଲା । ମୁଁ ମୋ ଜୀବନକାଳ ଭିତରେ ଆଉ ସେ ଗଛ କେଉଁଠି ଦେଖି ନାହିଁ । ଆଉ ଗୋଟିଏ ଗଛଥିଲା,

ଅଳ୍ପ ଉଚ୍ଚର ଝଙ୍କାଳିଆ ଗଛ- ସେଥିରେ ସବୁଜ ରଙ୍ଗର ଗୋଲ ଗୋଲ ଲାଉ ପରି ବହୁତ ଫଳ ଫଳୁଥିଲା । ଗଛରେ ଫଳି ସେଗୁଡ଼ିକ ଭାରି ସୁନ୍ଦର ଦିଶୁଥିଲା । କିନ୍ତୁ ଫଳଟାକୁ ଭାଙ୍ଗିଦେଲେ ତା ଭିତରୁ ଦୁର୍ଗନ୍ଧ ଯୁକ୍ତ କଳା କଳା ଶସ ବାହାରୁଥିଲା । ପଶୁପକ୍ଷୀ କେହି ସେ ଫଳ ଖାଉନଥିଲେ । ଆମେ ତାକୁ ମହାକାଳ ଫଳ କହୁଥିଲୁ । ସ୍କୁଲ ହତାରେ ଅନେକ ପ୍ରକାରର ବେଲଗଛ ଥିଲା । ସେଥିରେ ବିଭିନ୍ନ ଆକୃତିର ଫଳ ଫଳୁଥିଲା । ତାଛଡ଼ା କଲମୀ ଆମ୍ବ, ଜାମ୍ବୁରୁଳ, ଜାମ୍ବୁକୋଳି, ସପେଟା ଇତ୍ୟାଦି ବହୁତ ଫଳଗଛ ଥିଲା । ଏବେ ସ୍କୁଲହତା ସମ୍ପୂର୍ଣ୍ଣ ଲଣ୍ଡା- କିଛି ଗଛ ନାହିଁ କହିଲେ ଚଳେ ।

ପଚାଶ ଦଶକର ଆଦ୍ୟ ଭାଗରେ ଭୁବନେଶ୍ୱରରୁ ମୋର ଜଣେ ବନ୍ଧୁ ବାରିପଦା ଯାଇଥିଲେ । ସେଠାରୁ ଫେରିଆସି ମୋତେ ସେ କହିଥିଲେ, ଓଃ ବାରିପଦାରେ ଏତେ ଗଛ ? ମୁଁ ଆଉ କେଉଁ ସହରରେ ଏତେ ଗଛ ଦେଖିନାହିଁ । ମୁଁ ଭାବୁଚି ଆକାଶ ମାର୍ଗରୁ ବାରିପଦାକୁ ଚାହିଁଲେ ଗଛ ଛଡ଼ା ଆଉ କିଛି ନଜରରେ ପଡ଼ିବ ନାହିଁ ।

ଖାଲି ସହର ଭିତରେ ନୁହେଁ, ବାରିପଦାକୁ ଘେରି ରହିଥିଲା ଶ୍ୟାମଳ ବନସ୍ପତିର ସମାରୋହ । ସବୁଦିଗରେ ସହର ଉପକଣ୍ଠରୁ ଆରମ୍ଭ ହୋଇ ଯାଉଥିଲା ନିଘଞ୍ଚ ଅରଣ୍ୟ । ବାଲେଶ୍ୱର ରାସ୍ତାରେ ଗଲେ ପାଲବଣି ଠାରୁ ଲାଗି ରହୁଥିଲା ନିବିଡ଼ ଶାଳବଣ । ଦିନବେଳେ ବାରିପଦାରୁ ମୋଟର କାର ବା ବସ୍‌ରେ ବାଲେଶ୍ୱର ଗଲେ ଦେହରେ ସୂର୍ଯ୍ୟକିରଣ ବାଜୁ ନଥିଲା । ସେହି ପରିସ୍ଥିତି ଓ ପରିବେଶ ଥିଲା ଅମରଦା ଯିବା ରାସ୍ତାରେ, ଦେଉଳି, ରାଇରଙ୍ଗପୁର ଉଦଳା କିମ୍ବା ବାଘଡ଼ା ଯିବା ରାସ୍ତାରେ । ଦେଉଳି ରାସ୍ତାରେ ଗଲେ ସହର ଶେଷରେ ଥିଲା ଜେଲଖାନା । ଜେଲଖାନା ପାର ହୋଇଗଲେ, ପଡୁଥିଲା ଖ୍ରୀଷ୍ଟିୟାନଙ୍କ କବରଖାନା ତାପରେ କୁଷ୍ଠାଶ୍ରମ । ଆମେ ମାନେ ଦିନେ ଦିନେ ଦଳବାନ୍ଧି ଅପରାହ୍ନରେ ବୁଲି ଯାଉଥିଲୁ ସେଇବାଟେ । ଅଧିକାଂଶ ଦିନ କବରଖାନା ପାଖ ଶାଳ ଜଙ୍ଗଲ ଭିତରେ ହରିଣ କିମ୍ବା ସମ୍ବର ଗୋଠ ହାବୁଡ଼ି ଯାଉଥିଲୁ । ଭୁରୁଡୁ କୋଳି ବୁଦାର ଅଗ ପତ୍ର ଚୁଙ୍କି ଖାଉ ଖାଉ ହଠାତ୍ ଆମ ପାଦ ଶବ୍ଦ ଶୁଣି ତ୍ରସ୍ତ ଚିତ୍ରିତ ହରିଣ ଗ୍ରୀବା ଭାଙ୍ଗି ଥରେ ଆମ ଆଡ଼େ ଚାହିଁ ଦେଇ ଲମ୍ଫ ମାରି ଉଚ୍ଚା ଶାଳଗଛ ଗହଳରେ ଅଦୃଶ୍ୟ ହୋଇ ଯାଉଥିଲା । ଅସ୍ତଗାମୀ ସୂର୍ଯ୍ୟର ମହଳନ ଆଲୁଅରେ ଅପସୃୟମାଣ ମୃଗର ପୃଷ୍ଠଦେଶ ସୁନାପରି ଝଟକି ଉଠି ଆମ ଆଖି ଆଗରୁ ମିଳାଇ ଯାଉଥିଲା । ଦିନେ ଦିନେ

ଆମେ ସମ୍ବର ଗୋଠ ଦେଖିବାକୁ ପାଉଥିଲୁ । ସମ୍ବରପଲ ନିରାପଦ ଦୂରତ୍ୱକୁ ଚାଲି ଯିବାଯାଏ ଯୂଥପତି ଶିଙ୍ଗାଳ ସମ୍ବର ଆମ ଆଡ଼କୁ ନିର୍ନିମେଷ ଆଖିରେ ଚାହିଁ ଆମ ଗତିବିଧି ଉପରେ ଲକ୍ଷ୍ୟ ରଖୁଥିଲା । ତାପରେ ଗୋଟିଏ ଲମ୍ଫରେ ଅଦୃଶ୍ୟ ହୋଇ ଯାଉଥିଲା ସେ ।

ମୟୂରଭଞ୍ଜ ରାଜ୍ୟର ଆୟତନ ଥିଲା ୪୨୪୩ ବର୍ଗ ମାଇଲ, ଲୋକସଂଖ୍ୟା ଦଶଲକ୍ଷ ଓ ବାର୍ଷିକ ଆୟ ପଇଁଚାଳିଶ ଲକ୍ଷ ଟଙ୍କା । ଏହି ରାଜ୍ୟର ଅର୍ଦ୍ଧେକ ଅଞ୍ଚଳ ଅରଣ୍ୟ ଦ୍ୱାରା ଆଚ୍ଛାଦିତ ଥିଲା ଓ ଅଧିକାଂଶ ଆୟର ଉତ୍ସ ଥିଲା ବନ ରାଜସ୍ୱ । ତେଣୁ ମୟୂରଭଞ୍ଜ ମହାରାଜା ବୈଜ୍ଞାନିକ ପଦ୍ଧତିରେ ତାଙ୍କ ବନସମ୍ପଦର ରକ୍ଷଣାବେକ୍ଷଣ କରୁଥିଲେ । ମିଷ୍ଟର ଗାଲିଆର୍ଡ଼ି ବୋଲି ବନ-ବିଜ୍ଞାନରେ ପ୍ରଶିକ୍ଷିତ ଜଣେ ଇଂରେଜ ଥିଲେ ମୟୂରଭଞ୍ଜ ରାଜ୍ୟର ମୁଖ୍ୟ ବନାଧିକାରୀ । ତାଙ୍କ ଅଧୀନରେ ତିନିଜଣ ଡିଭିଜନାଲ ଫରେଷ୍ଟ ଅଫିସର ତିନୋଟି ଫରେଷ୍ଟ ଡିଭିଜନ ଦାୟିତ୍ୱରେ ରହି କାମ କରୁଥିଲେ । ମୟୂରଭଞ୍ଜ ରାଜ୍ୟର ବନସମ୍ପଦକୁ ନିୟନ୍ତ୍ରିତ କରିବା ପାଇଁ ଇଣ୍ଡିଆନ ଫରେଷ୍ଟ ଆକ୍ଟ ଓ ମୟୂରଭଞ୍ଜ ଫରେଷ୍ଟ ରେଗୁଲେସନ ଲାଗୁ କରାଯାଇଥିଲା । ମୟୂରଭଞ୍ଜରେ ଅନୁସୃତ ନୀତି ନିୟମ ଅନୁଯାୟୀ ଅବିଚାରିତ ଭାବେ ଜଙ୍ଗଲ କାଟିବା ବାରଣ ଥିଲା । ବିଭିନ୍ନ କୁପ୍ ମାନଙ୍କରେ ଜଙ୍ଗଲ କର୍ମଚାରୀମାନେ ଦେଖିଶୁଣି ମାର୍କା ଦେଉଥିବା ଗଛଗୁଡ଼ିକ କେବଳ କଟାଯାଉଥିଲା । ସେମାନେ କଟାଯାଇଥିବା ଗଛଗୁଡ଼ିକୁ ପରୀକ୍ଷା କରି ହାମାର ମାର୍କା ଦେବା ପରେ ଯାଇ ସେହିସବୁ କାଠଗଡ଼ ବାହାରକୁ ଚାଲାଣ କରାଯାଇପାରୁଥିଲା । ଭାରି କଡ଼ାକଡ଼ି ଭାବେ ଜଙ୍ଗଲ ସଂରକ୍ଷଣ କରାଯାଉଥିଲା । ଦାନ୍ତକାଠି କରିବା ପାଇଁ କେହି ଜଣେ ସଂରକ୍ଷିତ ଜଙ୍ଗଲରୁ ଶାଳ ଗଛଟିଏ ଭାଙ୍ଗିଦେଲେ ତାକୁ ଗୋଟିଏ ଶାଳଗଛର ମୂଲ୍ୟ ଜୋରିମାନା ଭାବେ ଦେବାକୁ ପଡୁଥିଲା । ଜଙ୍ଗଲ ନଷ୍ଟ କରିବା ଅପରାଧରେ ଜୋରିମାନା ବ୍ୟତୀତ ବେତ୍ରାଘାତ ଓ ଜେଲଦଣ୍ଡ ବି ଭୋଗିବାକୁ ପଡୁଥିଲା । ତେଣୁ ଲୋକମାନେ ରିଜର୍ଭ ଜଙ୍ଗଲ ଭିତରେ ପଶିବାକୁ ବି ଡରୁଥିଲେ । ୧୯୪୯ ମସିହାରେ ମୟୂରଭଞ୍ଜ ଷ୍ଟେଟର ଯେତେବେଳେ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ହୋଇଗଲା, ଓଡ଼ିଶା ସରକାର ମୟୂରଭଞ୍ଜ ରାଜ୍ୟରେ ପ୍ରାୟ ଦୁଇହଜାର ବର୍ଗମାଇଲ ଅଞ୍ଚଳରେ ଅବସ୍ଥିତ ଅତି ମୂଲ୍ୟବାନ ଜଙ୍ଗଲ ସମ୍ପଦ ପାଇ ଯାଇଥିଲେ । ଅଳ୍ପ କେଇଟା ବର୍ଷ ଭିତରେ ମୟୂରଭଞ୍ଜ ରାଜ୍ୟରେ ଶହଶହ ବର୍ଷର ସାଇତା ଜଙ୍ଗଲ ସମ୍ପଦକୁ ଓଡ଼ିଶା ସରକାରଙ୍କ

ବନ ବିଭାଗର ଅଧିକାରୀମାନେ କୋଟି କୋଟି ଟଙ୍କାରେ ନିଲାମ କରି ଓଡ଼ିଶାର ରାଜକୋଷକୁ ସମୃଦ୍ଧ କରିବା ସହ ନିଜ ହାତ ବି ଚିକ୍କଣ କରିଥିଲେ । ସେତେବେଳେ ଓଡ଼ିଶା ବନବିଭାଗ ଅଧିକାରୀମାନେ ପରିହାସ କରି ଟିପ୍ପଣୀ କରିଥିଲେ, 'ଗଡ଼ଜାତିଆଗୁଡ଼ା କି ବୋକା ଥିଲେ ହୋ- ବିକ୍ରି ନକରି କୋଟି କୋଟି ଟଙ୍କାର ଶାଳ ପିଆଶାଳ ଜଙ୍ଗଲ ପକାଇ ରଖିଥିଲେ । ଦେଖ ଆମେ ଆସୁ ଆସୁ କେମିତି ସେ ସବୁ ସମ୍ପଦର ମୂଲ୍ୟବାନ ବିନିଯୋଗ କରି ସରକାରଙ୍କ ଆୟ ବଢ଼ାଇ ଦେଲୁ । ମୟୂରଭଞ୍ଜର ଅମୂଲ୍ୟ ବନସମ୍ପଦ ଅଳ୍ପ କେଇଟା ଦିନ ଭିତରେ ନିଃଶେଷ ହୋଇଯାଇଥିଲା । ବାରିପଦା ସହରକୁ ବେଢ଼ି ରହିଥିବା ବନ ବଳୟ ସେହି ସମୟରେ ଅଦୃଶ୍ୟ ହୋଇଗଲା । ସୌଭାଗ୍ୟ କ୍ରମେ ଶିମିଳିପାଳ ପର୍ବତମାଳାକୁ ପ୍ରଥମେ ଜାତୀୟ ଉଦ୍ୟାନ ଓ ପରେ ବ୍ୟାଘ୍ର ପ୍ରକଳ୍ପ ଓ ଜୈବ ମଣ୍ଡଳ କରି ଦେବାରୁ ଅଳ୍ପ କିଛି ଅରଣ୍ୟ ସୁରକ୍ଷିତ ହୋଇ ରହିଛି । ନଚେତ ନିଘଞ୍ଚ ଅରଣ୍ୟରେ ଭରି ରହିଥିବା ଶିମିଳିପାଳ ପର୍ବତ ମଧ୍ୟ ବନସ୍ପତି ଶୂନ୍ୟ ହୋଇ ଏତେବେଳକୁ ଗୋଟିଏ ନଣ୍ଡା ପାହାଡ଼ରେ ପରିଣତ ହୋଇଯାଇ ସାରନ୍ତାଣି ।

ମୟୂରଭଞ୍ଜ ଅରଣ୍ୟରେ ବହୁପ୍ରକାର ବଣ୍ୟଜନ୍ତୁ ଦେଖିବାକୁ ମିଳୁଥିଲେ । ଜଙ୍ଗଲମାନଙ୍କରେ ଅସଂଖ୍ୟ ହାତୀ, ମହାବଳ ବାଘ, କଲରାପତିରିଆ ବାଘ (ପେଣ୍ଟାର), ଭାଲୁ, ଗୟଳ, ନୀଳଗାଈ, ସମ୍ବର, ହରିଣ, କୁଟ୍ରା, ଗୁରାଣ୍ଡି, ବାର୍‌ହା, ବଳିଆ କୁକୁର, ଗଧିଆ, ଶିଆଳ, ନେଉଳ, ବେଲରାମୂଷା, ଝିଙ୍କ, ଉଡ଼ନ୍ତା ଗୁଣ୍ଡୁଚି, ବଜ୍ରକାପ୍ଟା ପ୍ରଭୃତି ଜନ୍ତୁ, ବିଶାଳକାୟ ଅଜଗର, ଭୟଙ୍କର ଅହିରାଜ, ଗୋଖର, ବୋଡ଼ା ପ୍ରଭୃତି ସରିସୃପ ଓ ମୟୂର, ବଣ କୁକୁଡ଼ା, ଶୁଆ, ଶାରୀ, କୋଚିଳାଖାଇ, ହରଡ଼ ଚଢ଼େଇ, ଚିତିରି, କାପ୍ଟା ପ୍ରଭୃତି ବନପକ୍ଷୀ ଭରି ରହିଥିଲେ । ମୟୂର ଥିଲା ମୟୂରଭଞ୍ଜ ରାଜବଂଶର ପ୍ରତୀକ- ପବିତ୍ର ପକ୍ଷୀ । ଏହା ଭାରତର ଜାତୀୟପକ୍ଷୀ ହେବା ବହୁ ପୂର୍ବରୁ ମୟୂରଭଞ୍ଜର ଜାତୀୟ ପକ୍ଷୀ ଭାବେ ବିବେଚିତ ହେଉଥିଲା ଓ ମୟୂରଭଞ୍ଜ ଷ୍ଟେଟ ପ୍ରତୀକ ତଥା ପତାକାକୁ ମଣ୍ଡନ କରିଥିଲା ।

ମୟୂରଭଞ୍ଜ ରାଜ୍ୟରେ ବିନାନୁମତିରେ ପଶୁପକ୍ଷୀ ଶିକାର କଡ଼ାକଡ଼ି ଭାବେ ବାରଣ ଥିଲା । କେବଳ ବାଘ ମାତି ଯଦି ଜନବସତି ନିକଟରେ ଗୋରୁଗାଈ ମାରିଦେଉଥିଲା କିମ୍ବା ନରଖାଦକ ପାଲଟି ଯାଉଥିଲା ତେବେ ସେହି ବାଘକୁ ମାରିବା ପାଇଁ ଶିକାରୀମାନଙ୍କୁ ଅନୁମତି ଦିଆଯାଉଥିଲା ।

ହାତୀ ପାଗଳ ହୋଇ ଧନ ଜୀବନ ନଷ୍ଟ କଲେ ତାକୁ 'ରୋଗ' ବୋଲି ଘୋଷଣା କରାଯାଇ ମାରିବା ପାଇଁ ଶିକାରୀମାନଙ୍କୁ ଅନୁମତି ଦିଆଯାଉଥିଲା । ମହାରାଜା ନିଜେ ଶିକାରପ୍ରିୟ ନଥିଲେ । ବେଳେ ବେଳେ ରାଜ୍ୟକୁ ଓଡ଼ିଶାର ଲାଟ କିମ୍ବା ଅନ୍ୟକୌଣସି ବଡ଼ ଦେଶୀୟ ରାଜ୍ୟର ରାଜା ଅତିଥି ଭାବେ ଆସିଲେ ସେମାନଙ୍କ ପାଇଁ ଶିକାର ଆୟୋଜନ ହେଉଥିଲା । ମୟୂରଭଞ୍ଜ ଷ୍ଟେଟର ଅନ୍ୟତମ ଡି.ଏଫ୍.ଓ ଲାଲ ଲୋକନାଥ ସାହାଦେଓ ଜଣେ ଦକ୍ଷ ଶିକାରୀ ଥିଲେ । ତାଙ୍କ ଡାକନାମ ଥିଲା ଲାଲୁବାବୁ । ସେ ତାଙ୍କ ଜୀବନରେ ଶତାଧିକ ନରଖାଦକ କିମ୍ବା ଜନବସତି ଅଞ୍ଚଳରେ ଗାଈଗୋରୁ ମାରି ଉପଦ୍ରବ କରୁଥିବା ବାଘ ଶିକାର କରିଥିଲେ । ଅବ୍ୟର୍ଥ ଥିଲା ତାଙ୍କ ଲକ୍ଷ୍ୟ, ଅପରିସୀମ ଥିଲା ତାଙ୍କ ସାହସ । ସେ ବାଘ ମାରି, ପକାଇଥିବା କୌଣସି ମଢ଼ ନିକଟରେ ଥିବା ଗଛ ଡାଳରେ ବସି କିମ୍ବା ବୁଦା ଆଢୁଆଳରେ ଲୁଚି ରହି ବାଘକୁ ଅପେକ୍ଷା କରୁଥିଲେ । ନହେଲେ ବାଘର ଥାବା ଚିହ୍ନକୁ ଅନୁସରଣ କରି ସେ ବାଘକୁ ଠାବ କରୁଥିଲେ । ଥରେ ବାଘ ତାଙ୍କ ହାବୁଡ଼ରେ ପଡ଼ିଲେ ତାର ଆଉ ରକ୍ଷାନଥିଲା । ଗୋଟିଏ ଗୁଳିରେ ଜଙ୍ଗଲର ମହା ପରାକ୍ରମୀ ରାଜାର ନିଷ୍ପ୍ରାଣ ଦେହଟା ଭୂଇଁରେ ଲୋଟି ପଡୁଥିଲା । ମୟୂରଭଞ୍ଜ ଷ୍ଟେଟ୍‌ର ଓଡ଼ିଶା ସହିତ ମିଶ୍ରଣ ପରେ କଳାହାଣ୍ଡିର କାଶୀପୁର ଅଞ୍ଚଳରେ ବାଘ ଉପଦ୍ରବ ବହୁତ ବଢ଼ିଯିବାରୁ, ଉପଦ୍ରବକାରୀ ବ୍ୟାଘ୍ରକୁଳକୁ ନିୟନ୍ତ୍ରିତ କରିବା ପାଇଁ ଲାଲୁବାବୁଙ୍କୁ କାଶୀପୁର ଡି.ଏଫ୍.ଓ ଭାବେ ଅବସ୍ଥାପିତ କରାଯାଇଥିଲା । କାଶୀପୁରରେ ଅବସ୍ଥାନ କାଳରେ ଅନେକଗୁଡ଼ିଏ ଦୁର୍ଦ୍ଦାନ୍ତ ବାଘ ସେ ମାରିଥିଲେ ।

ମୟୂରଭଞ୍ଜ ଜଙ୍ଗଲ ମାନଙ୍କରେ ଶିକାର ନିଷିଦ୍ଧ ଥିବାରୁ ହରିଣ, ସମ୍ବର ପ୍ରଭୃତି ବଣ୍ୟଜନ୍ତୁମାନେ ନିର୍ଭୟରେ ବୁଲୁଥିଲେ । ମୟୂରଭଞ୍ଜ ଷ୍ଟେଟ୍‌ର ଓଡ଼ିଶା ସହ ମିଶ୍ରଣ ହେବାପରେ ଓଡ଼ିଶାର ପୁଲିସ ଓ ପ୍ରଶାସନିକ କର୍ମଚାରୀମାନେ ଏକ ବିଜୟୀ ସେନାବାହିନୀର ମନୋଭାବ ନେଇ ମୟୂରଭଞ୍ଜକୁ ଆସିଥିଲେ । ସେମାନେ ଆରମ୍ଭ କରିଦେଲେ ଅବିଚାରିତ ଭାବେ ବଣ୍ୟଜନ୍ତୁ ଶିକାର । ଶିକାର ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅନଭ୍ୟସ୍ତ ମୟୂରଭଞ୍ଜ ଜଙ୍ଗଲର ମୃଗକୁଳ ଉଜ୍ଜ୍ୱଳ ଘଟ ଲାଇଟ ଆଲୁଅରେ ଚକ୍‌କା ହୋଇ ଛିଡ଼ାହୋଇ ରହି ନିହାତି ନୂଆ ବନ୍ଧୁକ ଧରି ଶିଖୁଥିବା ଶିକାରୀମାନଙ୍କ ଗୁଳିରେ ଟଳି ପଡୁଥିଲେ । ଦେଖୁ ଦେଖୁ ଅଳ୍ପ କେଇଟା ଦିନ ଭିତରେ ବଣ୍ୟଜନ୍ତୁ ଶୂନ୍ୟ ହୋଇଗଲା ମୟୂରଭଞ୍ଜର ଅରଣ୍ୟ । ଏବେ ଶିମିଳିପାଳ ଜାତୀୟ ଉଦ୍ୟାନରେ ବଣ୍ୟଜନ୍ତୁମାନଙ୍କୁ ସଂରକ୍ଷଣ

କରିବାର ବ୍ୟବସ୍ଥା ହୋଇଛି । କିଏ ଜାଣେ ସେଠାରେ ଆଉ କେତେଦିନ ତିଷ୍ଠି ରହିପାରିବେ ସେମାନେ ?

ବାରିପଦା ଆକାଶରୁ ଉଭେଇ ଯାଇଛନ୍ତି ସେଦିନର ପକ୍ଷୀକୁଳ । ଅସଂଖ୍ୟ ବଣି, ବଣୁଆ ପାରା, କାପ୍ତା, ହରଡ଼ ଚଢ଼େଇ, ଗୁହକାଳିକା, ଜଳଦପାଚି, ଗୋବରା ଚଢ଼େଇ, ଶୁଆ, କୋଚିଳାଖାଇ, ଧରାଳି, ହଂସରାଳି, ଗେଣ୍ଡାଳିଆ, ମାଟିଆ ଚିଲ ଓ ଶଙ୍ଖଚିଲ ପ୍ରଭୃତିଙ୍କ କଳ କୂଜନରେ ମୁଖରିତ ହୋଇ ଉଠୁଥିଲା ସେ ଆକାଶ । ନିଦାଘର ସଞ୍ଜ ସକାଳ ମୁଖରିତ ହୋଇ ଉଠୁଥିଲା କୋଇଲିର କୁହୁତାନରେ, ନିର୍ଜନ ଦ୍ୱିପ୍ରହରରେ ଘୁମୁରୁଥିଲେ କାପ୍ତା, ଆଉ ରାବି ଉଠୁଥିଲେ ଆକାଶରେ ଚକ୍କର ମାରି ଉଡୁଥିବା ଶଙ୍ଖଚିଲମାନେ । ମଧୁର ଭାବେ ଗାଇ ଉଠୁଥିଲେ ଗୋବରା ଚଢ଼େଇ ଆଉ ସଞ୍ଜବେଳେ କିମ୍ବା ପ୍ରତ୍ୟୁଷର ଶାନ୍ତ ପରିବେଶ ଭିତରେ ଭାସି ଆସୁଥିଲା ପାପିହାର ସୁମଧୁର ସ୍ୱର 'କିଏ ସେ ଗୋ ? କିଏ ସେ ଗୋ ?' ଶରତର ନିର୍ମେଘ ନୀଳ ଆକାଶର ବୁକୁଚିରି ଭାସି ଯାଉଥିଲା ହଂସ ବଳାକା । ଇଂରାଜୀ 'ଭି' ଅକ୍ଷର ଆକାରରେ ଶ୍ରେଣୀବଦ୍ଧ ଭାବେ ଉଡ଼ିଗଲାବେଳେ ସେମାନଙ୍କ କୂଜନ ସ୍ପଷ୍ଟ ଭାବେ ଶୁଣାଯାଉଥିଲା । ଝାଙ୍କ ଝାଙ୍କ ସବୁଜ ରଙ୍ଗର ଟିଆ କଳରବ କରି ଉଡ଼ି ଯାଉଥିଲେ ପକ୍ୱ ଶାଳି ଧାନ୍ୟ ସନ୍ଧାନରେ । ଆଉ ସଞ୍ଜହେଲେ ଆକାଶରେ ଛାଇ ଯାଉଥିଲେ ପଲ ପଲ ବାଦୁଡ଼ି । ଆମେ ସେମାନଙ୍କୁ ଚିଡ଼ାଇବା ପାଇଁ, ସ୍ୱର କରି କହୁଥିଲୁ 'ବାଦୁଡ଼ି ହିତିହିତା, ଯେ ଫଳ ଖାଇବୁ ସେ ଫଳ ପିତା ।' ସାରା ରାତି ଚରିବୁଲି ସାରି ବାଦୁଡ଼ି ମାନେ ସକାଳୁ ଫେରି ଆସି ବଗସାମଲ ଗଡ଼ର ତେଙ୍ଗା ତେଙ୍ଗା ତେନ୍ତୁଳି ଗଛମାନଙ୍କ ଡାଳରୁ ତଳକୁ ମୁଣ୍ଡ କରି ଓହଳି ପଡୁଥିଲେ । ହଜାର ହଜାର ବାଦୁଡ଼ିଙ୍କ ସ୍ଥାୟୀ ଘର ଥିଲା ସେ ତେନ୍ତୁଳି ଗଛଗୁଡ଼ିକ ।

ସେତେବେଳେ ବାରିପଦା ସହର ଭିତରେ ବହୁତ ଖୋଲା ଜାଗା ଓ ପତିତ ଜମିଥିଲା । ସେହିସବୁ ପତିତ ଜମିକୁ ଆବୃତ କରି ରଖିଥିଲା ନାଗ-ଅଇରି ଓ କୁରେଇ ଫୁଲର ନଟି, ଭୁରୁଡୁ କୋଳି ଓ ବଇଁଚ କୋଳିର ବୁଦା ଆଉ ଆତ ଓ କେନ୍ଦୁଗଛର ଜଙ୍ଗଲ । ବସନ୍ତ ଋତୁରେ ନାଗଅଇରି ଓ କୁରେଇ ଫୁଲ ବୁଦାଗୁଡ଼ିକ ଫୁଲରେ ଛାଇ ଯାଉଥିଲା । ସେହିଫୁଲକୁ ଘେରି ଉଡ଼ି ବୁଲୁଥିଲେ ଅସଂଖ୍ୟ ବହୁବର୍ଣ୍ଣର ପ୍ରଜାପତି । ବର୍ଷାଋତୁରେ ସେହି ବଣମାନଙ୍କରେ ଆତ ଫଳି ପାଚୁଥିଲା । ଆତ ପାକଳ ହୋଇ କୋଷା ଛାଡ଼ିଲେ ଗୁଣ୍ଡୁଚି ମୂଷା

କୋରି କୋରି ଖାଇ ଦେଉଥିଲେ ସେହି ସୁମିଷ୍ଟ ଫଳକୁ । ଖରାଦିନେ ପାଚିଲା କେନ୍ଦୁ ଖାଇବା ପାଇଁ ଉଡ଼ି ଆସୁଥିଲେ ପାଲା ଭଳି ସବୁଜ ଟିଆମାନେ ।

କେତେଗୁଡ଼ିଏ ସୁନ୍ଦର ଓ ସୁବିନ୍ୟସ୍ତ ଉଦ୍ୟାନ ଥିଲା ବାରିପଦା ସହରରେ । ତା ଭିତରୁ ରାଣିବାଗ ଥିଲା ପ୍ରଧାନ । ସହରର ଦକ୍ଷିଣ ଉପକଣ୍ଠରେ ଗୋଟିଏ ସୁବିଶାଳ କ୍ଷେତ୍ର ଉପରେ ପ୍ରତିଷ୍ଠିତ ଥିଲା ଏହି ଉଦ୍ୟାନ । ଏହା ରାଜପରିବାରର ନିଜସ୍ୱ ଉଦ୍ୟାନ ହେଲେ ମଧ୍ୟ ସେଠାକୁ ବୁଲିଯିବା ପାଇଁ ସର୍ବ ସାଧାରଣଙ୍କୁ ବାଧା ଦିଆଯାଉନଥିଲା । ଏହି ଉଦ୍ୟାନ ଭିତରେ ଥିଲା ବିସ୍ତୀର୍ଣ୍ଣ ଦୁବଘାସର ଲନ୍, ତା ଧାରେ ଧାରେ ମଉସୁମୀ ଫୁଲଗଛର କିଆରୀ, ଅସଂଖ୍ୟ ପ୍ରଜାତିର ଗୋଲାପଫୁଲର ବଗିଚା, ମ୍ୟାଗନୋଲିଆ ଓ କ୍ୟାମେଲିଆ ପରି କେତେ ଦୁଷ୍ପ୍ରାପ୍ୟ ଫୁଲ ଓ ସୁଦୃଶ୍ୟ ଭାବେ କଟା ଯାଇଥିବା ହଥର୍ଣ୍ଣ କିମ୍ବା ମେଞ୍ଜୁଆଦିର ହେଜ୍ । ଶୀତଋତୁରେ ବହୁ ବର୍ଣ୍ଣର କ୍ରିସନଥିମାମ, ଡାଲିଆ, ଜିନିଆ, ଗେଣ୍ଡୁ, କାର୍ଣ୍ଣେସନ, ପପି ଓ ହଲିହକ ପ୍ରଭୃତି ପୁଷ୍ପ ସମ୍ଭାରରେ ମଣ୍ଡିହୋଇ ଆଲୋକିତ ହୋଇ ଉଠୁଥିଲା ରାଣୀବାଗ । ଏହାର ପୂର୍ବ ପଟରେ ଥିଲା ଫଳବଗିଚା । ବିସ୍ତୀର୍ଣ୍ଣ ଜାଗାରେ ଲଗାଯାଇଥିଲା କଲମୀ ପିଜୁଳି, ମଉସୁମୀ ବା ମାଲଟା ଅରେଞ୍ଜ, କାଗଜିଲେମ୍ବୁ, ଲିଚୁ, ଜାମରୁଳ ସପେଟା, କଲମୀ ଆମ୍ବ, ବାତାପି ପରି ବିଭିନ୍ନ ଫଳଗଛ । ଛୋଟ ଗୋଟିଏ ଚିଡ଼ିଆଖାନା ଥିଲା ରାଣୀବାଗରେ । ସେଠାରେ ଥିଲେ କେତେଗୁଡ଼ିଏ ସମ୍ବର, ଚିତ୍ରିତ ହରିଣ, କୁଟୁରା, ଭାଲୁ, କଲରାପତରିଆ ବାଘ, ବାର୍‌ହା, ଝିଙ୍କ, ବେଙ୍ଗେରା ମୂଷା, ଠେକୁଆ, ଗିନିପିଗ୍ ପରି କିଛି ଜନ୍ତୁ ଏବଂ ମୟୂର ବାରମାସୀ ଚଢ଼େଇ ଗୋବରା ଚଢ଼େଇ, ଶୁଆ, ଶାରୀ, ଟାର୍କି କୁକୁଡ଼ା ପରି କିଛି ପକ୍ଷୀ । ରାଜକୁମାର ରାଜକୁମାରୀଙ୍କ ଖେଳିବାପାଇଁ ରାଣୀବାଗରେ ଗୋଟିଏ ଖେଳନା ରେଳଗାଡ଼ି ଚଳାଚଳ କରିବା ପାଇଁ ରେଳଧାରଣା ପଡ଼ିଥିଲା । ରାଣୀବାଗ ବାହାରେ ଥିଲା ମଧୁବନ ତୋଟା । ଅତି ସୁବିସ୍ତୀର୍ଣ୍ଣ ଥିଲା ସେହି ଆମ୍ବତୋଟା । ସେହି ବିଶାଳ ଆମ୍ବତୋଟା ଭିତରେ ଥିଲା ରଜାଘର ହାତୀଶାଳ । ସେଠାରେ ଚାରିପାଞ୍ଚଟା ଦନ୍ତା ଓ ଦଶ ବାରଟା ମାଈ ହାତୀ ରହୁଥିଲେ । ମହାରାଜାଙ୍କ ପାଟହାତୀ ଥିଲା ଗଣେଶ ପ୍ରସାଦ । ପୂର୍ବର ପାଟହାତୀ ନାଦିରଜଙ୍ଗ ବୁଢ଼ାହୋଇଯିବାରୁ ଏହି ବିଶାଳକାୟ ଦନ୍ତାହାତୀଟିକୁ ଧରାଯାଇ ପୋଷା ମନା ଯାଇଥିଲା । ଗଣେଶ ପ୍ରସାଦ ଧରା ହେବାପରେ ତାର ଗୋଟିଏ ଫଟୋଚିତ୍ର ସହିତ ଛୋଟ ଗୋଟିଏ କାହାଣୀ ମୟୂରଭଞ୍ଜ ଷ୍ଟେଟ୍‌ର ମୁଖପତ୍ର

ଭଞ୍ଜପ୍ରଦୀପରେ ବାହାରିଥିଲା । ଫଟୋଚିତ୍ରଟିର ଶିରୋନାମା ଥିଲା- 'ଥରେ ପଳାତକ ପୁଣି ରାଜବନ୍ଦୀ ।'

ମୟୂରଭଞ୍ଜରେ ଖେଦା କରାଯାଇ ହାତୀ ଧରାଯାଉଥିଲା । ଖୁବ୍ ମୋଟା ଓ ଶକ୍ତ ଶାଳଗଣ୍ଡିକୁ ଦୁଇଧାଡ଼ିରେ ପୋତାଯାଇ ଗୋଟିଏ ଖୁଆଡ଼ କରାଯାଏ । ସେହି ଖୁଆଡ଼ ଚାରିପଟେ ଖାଇ ଖୋଳାଯାଇ ତାକୁ ସୁରକ୍ଷିତ କରାଯାଏ । ଖୁଆଡ଼ ଭିତରକୁ ପଶିବା ପାଇଁ ଗୋଟିଏ ମାତ୍ର ପ୍ରବେଶ ପଥ ରଖାଯାଏ । ସେହି ପ୍ରବେଶ ପଥର ଅର୍ଗଳୀ କବାଟିଟିକୁ ଗୋଟିଏ ଗଛ ଡାଳରୁ ଝୁଲାଇ ରଖାଯାଇଥାଏ ଓ ଜଣେ ଲୋକ ସେହି ଡାଳରେ ଜଗି ବସି ରହେ । ହାତୀପଲକୁ ବଣ ଭିତରେ ଠାବ କରିବା ପରେ ସେହି ବଣଟିକୁ ବେଠିଆମାନେ ଘେରାଉ କରି ଜଗି ରୁହନ୍ତି । ପ୍ରଥମେ ହାତୀପଲକୁ ଧାନକଳେଇ, ଆଖୁ, କଦଳୀଗଛ ପ୍ରଭୃତି ସେମାନଙ୍କ ପ୍ରିୟ ଆହାର ଥୋପ ଦିଆଯାଇ ଖେଦା ଆଡ଼କୁ ଆକର୍ଷିତ କରାଯାଏ । ହାତୀପଲ ଖେଦା ନିକଟବର୍ତ୍ତୀ ହୋଇଗଲେ ବେଠିଆ ମାନେ ଢୋଲ, ମାଦଳ, ଖାଲି କିରାସିନ ଟିଣ ବଜାଇ, ବାଣ ଫୁଟାଇ, ନିଆଁହୁଳା ଦେଖାଇ ସେମାନଙ୍କୁ ଖେଦା ଭିତରକୁ ହୁରୁଡ଼ାଇ ନେବାପରେ, ଗଛ ଡାଳରୁ ଝୁଲାଇ ରଖାଯାଇଥିବା ଅର୍ଗଳୀ ଦ୍ୱାରଟିକୁ ପକାଇ ଦିଆଯାଏ । ଛୋଟ ଖୁଆଡଟା ଭିତରେ ବନ୍ଦୀ ହୋଇ ରହିଯା'ନ୍ତି ହାତୀମାନେ । ୧୯୩୮ ମସିହାରେ ବାରିପଦାଠାରୁ ପନ୍ଦର ଷୋହଳ ମାଇଲ ଦୂରରେ ଦୁଧିଆଶୋଳ କି ସେମିତି କୌଣସି ଗୋଟିଏ ଜାଗାରେ ହାତୀଖେଦା କରାଯାଇଥିଲା । ସେହି ଖେଦାରେ ଗଣେଶ ପ୍ରସାଦ ନେତୃତ୍ୱ ନେଇଥିବା ଦଳଟିର ପନ୍ଦରଟି ମାଈ, ମାଖୁନା, (ଦାନ୍ତ ଉଠି ନଥିବା ଅଣ୍ଡିରା ହାତୀ) ଓ ଛୁଆଙ୍କ ସହିତ ନିଜେ ଯୂଥପତି ଗଣେଶ ପ୍ରସାଦ ବନ୍ଦୀହୋଇ ଯାଇଥିଲା । ଖେଦାର ବାଡ଼ଭାଙ୍ଗି ମୁକ୍ତହେବାପାଇଁ ହାତୀମାନଙ୍କର ଯୌଥ ପ୍ରଚେଷ୍ଟା ବିଫଳ ହେବା ପରେ, ଯୂଥପତି ଗଣେଶ ପ୍ରସାଦ ତାର ଶକ୍ତ ଦୁଇଟି ଦାନ୍ତରେ ଅର୍ଗଳୀ ଦ୍ୱାରକୁ ଟେକିଦେଇ ବାହାରକୁ ଚାଲି ଆସିଥିଲା । ନିଜକୁ ମୁକ୍ତ କରିବା ପରେ ସେ ଦେଖିଲା ତା ପଲର ସବୁ ସ୍ତ୍ରୀ ଶିଶୁ ଓ କିଶୋର ହାତୀ ଖେଦା ଭିତରେ ବନ୍ଦୀହୋଇ ରହିଯାଇଛନ୍ତି । ତାର ଆଶ୍ରିତ ହାତୀମାନଙ୍କୁ ମୁକ୍ତ କରିବା ପାଇଁ କୌଣସି ଉପାୟ ନାହିଁ । ଦୁଇଦିନ କାଳ ଖେଦା ନିକଟବର୍ତ୍ତୀ ଜଙ୍ଗଲରେ ଅପେକ୍ଷା କରିବା ପରେ ସେ ସ୍ୱେଚ୍ଛାରେ ଖେଦା ପାଖକୁ ଫେରିଆସି ଆତ୍ମ ସମର୍ପଣ କରି ଧରା ଦେଇଥିଲା । ଆଶ୍ରିତମାନଙ୍କୁ ଛାଡ଼ି ସେ ଚାଲି ଯାଇ ପାରିନଥିଲା । ବିନା ପ୍ରତିବାଦରେ

ବରଣ କରିନେଇଥିଲା ଶୃଙ୍ଖଳ, ଅଙ୍କୁଶାଘାତର ଅନୁଶାସନ ଓ ଆଜୀବନ ରାଜକୀୟ ଦାସତ୍ୱ । ଏହାଥିଲା ମୟୂରଭଞ୍ଜ ଷ୍ଟେଟ୍‌ର ଶେଷ ହାତୀ ଧରା ଖେଦା । ଏହାର ପାଞ୍ଚବର୍ଷ ପରେ ଆଉ ଗୋଟିଏ ବିଶାଳକାୟ ଦନ୍ତାକୁ କନ୍ଥା ସାହାଯ୍ୟରେ ଧରାଯାଇଥିଲା ସେହି ହାତୀ ପୋଷା ମାନିବା ପରେ ତା ନାମ ଦିଆଯାଇଥିଲା ଗଜରାଜ ।

ରାଣୀବାଗର ଚିଡ଼ିଆଖାନା କିମ୍ବା ମଧୁବନ ତୋଟାର ହାତୀଶାଳଠାରୁ ଆମମାନଙ୍କ ପାଇଁ ଅଧିକ ଆକର୍ଷଣୀୟ ଥିଲା ପୋଲିସ ଲାଇନ ପାଖରେ ଥିବା ବାଘ ଘର । ଏହି ବାଘର ଯନ୍ତାରେ ରଖାଯାଇଥିଲେ ଗୋଟିଏ ଆଫ୍ରିକୀୟ ସିଂହୀ, ଯୋଡ଼ିଏ ମହାବଳ ବାଘ, ଓ କେତୋଟି କଲରାପତରିଆ ବାଘ (ପେନ୍ଥାର) । ବାଘ ଗୁଡ଼ିକୁ ମୟୂରଭଞ୍ଜ ଜଙ୍ଗଲରୁ ଧରାଯାଇଥିବା ସ୍ଥଳେ ସିଂହୀଟିକୁ ମହାରାଜା ଗୋଟିଏ ସର୍କସ ଠାରୁ କିଣିଥିଲେ । ସେହି ସର୍କସଟିର ସ୍ୱତ୍ୱାଧିକାରିଣୀ ଥିଲେ ଜଣେ ମହିଳା- ତାଙ୍କ ନାମ ଥିଲା ରୁକୁଣୀବାଈ । ଏହି ସର୍କସର ବିଶେଷତ୍ୱ ହେଲା, ଏହାର ରିଂ ମାଷ୍ଟର ଥିଲେ ନିଜେ ରୁକୁଣୀବାଈ । ସେ ଥିଲେ ଭାରତବର୍ଷର ଏକମାତ୍ର ମହିଳା ରିଂ ମାଷ୍ଟର । ବାଘ ସିଂହ ପ୍ରଭୃତି ହିଂସ୍ର ଜୀବଜନ୍ତୁଙ୍କ ଖେଳ ସେ ନିଜେ ଦେଖାଉଥିଲେ । ବାରିପଦାଠାରେ ସର୍କସ ଚାଲିଥିବାବେଳେ ଦିନେ, ଗୋଟିଏ ଉତ୍ୟକ୍ତ ସିଂହ ଆକ୍ରମଣରେ ରୁକୁଣୀବାଈ ପ୍ରାଣ ହରାଇଥିଲେ । ସର୍କସ ଭାଙ୍ଗିଯାଇ ଥିଲା । ରୁକୁଣୀବାଈଙ୍କ ଉତ୍ତରାଧିକାରୀମାନେ ବାରିପଦାରେ ସର୍କସର ଜିନିଷପତ୍ର ଜୀବଜନ୍ତୁ ସବୁ ବିକ୍ରି କରିଦେଇ ଚାଲିଯାଇଥିଲେ । ସେହି ସମୟରେ ମୟୂରଭଞ୍ଜ ମହାରାଜା ସର୍କସରୁ ଗୋଟିଏ ଆଫ୍ରିକୀୟ ସିଂହ ଓ ଗୋଟିଏ ସିଂହୀ କିଣିଥିଲେ । କିଛିଦିନ ପରେ ସିଂହଟି ମରିଯାଇଥିଲା କିନ୍ତୁ ଅନେକ ଦିନ ଯାଏ ସିଂହୀଟି ବଞ୍ଚିଥିଲା ।

ଆଉ ଗୋଟିଏ ଅତି ସୁନ୍ଦର ଉଦ୍ୟାନ ଥିଲା ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କ ସମାଧି ମନ୍ଦିର । କଚେରି ନିକଟରେ ଗୋଟିଏ ସୁବିନ୍ୟସ୍ତ ପୁଷ୍ପ ଉଦ୍ୟାନ ଭିତରେ ସ୍ୱର୍ଗତ ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କ ସମାଧି ମନ୍ଦିର ଥିଲା । ପ୍ରତିଦିନ ସେଠାରେ ସ୍ୱର୍ଗତ ମହାରାଜାଙ୍କ ପାଇଁ ପୂଜାର୍ଚ୍ଚନା ହେଉଥିଲା । ବଡ଼ ମହାରାଣୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅତି ସୁନ୍ଦର ଉଦ୍ୟାନଟିଏ ଗଢ଼ି ଉଠିଥିଲା ସମାଧି ମନ୍ଦିର ପ୍ରାଙ୍ଗଣରେ । ପ୍ରତି ରବିବାର ସନ୍ଧ୍ୟାରେ ଏହି ଉଦ୍ୟାନରେ ବଡ଼ ମହାରାଣୀଙ୍କ ଦ୍ୱାରା ପ୍ରତିଷ୍ଠିତ ମହିଳା ସମିତି ବୈଠକ ଅନୁଷ୍ଠିତ ହେଉଥିଲା । ସେତେବେଳର ପର୍ଦ୍ଦାନସୀନ ଗୃହିଣୀମାନଙ୍କର ଅନ୍ୟମାନଙ୍କ ସହିତ ମିଳାମିଶା କରିବା ପାଇଁ

ଏହି ସମିତି ବୈଠକରେ ସୁଯୋଗ ମିଳୁଥିଲା । ସେମାନେ ପରସ୍ପର ଭିତରେ ଉଲବୁଣା, ସୂଚୀ ଶିଳ୍ପ, ବଡ଼ି ଆଚାର ମୁରବା ଇତ୍ୟାଦି ପ୍ରସ୍ତୁତି ଓ ରନ୍ଧାବଢ଼ା ଇତ୍ୟାଦିନେଇ ଆଲୋଚନା କରୁଥିଲେ । ଏକ୍ଷେତ୍ରରେ ଅଗ୍ରଣୀ ଭୂମିକା ନେଉଥିଲେ ମୁଟୁରିନାନୀ । ମୁଟୁରୀନାନୀ ହେଉଛନ୍ତି ବାରିପଦାର ପ୍ରସିଦ୍ଧ ଓକିଲ ଲାଲମୋହନ ପତିଙ୍କ କନ୍ୟା । ସେ ବିଧବା ହୋଇ ପିତ୍ରାଳୟରେ ଅବସ୍ଥାନ କରୁଥିଲେ । ସେ ଉଲ ବୁଣାବୁଣିରେ ବିଶେଷ କୁଶଳୀ ଥିଲେ ଓ ବିନା ଦ୍ୱିଧାରେ ଝିଅବୋହୂମାନଙ୍କୁ ଉଲ ବୁଣା ଶିଖାଇ ଦେଉଥିଲେ । ଓଡ଼ିଶାର ବିଶିଷ୍ଟ ନୃତ୍ୟାଙ୍ଗନା ସ୍ୱର୍ଗତା ସଂଯୁକ୍ତା ପାଣିଗ୍ରାହୀଙ୍କର ସେ ମାତାମହୀ । ମୟୂରଭଞ୍ଜର ମିଶ୍ରଣ ପରେ ବଡ଼ ମହାରାଣୀଙ୍କ ମହିଳା ସମିତି ଭାଙ୍ଗିଯାଇଥିଲା କିନ୍ତୁ ମୁଟୁରି ନାନୀଙ୍କ ନେତୃତ୍ୱରେ ବାରିପଦା ନାରୀମଙ୍ଗଳ ସମିତି ଗଠିତ ହୋଇ ବହୁ ନାରୀ ମଙ୍ଗଳ କାର୍ଯ୍ୟ କରିବାକୁ ସମର୍ଥ ହୋଇଥିଲା ।

ଅନ୍ୟ ଗୋଟିଏ ଆକର୍ଷଣୀୟ ଉଦ୍ୟାନ ଥିଲା ବ୍ୟାଣ୍ଡ ଷ୍ଟାଣ୍ଡରେ । ବ୍ୟାଣ୍ଡ ଷ୍ଟାଣ୍ଡ ଥିଲା ସର୍ବସାଧାରଣ ପାର୍କ । ପ୍ରତି ଶନିବାର ଅପରାହ୍ନରେ ଷ୍ଟେଟ ବ୍ରାସ ବ୍ୟାଣ୍ଡ ପାର୍ଟି ଏଠାରେ ଅତ୍ୟନ୍ତ ଶ୍ରୁତି ମଧୁର ଐକତାନ ବାଦ୍ୟବୃନ୍ଦ ପରିବେଷଣ କରୁଥିଲେ । ମୟୂରଭଞ୍ଜ ଷ୍ଟେଟ ବ୍ୟାଣ୍ଡ ପାର୍ଟିର ବ୍ୟାଣ୍ଡ ମାଷ୍ଟର ଥିଲେ ଜଣେ ବୟସ୍କ ଇଟାଲିଆନ ସଙ୍ଗୀତଜ୍ଞ । ସେ ଥିଲେ ପାଶ୍ଚାତ୍ୟ କ୍ଲାସିକାଲ ମ୍ୟୁଜିକର ଜଣେ ଦକ୍ଷ ଶିଳ୍ପୀ । ବାରିପଦା ସହରର କେତେଜଣ ଅଶିକ୍ଷିତ ଲୋକଙ୍କୁ ବିଭିନ୍ନ ବାଦ୍ୟଯନ୍ତ୍ର ବଜାଇବା ଶିଖାଇ ସେ ବ୍ୟାଣ୍ଡ ପାର୍ଟିଟି ଗଢ଼ିଥିଲେ । ଚାଳିଶଟି ବିଭିନ୍ନ ବାଦ୍ୟଯନ୍ତ୍ରର ଐକତାନ ବାସ୍ତବିକ ମନୋମୁଗ୍ଧକର ଥିଲା । ସହକାରୀ ବ୍ୟାଣ୍ଡ ମାଷ୍ଟର ଥିଲେ କାର୍ତ୍ତିକ ଚନ୍ଦ୍ର ପାଲ । ସେ ମଧ୍ୟ ଜଣେ ଉଚ୍ଚକୋଟୀର ସଙ୍ଗୀତଜ୍ଞ ଥିଲେ । ମିଶ୍ରଣ ପରେ ମୟୂରଭଞ୍ଜ ବ୍ୟାଣ୍ଡ ପାର୍ଟିଟିକୁ ଓଡ଼ିଶା ପୋଲିସର ଓ.ଏମ୍.ପି ଫାଷ୍ଟ ବ୍ୟାଟାଲିୟନ ଗ୍ରହଣ କରିନେଇ ଥିଲେ ଓ କାର୍ତ୍ତିକବାବୁ ବ୍ୟାଣ୍ଡ ଇନ୍ସପେକ୍ଟର ଭାବେ ନିଯୁକ୍ତି ପାଇଥିଲେ । ପରେ ସେ ଡି.ଏସ୍.ପି ଭାବେ ଅବସର ଗ୍ରହଣ କରିଥିଲେ । ବ୍ୟାଣ୍ଡରେ ବାଜୁଥିବା ଜାଜ୍ ବା ସିମ୍ଫୋନୀ ଆମେ ବୁଝି ପାରୁନଥିଲୁ । ରସ ଗ୍ରହଣ କରିପାରୁ ନଥିଲୁ ସେହି ଉଚ୍ଚାଙ୍ଗ ପାଶ୍ଚାତ୍ୟ ସଙ୍ଗୀତର । କେତେ ସମୟ ପରେ ବିରତିବେଳେ ଆମ ଭିତରୁ କେହି ଜଣେ ସାହସ କରି କହୁଥିଲା, 'ସାର୍, ଉଇ ୱାଣ୍ଟ ଟୁ ଲିସିନ୍ ଇଣ୍ଡିଆନ୍ ମ୍ୟୁଜିକ୍ ।'

ବ୍ୟାଣ୍ଡମାଷ୍ଟର ସାହେବ ଆମ କଥା ଶୁଣି ସ୍ମିତ ହସୁଥିଲେ । ତାପରେ

ତାଙ୍କ ସହକାରୀଙ୍କୁ ଚାହିଁ କହୁଥିଲେ, 'କାର୍ତ୍ତିକ ବୟେଜ ବ୍ରାଣ୍ଡ ହିନ୍ଦୀ ଫିଲ୍ମ ସଙ୍ଗ, ପ୍ଲିଜ୍ ଟେକ ଓଭର ।'

ବ୍ୟାଣ୍ଡ ମାଷ୍ଟର ମଞ୍ଚ ଉପରୁ ଓହ୍ଲାଇ ଆସି ତଳେ ଚେୟାରରେ ବସୁଥିଲେ । ସହକାରୀ ବ୍ୟାଣ୍ଡ ମାଷ୍ଟର କାର୍ତ୍ତିକ ପାଇ ପରିଚାଳନା କରୁଥିଲେ ବାଦ୍ୟବୃନ୍ଦ । ଚାଳିଶ ଖଣ୍ଡ ବିଭିନ୍ନ ବାଦ୍ୟ ଯନ୍ତ୍ରରେ ଐକତାନରେ ବାଜି ଉଠୁଥିଲା ସେତେବେଳର ଲୋକପ୍ରିୟ ହିନ୍ଦୀ ସିନେମା ସଙ୍ଗୀତର ସ୍ୱର.... ଚଲିରେ ଚଲିରେ ମେରି ନାଓ ଚଲିରେ । କିମ୍ବା ଚଲ ଚଲ ରେ ନଓ ଜୱାନ ଅଥବା ଧୀରେ ଧୀରେ ଆ'ରେ ବାଦଲ ଧୀରେ ଆରେ ଆ....। ଆମ ପ୍ରିୟ ସିନେମା ସଙ୍ଗୀତ ଶୁଣି ଆମେ ଉଲ୍ଲସିତ ହୋଇ ଉଠୁଥିଲୁ ।

ବାରିପଦା ସହର ଉପକଣ୍ଠରେ ଅନେକ ଫଳ ବଗିଚା ଥିଲା । ହେମିଲଟନ ବୋଲି ଜଣେ ସାହେବ ସାରା ପୃଥିବୀ ବୁଲି ବୁଲି ଫଳ ବଗିଚା କରୁଥିଲେ । ସେହି ସାହେବ ବାରିପଦା ଆସି ସହରର ପ୍ରବେଶ ଦ୍ୱାର ନିକଟରେ ହେମିଲଟନ ଫାର୍ମ ପ୍ରତିଷ୍ଠା କରିଥିଲେ । ହେମିଲଟନ ଫାର୍ମରେ ଥିଲା ଅତି ସୁସ୍ୱାଦୁ କଲମୀ ଆମ୍ବ ବଗିଚା । ସେହି ବଗିଚାର ଲାଟସୁନ୍ଦରୀ ଆମ୍ବର ତୁଳନା ନାହିଁ । ସେଠାରୁ ଅଳ୍ପ ଦୂରରେ କାଠପାଳଠାରେ ଥିଲା ହେମିଲଟନ ଟ୍ରଷ୍ଟର ମାଲଟା ଅରେଞ୍ଜ (ମୌସୁମି) ଓ କାଗଜି ଲେମ୍ବୁ ବଗିଚା । ପ୍ରଚୁର ଫଳ ଫଳୁଥିଲା ଏଇ ବଗିଚାରେ । ସେ ସବୁ ଫଳ ନିୟମିତ ଭାବେ କଲିକତା ରପ୍ତାନୀ ହେଉଥିଲା । ଏହାଛଡ଼ା ମଞ୍ଚାବନ୍ଧା ଠାରେ ଥିଲା ମହାରାଜାଙ୍କ ବିଶାଳ କଲମି ଆମ୍ବ ବଗିଚା । ବାରିପଦା ସହର ଉପକଣ୍ଠରେ ଅଭିରାମବାବୁ, ସୁରେନ ବାବୁ ଡାକ୍ତର, କ୍ଷେତ୍ରମୋହନ କମାନୀ ପ୍ରଭୃତି ଆହୁରି ଅନେକ ଲୋକଙ୍କର ନିଜସ୍ୱ ଫଳ ବଗିଚା ଥିଲା । ବାରିପଦାକୁ ଆନ୍ଧ୍ର ବା କଲିକତାରୁ ଚାଲାଣି ଆମ୍ବ ବିକ୍ରିପାଇଁ ଆସୁନଥିଲା । ସେଠାରେ ପ୍ରଚୁର ପରିମାଣରେ ଦେଶି ଆମ୍ବ ସହ ସ୍ଥାନୀୟ କଲମୀ ଆମ୍ବ କିଣିବାକୁ ମିଳୁଥିଲା । କେତେପ୍ରକାର ନାମ ସେ ଆମ୍ବର– ଗୋଲାପ-ଖାସ୍, ବେଗମ-ବାହାର, ବାଦଶା ପସନ୍ଦ, କାଲାପାହାଡ଼, ଜାହାଙ୍ଗୀର, ଲେଙ୍ଗଡ଼ା, ବୋମ୍ବାଇ, ଗ୍ରେଟ୍ ବୋମ୍ବାଇ, ଆଲ୍‌ଫାନ ସୋ, ଗୋପାଳ ଭୋଗ, ଲାଟ ସୁନ୍ଦରୀ ଆଉ ବାଇଗଣ ପଲାଇ....., ଆଉ କି ଅପୂର୍ବ ସ୍ୱାଦ ସେ ଆମ୍ବର । ଏବେ ବି ସେହି ସବୁ ବଗିଚାର ଅବଶିଷ୍ଟ ଥିବା ଗଛର ଆମ୍ବ ମିଳୁଛି ବାରିପଦା ବଜାରରେ । ଦୋକାନୀମାନେ କହୁଛନ୍ତି, 'ଆଖି ବୁଜି ନଉନ ଆଜ୍ଞା, ଇୟେ ରାଣୀବାଗର

ଲେଙ୍ଗଡ଼ା ଆଉ ସେ ହେଉଛି ହେମିଲଟନ ଫାରମର ଛାବ୍ ସୁନ୍ଦରୀ ।'

ଏ ହେଉଛି ଷାଠିଏ ବର୍ଷ ତଳର ସ୍ମୃତି । ଆଜି ଷାଠିଏ ବର୍ଷ ତଳର ବାରିପଦାକୁ ଖୋଜି ବସିଲେ କଣ ଆଉ ସେ ମିଳିବ ? ଯେଉଁ ହାସ୍ୟମୁଖରା ସୁନ୍ଦରୀ କିଶୋରୀଟି ମୋ ଆଖିରେ ଲେପିଦେଇଥିଲା ସ୍ୱପ୍ନର ମାୟାଞ୍ଜନ ତାକୁ ଖୋଜି ପାଇବା ଦୁଷ୍କର ହୋଇପଡ଼ିଛି । ସହରଟା ତ ଅଛି- ତେବେ କେଉଁଆଡ଼େ ହଜିଗଲା ବାରିପଦା ? ଏଇ କଣ ସେଇ ବାରିପଦା- ସମୟର ପ୍ରତିଘାତରେ ବଦଳିଯାଇ ବିବର୍ଣ୍ଣ ଅନୁଜ୍ଜ୍ୱଳ ହୋଇଯାଇଛି ? ନା- ମୁଁ ବୁଝିପାରୁ ନଥିଲି କିମ୍ବା ବାରିପଦାକୁ ଖୋଜି ପାଉ ନଥିଲି । ଆଜି ତ କାହିଁ ବାରିପଦାର ଅସଜଡ଼ା ଅଳକରେ ଲାଗିନାହିଁ ଝରାଧାନ ଫୁଲର ମଞ୍ଜରୀ; ତା କବରୀ ଆମୋଦିତ ହେଉନାହିଁ ଚମ୍ପା, ମଲ୍ଲୀ, ଯୁଇ ବା ବକୁଳ ଫୁଲର ଗନ୍ଧରେ । ତା ଗଣ୍ଡରେ ଲେସି ହୋଇନାହିଁ ଲୋଧ୍ର ରେଣୁ । ସେ ତ ପିକ କଣ୍ଠରେ ଗୀତ ଗାଉ ନାହିଁ.... ସେ ଚିଠି ଲେଖୁନାହିଁ ବଳାକାର ଚାରୁ ଲିପିରେ.... କିମ୍ବା ବଳଙ୍ଗର ସ୍ନାନଘାଟରେ ବସି ତୁଠ ପଥରରେ ଘସି ତାର ମନ୍ଦାର-ପାଦ ଅଳତାର ଦାଗ ଲିଭାଉନାହିଁ ।

ମୁଁ ଦୈନିକ ବଜାରକୁ ଯିବା ବାଟରେ ବାଣିଆ ଜଗନ୍ନାଥ ମନ୍ଦିର ପାଖରେ ଛିଡ଼ା ହୋଇଥିଲି । ଓଃ- ରାସ୍ତାରେ ଅସମ୍ଭବ ଭିଡ଼- ଗାଡ଼ି, ମୋଟର, ସ୍କୁଟାର, ମୋଟର ସାଇକେଲ, ରିକ୍ସା, ସାଇକେଲ ଗହଳିରେ ବାଟ ଚାଲି ହେଉନାହିଁ । ଚାରିଆଡ଼େ ଖାଲି ଅଚିହ୍ନା ମୁହଁ, ଦଣ୍ଡେ ଠିଆହୋଇଯାଇ ପଦେ କଥା କହିବାପାଇଁ କାହା ପାଖରେ ସମୟ ନାହିଁ । ଉଜ୍ଜ୍ୱଳ ନିୟନ ଆଲୁଅରେ ବିପଣୀର ବିଜ୍ଞାପନ । ମାଇକ୍‌ରେ ଶୁଭୁଛି ସିନେମା ସଙ୍ଗୀତ, ଅନେକ କୋଳାହଳ ଭିତରୁ ଶୁଭୁଚି ତାରିଣୀ ମନ୍ଦିର ନିର୍ମାଣ ପାଇଁ ହେବାକୁ ଥିବା ଲଟାରି ପାଇଁ ଘୋଷଣା । ପ୍ରଥମ ପୁରସ୍କାର ଏଲ.ଏମ୍.ଏଲ୍ ଭେଷ୍ପା ସ୍କୁଟର, ଦ୍ୱିତୀୟ ପୁରସ୍କାର- ବି.ପି.ଏଲ୍ ରଙ୍ଗୀନ ଟି.ଭି, ତୃତୀୟ ପୁରସ୍କାର- ଗୋଦରେଜ ଫ୍ରିଜ୍ । ହଁ ବସ୍ତୁବାଦୀ ଦୁନିଆ ଭିତରେ ହଜିଯାଇଛି ବାରିପଦା । ଶାଢ଼ୀ, ପୋଷାକ, ଗହଣା, ଟି.ଭି, ଫ୍ରିଜ୍, ୱାସିଂ ମେସିନ, ମୋପେଡ ଆଉ ସ୍କୁଟର ଦୋକାନମାନଙ୍କରେ ଅନେକ ଭିଡ଼ । ମୁଁ ଆଜିକୁ ପ୍ରାୟ ପଚାଶବର୍ଷ ତଳେ ଯେଉଁ ଝିଅଟାର ହାତ ଛାଡ଼ିଦେଇ ଚାଲିଯାଇଥିଲି ତାକୁ ଆଜି ଏଇ ଗହଳି ଭିତରୁ କେଉଁଠୁ ଖୋଜି ପାଇବି ମୁଁ ?

ଜଣେ କିଏ ଆଗେଇ ଆସି କହିଲା, 'ଆଜ୍ଞା ଝିଅଟାର ଚେହେରାର

ମୋଟାମୋଟି ବର୍ଣ୍ଣନା ଦିଅନ୍ତୁ । ଆମେ ଚେଷ୍ଟାକରି ଖୋଜିବେଣ୍ଟା ଯଦି ମିଳିଯାଏ ।'

ତା କଥା ଶୁଣି ମୁଁ ଚୁପ୍ ହୋଇଯାଇଥିଲି । କି ବର୍ଣ୍ଣନା ତାର ମୁଁ ଦେବି ? ଅର୍ଦ୍ଧ-ଶତାବ୍ଦୀ ତଳର ବାରିପଦାର ବର୍ଣ୍ଣନା ଦେବାର ଶକ୍ତି କଣ ମୋର ଅଛି ? ତଥାପି ମୁଁ ଚେଷ୍ଟା କରିବି, ଯାହା ମନେ ଅଛି ତାହା କହିବି । ବାର୍ଦ୍ଧକ୍ୟ, ଅସୁସ୍ଥତା, ସ୍ମୃତି ଅବକ୍ଷୟ ଯୋଗୁଁ ହୁଏତ ଅନେକ କଥା ମୁଁ ଭୁଲି ଯାଇଛି । ତଥାପି ମନେ ଅଛି ଅନେକ କଥା । ମୋର ବାଲ୍ୟ ଓ କୈଶୋରର ବାରିପଦାକୁ ମୁଁ ଭୁଲିପାରିନାହିଁ ।

ବାରିପଦା ସହର ଥିଲା ପ୍ରାକ୍ତନ ମୟୂରଭଞ୍ଜ ଷ୍ଟେଟ୍‌ର ରାଜଧାନୀ । ତା'ର ବିକାଶ ହୋଇଥିଲା ମୟୂରଭଞ୍ଜ ମହାରାଜାମାନଙ୍କୁ କେନ୍ଦ୍ର କରି । ତାଙ୍କ ଇଚ୍ଛା ଅନିଚ୍ଛା, ପସନ୍ଦ ଅପସନ୍ଦ, ତାଙ୍କ ସଉକ, ତାଙ୍କ ରୁଚି ଓ ତାଙ୍କ ବ୍ୟକ୍ତିତ୍ୱ ଅନୁସାରେ ଗଢ଼ି ଉଠିଥିଲା ତାଙ୍କ ରାଜ୍ୟର ରାଜଧାନୀ ସହର । ତେଣୁ ମହାରାଜାଙ୍କ ବିଷୟରେ ସ୍ପଷ୍ଟ ଗୋଟିଏ ଧାରଣା ନରହିଲେ, ସେତେବେଳର ବାରିପଦା ସହରକୁ ଚିହ୍ନିବା କଷ୍ଟକର ହେବ ।

ସେତେବେଳେ ମୟୂରଭଞ୍ଜ ଷ୍ଟେଟ୍‌ର ରୁଲିଂ ଚିଫ୍ ବା ମହାରାଜା ଥିଲେ ପ୍ରତାପଚନ୍ଦ୍ର- ଫ୍ଲାଇଟ୍ ଲେଫଟ୍‌ନେଣ୍ଟ ମହାରାଜା ସାର୍ ଶ୍ରୀ ପ୍ରତାପଚନ୍ଦ୍ର ଭଞ୍ଜଦେଓ କେ.ସି.ଆଇ.ଇ ଜି.ସି.ଆଇ.ଇ । କେ.ସି.ଆଇ.ଇ ଓ ଜି.ସି.ଆଇ.ଇ ଦୁଇଟିଯାକ ଥିଲା ମହାମହିମ ଭାରତ ସମ୍ରାଟଙ୍କ ପ୍ରବର 'ନାଇଟ୍‌ହୁଡ୍' ଦ୍ୟୋତକ ଉପାଧି- ଯଥାକ୍ରମେ ନାଇଟ କମାଣ୍ଡର ଅଫ୍ ଇଣ୍ଡିଆନ ଏମ୍ପାୟାର୍ ଓ ଗ୍ରାଣ୍ଡ କମାଣ୍ଡର ଅଫ୍ ଇଣ୍ଡିଆନ ଏମ୍ପାୟାର୍ । ଦ୍ୱିତୀୟ ମହାସମର ସମୟରେ ମହାରାଜା ତାଙ୍କର ନିଜସ୍ୱ ତିନୋଟି ବିମାନକୁ ପ୍ରତିରକ୍ଷା ପ୍ରୟୋଜନରେ ବ୍ୟବହୃତ ହେବାପାଇଁ ବିମାନ ବାହିନୀକୁ ଦାନ କରିଥିଲେ ଓ ନିଜେ ବିମାନ ବାହିନୀରେ ଜଣେ ବୈମାନିକ ଭାବେ ଯୋଗଦେବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ବ୍ରିଟିଶ୍ ସରକାର ମହାରାଜାଙ୍କ ଇଚ୍ଛାକୁ ସମ୍ମାନ ଜଣାଇ ତାଙ୍କୁ ରାଜକୀୟ ବିମାନ ବାହିନୀ (ରୟେଲ୍ ଏୟାରଫୋର୍ସ)ରେ ଜଣେ ଅବୈତନିକ ଫ୍ଲାଇଟ୍ ଲେଫ୍ଟନାଣ୍ଟ ଭାବେ ନିଯୁକ୍ତି ଦେଇଥିଲେ । ମୟୂରଭଞ୍ଜ ଗୋଟିଏ 'କ' ଶ୍ରେଣୀଭୁକ୍ତ ଦେଶୀୟ ରାଜ୍ୟ ଥିଲା ଓ ମହାରାଜାଙ୍କର ଏଗାରଟି ତୋପ ସଲାମୀ ପ୍ରାପ୍ୟ ଥିଲା । ମୟୂରଭଞ୍ଜ ଦେଶୀୟ ରାଜ୍ୟ ଓଡ଼ିଶାର ଅନ୍ୟାନ୍ୟ ଗଡ଼ଜାତ ମାନଙ୍କ ପରି ଇଷ୍ଟର୍ଣ୍ଣ ଷ୍ଟେଟସ୍ ଏଜେନ୍ସି ଅନ୍ତର୍ଭୁକ୍ତ ହୋଇ ସମ୍ବଲପୁରର

ପଲିଟିକାଲ ଏଜେଣ୍ଟଙ୍କ ନିୟନ୍ତ୍ରଣାଧୀନ ନଥିଲା । ଏହା କୁଚବିହାର, ମଣିପୁର, ତ୍ରିପୁରା ଇତ୍ୟାଦିଙ୍କ ପରି ସିଧା ସଳଖ ବେଙ୍ଗଲ ଷ୍ଟେଟସ୍‌ର ରେସିଡେଣ୍ଟଙ୍କ ତତ୍ତ୍ୱାବଧାନରେ ରହିଥିଲା ।

ଦେଶୀୟ ରାଜ୍ୟ ରାଜା ମହାରାଜାମାନଙ୍କ କଥା ଚିନ୍ତାକଲେ ଯେଉଁ ଭାବମୂର୍ତ୍ତି ମନକୁ ଆସେ ତାହା ସହିତ ମହାରାଜା ପ୍ରତାପଚନ୍ଦ୍ରଙ୍କର ଖୁବ୍ ବେଶି ମେଳ ନଥିଲା । ସେ ଥିଲେ ପୁଣ୍ୟଶ୍ଳୋକ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ଦ୍ୱିତୀୟ ପୁତ୍ର ଓ ଓଡ଼ିଶାର ଏକ ବହୁପୁରାତନ ରାଜବଂଶର ଦାୟାଦ । ଇତିହାସରୁ ଜଣାଯାଏ ମୟୂରଭଞ୍ଜରେ ଭଞ୍ଜ ରାଜବଂଶ ଖ୍ରୀଷ୍ଟିୟ ସପ୍ତମ ଶତାବ୍ଦୀରୁ ନିରବଚ୍ଛିନ୍ନ ଭାବେ ରାଜତ୍ୱ କରିଆସୁ ଥିଲେ । ତାଙ୍କ ଜ୍ୟେଷ୍ଠଭ୍ରାତା ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କର ୧୯୨୮ ଅକାଳ ବିୟୋଗ ହେବାପରେ ସେ ମୟୂରଭଞ୍ଜ ରାଜ ସିଂହାସନ ଆରୋହଣ କରିଥିଲେ । ୧୯୧୨ ମସିହାରେ ଏକ ଦୁର୍ଘଟଣାରେ ମହାରାଜା ଶ୍ରୀରାମଚନ୍ଦ୍ରଙ୍କର ଅକାଳ ବିୟୋଗ ହୋଇଥିଲା । ସେତେବେଳକୁ ଉଭୟ ପୂର୍ଣ୍ଣଚନ୍ଦ୍ର ଓ ପ୍ରତାପଚନ୍ଦ୍ର ନାବାଳକ ଥିଲେ । ସେମାନଙ୍କ ମାତା ଲକ୍ଷ୍ମୀକୁମାରୀଙ୍କର ପୂର୍ବରୁ ମୃତ୍ୟୁ ହୋଇଯାଇଥିଲା । ଏହି ଅନାଥ ରାଜକୁମାର ଦୁଇଜଣଙ୍କୁ ସେମାନଙ୍କ ପିତୃବ୍ୟ ରାଉତରାୟ ସାହେବ ଶ୍ରୀଦାମଚନ୍ଦ୍ର ପ୍ରତିପାଳନ କରିଥିଲେ । ଆଜମୀରର ମେୟୋ କଲେଜରୁ ଶିକ୍ଷା ସମାପ୍ତ କରି ବୟଃପ୍ରାପ୍ତ ହେବାପରେ ୧୯୨୦ ମସିହାରେ ପୂର୍ଣ୍ଣଚନ୍ଦ୍ର ମୟୂରଭଞ୍ଜର ମହାରାଜା ହୋଇଥିଲେ । କିନ୍ତୁ ଦୁର୍ଭାଗ୍ୟର ବିଷୟ ଅଳ୍ପ କେଇଟା ବର୍ଷ ପରେ ୧୯୨୮ ମସିହାରେ ଭାରତର ରାଜନ୍ୟ ମଣ୍ଡଳୀଙ୍କ ଗୋଟିଏ ସଭାରେ ଯୋଗଦେବାପାଇଁ ବମ୍ବେ ଯାଇଥିବା ଅବସରରେ ଧନୁଷ୍ଟଙ୍କାର ରୋଗରେ ପୀଡ଼ିତ ହୋଇ ତାଙ୍କର ମଧ ମାତ୍ର ୨୯ ବର୍ଷ ବୟସରେ ଅକାଳ ବିୟୋଗ ହୋଇଥିଲା । ନିସନ୍ତାନ ଜ୍ୟେଷ୍ଠଭ୍ରାତାଙ୍କ ମୃତ୍ୟୁପରେ ଛୋଟରାୟ ପ୍ରତାପଚନ୍ଦ୍ର ମୟୂରଭଞ୍ଜର ରାଜସିଂହାସନାରୂଢ଼ ହୋଇଥିଲେ ।

ପ୍ରତାପଚନ୍ଦ୍ର ଜଣେ ଶିକ୍ଷିତ ବ୍ୟକ୍ତି ଥିଲେ ଓ ବିଜ୍ଞାନରେ ସ୍ନାତକ ଥିଲେ । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ରାଜତ୍ୱ କାଳରୁ ମୟୂରଭଞ୍ଜ ରାଜ୍ୟର ଶାସନକୁ ଜନମଙ୍ଗଳାଭିମୁଖୀ କରିବା ପାଇଁ ଯେଉଁ ପ୍ରଚେଷ୍ଟାର ଶୁଭାରମ୍ଭ କରାଯାଇଥିଲା ତାହା ଅକ୍ଷୁର୍ଣ୍ଣ ରଖିବାପାଇଁ ପ୍ରତାପଚନ୍ଦ୍ର ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲେ । ପୂର୍ଣ୍ଣଚନ୍ଦ୍ରଙ୍କ ଅମଳରେ ମ୍ୟାକ୍‌ଲିଓଡ୍ ସ୍ମିଥ୍ ନାମକ ଜଣେ ବ୍ରିଟିଶ ପ୍ରଶାସକ ଦେଓ୍ୱାନ ଭାବେ କାର୍ଯ୍ୟ କରୁଥିଲେ । ତାଙ୍କ କାର୍ଯ୍ୟକାଳ ଶେଷ ହୋଇଯିବା

ପରେ ମହାରାଜା ପାଟନା ହାଇକୋର୍ଟର ପ୍ରାକ୍ତନ ବିଚାରପତି ଡକ୍ଟର ପି.କେ.ସେନ୍‌ଙ୍କୁ ମୟୂରଭଞ୍ଜର ଦେଓ୍ୱାନ ଭବେ ନିଯୁକ୍ତ କରିଥିଲେ । ଡକ୍ଟର ସେନ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଏମ.ଏ. ଓ ଡକ୍ଟର ଅଫ ଲ ଉପାଧି ଲାଭ କରିବା ସହିତ ବାରିଷ୍ଟରି ମଧ ପାଶ୍ କରିଥିଲେ । ସେ ଭାରତବର୍ଷର ଜଣେ ବିଶିଷ୍ଟ ଆଇନଜ୍ଞ ଭାବେ ସୁପରିଚିତ ଥିଲେ । ସେ ମଧ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଦ୍ୱିତୀୟ ପତ୍ନୀ ସୁରୁଚି ଦେବୀଙ୍କ ସମ୍ପର୍କୀୟ ଭାଇ ଥିଲେ । ମୟୂରଭଞ୍ଜର ଶାସନ ବ୍ୟବସ୍ଥାକୁ ସୁବିନ୍ୟସ୍ତ କରିବା ଦିଗରେ ଡକ୍ଟର ପି.କେ.ସେନଙ୍କର ବିଶେଷ ଅବଦାନ ଥିଲା । ତାଙ୍କର କାର୍ଯ୍ୟକାଳ ସରିଯିବା ପରେ ଭାରତବର୍ଷର ପ୍ରଖ୍ୟାତ ଅର୍ଥନୀତିଜ୍ଞ ଓ ଅଭିଜ୍ଞ ପ୍ରଶାସକ ଶ୍ରୀଯୁକ୍ତ କ୍ଷିତୀଶ ଚନ୍ଦ୍ର ନିୟୋଗୀ ମହୋଦୟ ମୟୂରଭଞ୍ଜର ଦେଓ୍ୱାନ ହୋଇଥିଲେ । ସ୍ୱାଧୀନତା ପରବର୍ତ୍ତୀ ସମୟରେ ଶ୍ରୀଯୁକ୍ତ ନିୟୋଗୀ ନେହେରୁ ମନ୍ତ୍ରୀମଣ୍ଡଳରେ ଯୋଗଦେଇ ଭାରତର ବାଣିଜ୍ୟ ମନ୍ତ୍ରୀ ହୋଇଥିଲେ । କିନ୍ତୁ ପଣ୍ଡିତଜୀଙ୍କ ସହ ମତଭେଦ ହେବାରୁ ସେ ଡକ୍ଟର ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ସହ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇ ଦେଇଥିଲେ । ଶ୍ରୀଯୁକ୍ତ ନିୟୋଗୀ ତାଙ୍କର ପାଞ୍ଚବର୍ଷ କାର୍ଯ୍ୟକାଳ ଭିତରେ ମୟୂରଭଞ୍ଜର ଶାସନ ବ୍ୟବସ୍ଥାକୁ ବ୍ରିଟିଶ ଇଣ୍ଡିଆର ଶାସନ ବ୍ୟବସ୍ଥା ସମତୁଲ୍ୟ କରି ଦେଇଥିଲେ । ମୟୂରଭଞ୍ଜ ଦେଓ୍ୱାନ ହିସାବରେ ତାଙ୍କ କାର୍ଯ୍ୟକାଳ ସରିବା ପରେ ସେ ଅନ୍ୟ ଗୋଟିଏ ବଡ଼ ଦେଶୀୟ ରାଜ୍ୟର ଦେଓ୍ୱାନ ଭାବେ ଚାଲି ଯାଇଥିଲେ ଓ ମେଜର ବି.ପି.ପାଣ୍ଡେ ନାମକ ଅନ୍ୟ ଜଣେ ପ୍ରଶାସକ ମୟୂରଭଞ୍ଜର ଦେଓ୍ୱାନ ହୋଇଥିଲେ । କିନ୍ତୁ ଗଡ଼ଜାତ ମିଶ୍ରଣ ପର୍ଯ୍ୟନ୍ତ ଶ୍ରୀଯୁକ୍ତ ନିୟୋଗୀ ମହାରାଜାଙ୍କ ରାଜନୈତିକ ଉପଦେଷ୍ଟା ଭାବେ କାର୍ଯ୍ୟ କରିଥିଲେ ।

ମହାରାଜା ରାଜ୍ୟଶାସନ ବ୍ୟାପାରରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ସେ ପ୍ରତ୍ୟହ ସେକ୍ରେଟେରିଏଟକୁ ଆସି ରୁଲିଂ ଚିଫ୍ ହିସାବରେ ଆଦେଶ ପାଇଁ ଯେଉଁ ସବୁ ଫାଇଲ ତାଙ୍କ ପାଖକୁ ଦେଓ୍ୱାନ ପଠାଉଥିଲେ ତାହା ଫଇସଲା କରୁଥିଲେ । ପୂର୍ବେ ମହାରାଜା ଓ ଦେଓ୍ୱାନଙ୍କୁ ନେଇ ଗୋଟିଏ ଜୁଡ଼ିସିଏଲ କମିଟି ଥିଲା । ସେହି କମିଟି ଷ୍ଟେଟ ଜଜ୍‌ଙ୍କ ଆଦେଶ ବିରୁଦ୍ଧରେ ଅପିଲ୍ ଶୁଣୁଥିଲେ । ୧୯୩୩ ମସିହାରେ ମହାରାଜା ଗୋଟିଏ ହାଇକୋର୍ଟ ସ୍ଥାପନ କରି ସବୁ ଦେଓ୍ୱାନୀ ଓ ଫୌଜଦାରୀ ମକଦ୍ଦମାର ଅପିଲ ଶୁଣିବା କ୍ଷମତା ଉକ୍ତ ହାଇକୋର୍ଟକୁ ପ୍ରଦାନ କରିଥିଲେ । ଏହି ହାଇକୋର୍ଟରେ ଜଣେ

ଚିଫ୍ ଜଜ୍ ଓ ଡିଭିଜନ ପ୍ୟୁନି ଜଜ୍ ଥିଲେ । ସେକ୍ରେଟେରିଏଟ ଓ ହାଇକୋର୍ଟ କାର୍ଯ୍ୟ କରିବା ପାଇଁ ମହାରାଜା ଦୁଇଟି ଗମ୍ବୁଜ ଥିବା ସୁନ୍ଦର ସୌଧ ନିର୍ମାଣ କରିଥିଲେ । କଲିକତାର ମାର୍ଟିନ୍ ଏଣ୍ଡ ବାର୍ଣ୍ଣ ବୋଲି ଗୋଟିଏ ଅତି ବିଖ୍ୟାତ ସୌଧ ନିର୍ମାଣକାରୀ ସଂସ୍ଥା ଏହି ସୌଧ ଦୁଇଟି ନିର୍ମାଣ କରିଥିଲେ । ଏହି ସୌଧର ବହିଃପ୍ରାଙ୍ଗଣରେ ପ୍ରାକ୍ତନ ମହାରାଜା ଶ୍ରୀରାମଚନ୍ଦ୍ର ଓ ପୂର୍ଣ୍ଣଚନ୍ଦ୍ରଙ୍କର ପୂର୍ଣ୍ଣାୟବ ମର୍ମର ପ୍ରତିମୂର୍ତ୍ତି ସ୍ଥାପିତ ହୋଇଥିଲା । ଆଗରୁ କହିଛି ମୟୂରଭଞ୍ଜର ଶାସନ ବ୍ୟବସ୍ଥା ବ୍ରିଟିଶ ଇଣ୍ଡିଆର ଶାସନ ବ୍ୟବସ୍ଥା ସହ ସମକକ୍ଷ ଥିଲା । ସେଠାରେ ମୋଗଲବନ୍ଦୀ ଅଞ୍ଚଳରେ କାମକରୁଥିବା ସବୁ ବିଭାଗ ସ୍ଥାପିତ ହୋଇ କାମ କରୁଥିଲା । ମୟୂରଭଞ୍ଜ ଷ୍ଟେଟର ଶାସନ ବ୍ୟବସ୍ଥାରେ ମହାରାଜାଙ୍କ ତଳକୁ ଦେଓ୍ୱାନ ସର୍ବୋଚ୍ଚ ଶାସନ କର୍ତ୍ତା ଥିଲେ । ବିଚାର ବିଭାଗ ମୟୂରଭଞ୍ଜ ହାଇକୋର୍ଟର ନିୟନ୍ତ୍ରଣରେ କାର୍ଯ୍ୟ କରୁଥିଲା । ପୋଲିସ ବିଭାଗରେ ଜଣେ ଆଇ.ଜିଙ୍କ ଅଧୀନରେ ଜଣେ ଏସ୍.ପି., ଦୁଇଜଣ ଡି.ଏସ୍.ପି, ଛ ଜଣ ଇନ୍ସପେକ୍ଟର ଓ ବହୁ ସବ୍ ଇନ୍ସପେକ୍ଟର, ସହକାରୀ ସବଇନ୍ସପେକ୍ଟର, ହାବିଲଦାର, କନେଷ୍ଟବଳ ଥିଲେ । ପୋଲିସ ଲାଇନରେ ସ୍ୱତନ୍ତ୍ର ଆର୍ମଡ଼ ପୋଲିସ ରିଜର୍ଭ ଥିଲା । ଏହାର ମୁଖ୍ୟ ଥିଲେ ସୁବେଦାର ଆଖଣ୍ଡଳମଣି ଦାଶ । ସେ ଭାରତୀୟ ସେନାବାହିନୀର ଜଣେ ସେବାନିବୃତ୍ତ ନନ କମିଶନଡ଼ ଅଫିସର ଥିଲେ ଓ ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଇଉରୋପୀୟ ରଣକ୍ଷେତ୍ରରେ ବୀରତ୍ୱ ସହ ଯୁଦ୍ଧ କରି ପୁରସ୍କୃତ ହୋଇଥିଲେ । ବିଶାଳକାୟ ମଣିଷ ଥିଲେ ଆଖଣ୍ଡଳବାବୁ । ପୋଲିସ୍ ବାହିନୀକୁ କମାଣ୍ଡ କଲାବେଳେ ତାଙ୍କ ଜଳଦଗମ୍ଭୀର କୁହାଟରେ ପୋଲିସ ଲାଇନ ପଡ଼ିଆଟା ସରଗରମ ହୋଇଉଠେ । ତାଙ୍କ ଜ୍ୟେଷ୍ଠପୁତ୍ର ଅନଙ୍ଗ ଭୂଷଣ ଦାଶ ଓଡ଼ିଶା ସଶସ୍ତ୍ର ପୋଲିସ ବାହିନୀରେ ଦକ୍ଷତାର ସହିତ କମାଣ୍ଡେଣ୍ଟ ଭାବେ କାର୍ଯ୍ୟ କରି ଅବସର ନେଇଛନ୍ତି । ଅନ୍ୟତମ ପୁତ୍ର ଡାକ୍ତର ପନ୍ନଗ ଭୂଷଣ ଦାଶ ଜଣେ ଦକ୍ଷ ଶଲ୍ୟ ଚିକିତ୍ସକ ଭାବେ ସୁପରିଚିତ । ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ ରାମଚନ୍ଦ୍ର ଦାଶ ମିଶ୍ରଣ ପରେ ଓଡ଼ିଶା ପୋଲିସ ବାହିନୀର ସର୍ବୋଚ୍ଚ କର୍ତ୍ତା ଆଇ.ଜି ଭାବେ କାର୍ଯ୍ୟକରି ଅବସର ଗ୍ରହଣ କରିଥିଲେ । ସେ ଜଣେ ଅତି ଉଚ୍ଚ ପ୍ରଶିକ୍ଷିତ ପୋଲିସ ଅଧିକାରୀ ଥିଲେ । ମୟୂରଭଞ୍ଜ ପୋଲିସ ବାହିନୀରେ ଜଣେ ଏ.ଏସ.ପି ଭାବେ ଯୋଗଦେବା ପରେ, ମାଉଣ୍ଟ ଆବୁରେ ବ୍ରିଟିଶ ଇଣ୍ଡିଆର ନବନିଯୁକ୍ତ ଆଇ.ପି. ଅଫିସର ମାନଙ୍କ ସହିତ ପ୍ରଶିକ୍ଷିତ ହୋଇଥିଲେ । ପରେ ସେ ଲଣ୍ଡନ ଯାଇ

ଷ୍ଟଲ୍ୟାଣ୍ଡୟାର୍ଡ ପାଲିସ୍ ଟ୍ରେନିଂ ନେଇଥିଲେ । ସେ ଜଣେ ଦକ୍ଷ ଅଭିନେତା ଓ ସଂସ୍କୃତିସମ୍ପନ୍ନ ବ୍ୟକ୍ତିଥିଲେ । ଅନ୍ୟତ୍ର ତାଙ୍କ ବିଷୟରେ ଆଲୋଚନା କରିବି । ଅନ୍ୟତମ ଡି.ଏସ୍.ପି ଦେବେନ୍ଦ୍ର ନାଥ ପଟ୍ଟନାୟକ ଓଡ଼ିଶା ସରକାରଙ୍କ ଅଧିନରେ ଦୀର୍ଘଦିନ କାର୍ଯ୍ୟକରି ଡି.ଆଇ.ଜି ପାହ୍ୟାକୁ ପଦୋନ୍ନତି ପାଇଥିଲେ । ଦେବେନ୍ଦ୍ର ବାବୁ ଛାତ୍ର ଜୀବନରେ ଜଣେ ବିଖ୍ୟାତ ଆଥ୍ଲେଟ ଥିଲେ ।

ରାଜସ୍ୱ ପ୍ରଶାସନର ସର୍ବୋଚ୍ଚ କର୍ତ୍ତା ଥିଲେ ଚିଫ୍ ରେଭିନ୍ୟୁ ଅଫିସର । ସେ ସମୟର ଚିଫ୍ ରେଭିନ୍ୟୁ ଅଫିସର ଥିଲେ ବିଦ୍ୟାଧର ମହାପାତ୍ର । ସେ ଜଣେ ଡେପୁଟି ମାଜିଷ୍ଟ୍ରେଟ ଭାବେ କର୍ମଜୀବନ ଆରମ୍ଭ କରି ଷ୍ଟେଟଜଜ୍ ପଦବୀକୁ ଉନ୍ନୀତ ହୋଇଥିଲେ । ହାଇକୋର୍ଟ ସ୍ଥାପନ ହେବା ପରେ ସେ ଚିଫ୍ ରେଭିନ୍ୟୁ ଅଫିସର ଭାବେ କାର୍ଯ୍ୟ କରିଥିଲେ । ଜଣେ ଦକ୍ଷ ପ୍ରଶାସକ ଓ ସୁବିଚାରକ ଭାବେ ତାଙ୍କର ସୁଖ୍ୟାତି ଥିଲା । ବିଦ୍ୟାଧର ବାବୁ ଥିଲେ ମୟୂରଭଞ୍ଜ ଷ୍ଟେଟ୍‌ର ପ୍ରଥମ ଗ୍ରାଜୁଏଟ । ସେ ଷ୍ଟେଟ ଚାକିରିରୁ ଅବସର ନେବା ପରେ ରାଧାଗୋବିନ୍ଦ ଦାସ ଚିଫ୍ ରେଭିନ୍ୟୁ ଅଫିସର ହୋଇଥିଲେ । ମୟୂରଭଞ୍ଜ ମିଶ୍ରଣ ପରେ ସେ ଜଣେ ଆଇ.ଏ.ଏସ୍ ଅଫିସର ଭାବେ ପଦୋନ୍ନତି ପାଇ କଟକ ଜିଲ୍ଲା କଲେକ୍ଟର ଭାବେ କାର୍ଯ୍ୟକରି ଅବସର ଗ୍ରହଣ କରିଥିଲେ । ତାପରେ ସେ ସମବାୟ ଆନ୍ଦୋଳନରେ ନିଜକୁ ନିୟୋଜିତ କରିଥିଲେ । ସେ ହେଉଛନ୍ତି ବାରିପଦା ଅର୍ବାନ କୋଅପରେଟିଭ ବ୍ୟାଙ୍କର ପ୍ରତିଷ୍ଠାତା ସଭାପତି । ସେ ମଧ୍ୟ ଜଣେ ବିଦ୍ୱାନ ଓ ଦକ୍ଷ ଅଫିସର ଭାବେ ସୁପରିଚିତ ଥିଲେ । ମୟୂରଭଞ୍ଜ ଷ୍ଟେଟ୍ ସର୍ଭିସରେ ବହୁ ଉଚ୍ଚ ଶିକ୍ଷିତ ଓ ଯୋଗ୍ୟ ବ୍ୟକ୍ତିଥିଲେ । ସେମାନଙ୍କ ଭିତରୁ ଅଧିକାଂଶ ମୟୂରଭଞ୍ଜ ମିଶ୍ରଣ ପରେ ଓଡ଼ିଶା ସରକାରଙ୍କ ଅଧୀନରେ କାମ କରି ସୁନାମ ଅର୍ଜନ କରିଥିଲେ । ସେମାନଙ୍କ ଭିତରୁ ଜିଲ୍ଲା ଓ ସେସନଜଜ ଭାବେ ଭୋଳାନାଥ ପଣ୍ଡା, ମନମୋହନ ମହାପାତ୍ର, ଗୋପୀନାଥ ଧଳ, ପ୍ରଶାସନିକ ଅଫିସର ରାଧାନାଥ ମହାନ୍ତି ପ୍ରଫୁଲ୍ଲ କୁମାର ଦାସ, ପୂର୍ଣ୍ଣଚନ୍ଦ୍ର ମହାନ୍ତି, ଭାଗୀରଥି ପାଳ, ବିପିନ ଚନ୍ଦ୍ର ମିଶ୍ର, ପୂର୍ଣ୍ଣଚନ୍ଦ୍ର ସାହୁ, ନଗେନ୍ଦ୍ରନାଥ ସ୍ୱାଇଁ ଖଣି ଇଞ୍ଜିନିୟର ବଟହରି ଜେନା, ଇଞ୍ଜିନିୟର ଦୁର୍ଗାପ୍ରସାଦ ପାଢ଼ୀ ସମବାୟ ନିବନ୍ଧକ ଲମ୍ବୋଦର ଦଣ୍ଡପାଟ, ଫରେଷ୍ଟ ଅଫିସର ବ୍ରହ୍ମାନନ୍ଦ ଦାଶ, ଶରତ ଚନ୍ଦ୍ର ଦାସ, ଲାଲ ଲୋକନାଥ ସାହା ଦେଓ ପ୍ରଭୃତିଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

ମୁଁ ମହାରାଜାଙ୍କ କଥା କହୁଥିଲି । ମହାରାଜା ପ୍ରତାପଚନ୍ଦ୍ର ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତନରେ ବିଶ୍ୱାସୀ ଥିଲେ । ତାଙ୍କ ବେଶ-ପୋଷାକ ଚାଲି ଚଳନ ବା ଜୀବନଯାତ୍ରା ପ୍ରଣାଳୀରେ ବିଳାସିତାର ନାମଗନ୍ଧ ନଥିଲା । ତାଙ୍କ ପରିଧେୟ ଥିଲା ତନ୍ତବୁଣା ମରସିରାଇଜଡ଼ ମିହି ସୂତାର ଚଉଡ଼ାପାଡ଼ୀ ଧୋତି ଓ ଘିଅ ରଙ୍ଗର ଗେଞ୍ଜି କପଡ଼ାର ଟି ସାର୍ଟ । ପାଦରେ ବିଦ୍ୟାସାଗରୀ ସାଣ୍ଡେଲ ଓ ବେକରେ କୁଞ୍ଚ ହୋଇଥିବା ଉତ୍ତରୀ । କେବେ କେମିତି ଓଡ଼ିଶାର ଗଭର୍ଣ୍ଣର କିମ୍ବା ବେଙ୍ଗଲ ଷ୍ଟେଟସ୍‌ର ରେସିଡେଣ୍ଟ ପ୍ରଭୃତିଙ୍କ ବାରିପଦା ଆଗମନ ଉପଲକ୍ଷେ ସେ ଔପଚାରିକ ବିଲାତି ପୋଷାକ ପିନ୍ଧୁଥିଲେ । ବର୍ଷରେ ଥରେ ରାଜ୍ୟାଭିଷେକ ଦିନ ରାଜକୀୟ ପୋଷାକ ପିନ୍ଧି ପ୍ରଜାମାନଙ୍କୁ ଦର୍ଶନ ଦେଉଥିଲେ । ତାଙ୍କର ଖାଦ୍ୟାଭ୍ୟାସ ମଧ୍ୟ ଅନୁରୂପ ଭାବେ ସାଧା ସିଧା ଥିଲା । ରାଜବାଟୀରେ ପ୍ରତିଦିନ ମହାର୍ଘ୍ୟ ଓ ସ୍ୱାଦିଷ୍ଟ ଭୋଜ୍ୟବସ୍ତୁ ପ୍ରସ୍ତୁତ ହେଉଥିଲା । ରାଜବାଟୀରେ ମହାରାଣୀଙ୍କ ତତ୍ତ୍ୱାବଧାନରେ ଥିବା ରନ୍ଧନଶାଳା ବ୍ୟତୀତ ଗୋଟିଏ ବବୁର୍ଚ୍ଚିଖାନା ଥିଲା । ସେଠାରେ ଅଭିଜ୍ଞ ଖାନସମାମାନେ ମୋଗଲାଇ ଖାନା ଓ କନଟିନେଣ୍ଟାଲ ଡିସ୍‌ ରନ୍ଧନ କରୁଥିଲେ । କିନ୍ତୁ ମହାରାଜାଙ୍କ ପାଇଁ ସ୍ୱତନ୍ତ୍ରଭାବେ ପ୍ରସ୍ତୁତ ହେଉଥିଲା ମୋଟା ଉସୁନା ଚାଉଳ ଭାତ, ଡାଲି, ଘାଣ୍ଟ ତରକାରୀ ଓ ଶାଗ ଖରଡ଼ା । କେହି ଏ ସମ୍ପର୍କରେ କିଛି ମନ୍ତବ୍ୟ କଲେ ମହାରାଜା କହୁଥିଲେ, ମୁଁ ଦରିଦ୍ର ଆଦିବାସୀମାନଙ୍କ ରାଜା । ମୋ ପ୍ରଜାମାନେ ଦାରିଦ୍ର୍ୟର ସୀମାରେଖା ତଳେ ରହୁଥିବାବେଳେ କୌଣସି ପ୍ରକାର ବିଳାସିତା ମୋ ପକ୍ଷରେ ଅଶୋଭନୀୟ ।

ମହାରାଜା ବିଦ୍ୱାନ ବ୍ୟକ୍ତିଥିଲେ । ସେ ବିଜ୍ଞାନ ଛାତ୍ର ଥିଲେ ସତ କିନ୍ତୁ ବହୁ ବିଷୟରେ ସେ ପଢ଼ାଶୁଣା କରୁଥିଲେ । ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ସେ ନିଜ ଲାଇବ୍ରେରିରେ ବସି ପଢ଼ା ପଢ଼ି କରୁଥିଲେ । ତାଙ୍କର ନୃତ୍ୟ ସଙ୍ଗୀତ ଓ ଚିତ୍ରକଳାରେ ମଧ୍ୟ ଅପରିସୀମ ଆଗ୍ରହଥିଲା । କଲିକତାର ଜଣେ ଦକ୍ଷ ଚିତ୍ରଶିଳ୍ପୀଙ୍କୁ ପୂର୍ବତନ ମହାରାଜାମାନଙ୍କର ବଡ଼ ବଡ଼ ତୈଳଚିତ୍ରପଟ ଅଙ୍କନ କରିବା ପାଇଁ ନିଯୁକ୍ତ କରାଯାଇଥିଲା । ସେହି ଶିଳ୍ପୀଜଣକ ରାଜବାଟୀରେ ରହୁଥିଲେ ଓ ମହାରାଜାଙ୍କୁ ଚିତ୍ରାଙ୍କନରେ ପ୍ରଶିକ୍ଷଣ ଦେଉଥିଲେ । ରାଗ ସଙ୍ଗୀତ ସମ୍ପର୍କରେ ସେ ପ୍ରାୟ ଦରବାରର ଓସ୍ତାଦ ସୁଧୀର ଚନ୍ଦ୍ର ରାୟଙ୍କ ସହିତ ଆଲୋଚନା କରୁଥିଲେ । କୌଣସି ବିଷୟରେ ସନ୍ଦେହ ହେଲେ ବାହାରର ବଡ଼ ବଡ଼ ସଙ୍ଗୀତ ଶିଳ୍ପୀମାନଙ୍କୁ ଆମନ୍ତ୍ରିତ କରି ସେମାନଙ୍କ ସହ

ଆଲୋଚନା କରି ନିଜର ସନ୍ଦେହମୋଚନ କରୁଥିଲେ । ମହାରାଜା ଇଞ୍ଜିନିୟରିଂ ବିଦ୍ୟାରେ ବିଶେଷ ରୁଚି ରଖୁଥିଲେ । ସେ ସମ୍ବନ୍ଧରେ ସେ ପ୍ରଚୁର ପଢ଼ାଶୁଣା କରିଥିଲେ । ଷ୍ଟେଟର ଚିଫ୍‌ଇଞ୍ଜିନିୟର କିକିରି ସାହେବ ଚାକିରିରୁ ଅବ୍ୟାହତି ନେଇ ଚାଲିଯିବା ପରେ ମହାରାଜା ଅନ୍ୟଜଣେ ଚିଫ୍ ଇଞ୍ଜିନିୟର ନିଯୁକ୍ତ ନକରି ନିଜେ ସେ ଦାୟିତ୍ୱ ତୁଲାଇ ଥିଲେ । ଖେଳ କସରତରେ ମଧ ମହାରାଜାଙ୍କର ଅନୁରୂପ ଆଗ୍ରହ ଥିଲା । ସେ ପ୍ରତ୍ୟହ ତାଙ୍କର କେତେଜଣ ଅନୁଗତ ପାରିଷଦଙ୍କ ସହିତ ଟେନିସ୍ କିମ୍ବା ଭଲିବଲ ଖେଳୁଥିଲେ । ମହାରାଜା ଖେଳିବା ପାଇଁ ରାଜବାଟି ବହିଃପ୍ରାଙ୍ଗଣରେ ଟେନିସ୍, ଭଲିବଲ ଓ ବ୍ୟାଡ଼ମିଣ୍ଟନ କୋର୍ଟ ଥିଲା । ବଣ୍ୟଜନ୍ତୁ ଶିକାର କରିବା ପାଇଁ ସେ ବିଶେଷ ଆଗ୍ରହୀ ନଥିଲେ । କିନ୍ତୁ ବନଶୀ ପକାଇ ମାଛ ଧରିବା ସଉକ ତାଙ୍କର ଥିଲା । ମହାରାଜା ଫୁଟବଲ ପ୍ରେମୀଥିଲେ । ତାଙ୍କ ଆଗ୍ରହରୁ ବାରିପଦା ଫୁଟବଲ ଖେଳର ଗୋଟିଏ ପ୍ରସିଦ୍ଧ କେନ୍ଦ୍ର ହୋଇ ପାରିଥିଲା । ପ୍ରତିବର୍ଷ ବର୍ଷାଋତୁରେ ବାରିପଦାରେ ଅନୁଷ୍ଠିତ ହେଉଥିଲା ଦୁଇଟି ଫୁଟବଲ ଟୁର୍ଣ୍ଣାମେଣ୍ଟ । ସ୍କୁଲ ପିଲାମାନଙ୍କ ପାଇଁ ପୂର୍ଣ୍ଣଚନ୍ଦ୍ର ମେମୋରିଆଲ ଚ୍ୟାଲେଞ୍ଜ ସିଲଡ୍ ପାଇଁ ଯେଉଁ ପ୍ରତିଯୋଗିତା ହେଉଥିଲା, ସେଥିରେ ଓଡ଼ିଶାର ବିଭିନ୍ନ ସ୍କୁଲର ଫୁଟବଲ ଦଳ ଯୋଗ ଦେଉଥିଲେ । ସେଗୁଡ଼ିକ ଭିତରେ ମୁଖ୍ୟଦଳ ଥିଲେ କଟକର ମୁସ୍‌ଲିମ ସେମିନାରି, ନୟାଗଡ଼ ହାଇସ୍କୁଲ, ବାଲେଶ୍ୱର ଜିଲ୍ଲା ସ୍କୁଲ, ପୁରୀ ଜିଲ୍ଲା ସ୍କୁଲ ପ୍ରଭୃତି । ମୁସ୍‌ଲିମ ସେମିନାରି ସ୍କୁଲ ଦଳର ପ୍ରଧାନ ଆକର୍ଷଣ ଥିଲେ ସେଣ୍ଟର ଫରଓ୍ୱାର୍ଡ଼ ବଚନ । ବଚନ ସାହେବ ପରବର୍ତ୍ତୀ ସମୟରେ କଲିକତାର ମହମଡ଼ାନ ସ୍ପୋର୍ଟିଂ କ୍ଲବର ସେଣ୍ଟର ଫରଓ୍ୱାର୍ଡ଼ ଭାବେ ଖେଳି ପ୍ରଭୂତ ଖ୍ୟାତି ଅର୍ଜନ କରିଥିଲେ । ସେ ମଧ ଓଡ଼ିଶା ରାଜ୍ୟ ଫୁଟବଲ ଦଳର ଅଧିନାୟକ ଥିଲେ ଓ ଭାରତୀୟ ଦଳରେ ପ୍ରତିନିଧିତ୍ୱ କରିବା ପାଇଁ ମନୋନୀତ ହୋଇଥିଲେ । ଏହି ପ୍ରତିଭାବାନ ଫୁଟବଲ ଖେଳାଳୀଙ୍କୁ ଓଡ଼ିଶା ସରକାର ସିଧାସଳଖ ଡି.ଏସ୍.ପି ଭାବେ ନିଯୁକ୍ତି ପ୍ରଦାନ କରି ସମ୍ମାନିତ କରିଥିଲେ । ଦୁଃଖ ବିଷୟ ବଚନ ସାହେବଙ୍କର ଅକାଳ ବିୟୋଗ ହୋଇ ଓଡ଼ିଶାର ଖେଳଜଗତରୁ ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ ଚିରଦିନ ପାଇଁ ଅଦୃଶ୍ୟ ହୋଇଯାଇଥିଲା । ସେ ସମୟରେ ସ୍କୁଲ ଦଳ ଗୁଡ଼ିକରେ ଖେଳୁଥିବା ଅନେକ ପ୍ରତିଭାବାନ ଖେଳାଳୀ ପରବର୍ତ୍ତୀ ଜୀବନରେ ବିଖ୍ୟାତ ହୋଇଥିଲେ । ସେମାନଙ୍କ ଭିତରୁ ବାରିପଦା ସ୍କୁଲ ଦଳର ଆଦିକନ୍ଦ ଦ୍ୱାରି ଜଗନ୍ନାଥ ମିସ୍ତ୍ରୀ

ଗୋଲ ରକ୍ଷକ ପଦ୍ମଲୋଚନ ପତି, ଗଣେଶ ବୋଷ, ଗଣେଶ ମହାନ୍ତି ନୟାଗଡ଼ ସ୍କୁଲର ଗୋଲକିପର ରଜନୀ ମୁସଲିମ ସେମିନାରୀର ବ୍ୟାକ ଏନାଏତଉଲ୍ଲା ପ୍ରଭୃତିଙ୍କ ନାମ ମନେ ପଡୁଛି । ଏହାଛଡ଼ା ଶ୍ରୀରାମଚନ୍ଦ୍ର ମେମୋରିଆଲ ଚ୍ୟାଲେଞ୍ଜ ସିଲ୍ଡ ପାଇଁ ଗୋଟିଏ ସର୍ବଭାରତୀୟ ଫୁଟବଲ ଟୁର୍ଣ୍ଣାମେଣ୍ଟ ଅନୁଷ୍ଠିତ ହେଉଥିଲା । ମାସାଧିକ କାଳ ଚାଲୁଥିଲା ଏହି ଫୁଟବଲ ଖେଳ ପ୍ରତିଯୋଗିତା । ସେଥିରେ ଟାଟା ନଗର, ଖଡ଼ଗପୁର, କଲିକତା, ଉଲବେରିଆ, କଟକ, ପୁରୀ, ଖୋର୍ଦ୍ଧାରୋଡ଼, ବ୍ରହ୍ମପୁର, ବିଶାଖାପାଟଣା ପ୍ରଭୃତି ଦୂର ଦୂରାନ୍ତରୁ ଆସୁଥିବା ଫୁଟବଲ ଦଳ ଭାଗନେଉଥିଲେ । ସେହି ଅବସରରେ ବାରିପଦା ସହର ଉତ୍ସବ ମୁଖର ହୋଇଉଠୁଥିଲା ।

ବାରିପଦା ସହରରେ ଘର ପୋଡ଼ିହେଲେ ନିଆଁ ଲିଭାଇବା ପାଇଁ ମହାରାଜା ସର୍ବ ପ୍ରଥମେ ପହଞ୍ଚି ଯାଉଥିଲେ । ସେତେବେଳେ ବାରିପଦାରେ ଫାୟାର ବିଗ୍ରେଡ଼ ନଥିଲା । ନିଆଁ ଲିଭାଇବା ଦାୟିତ୍ୱ ରିଜର୍ଭ ପୋଲିସ୍ ବାହିନୀ ଓ ବୟେଜ ସ୍କାଉଟ୍ ମାନଙ୍କର ଥିଲା । କେଉଁଠାରେ ଘରପୋଡ଼ି ହେଉଥିବାର ଖବର ମିଳିବା ମାତ୍ରେ ରିଜର୍ଭ ପୋଲିସ ଲାଇନ ଓ ବାରିପଦା ହାଇସ୍କୁଲରେ ବିଗୁଲ୍ ବାଜି ଉଠୁଥିଲା । ଫାୟାର ବକେଟ ଧରି ପୋଲିସ୍ ବାହିନୀ ଓ ସ୍କାଉଟ ପିଲାମାନେ ନିଆଁ ଲାଗିଥିବା ସ୍ଥାନକୁ ଧାଇଁ ଯାଉଥିଲେ । ପୋଲିସ ଲାଇନରେ କେତେଖଣ୍ଡ ଡବଲ ବାଇକ ଥିଲା । ସେହି ଯୋଡ଼ା ସାଇକେଲରେ ଦୁଇଜଣ କନେଷ୍ଟବଳ ବସି ଏକା ସାଙ୍ଗରେ ପ୍ୟାଡ଼େଲ ମାରି ଖୁବ୍ ଜୋର୍‌ରେ ଯାଇ ପାରୁଥିଲେ । ନିଆଁ ଲିଭାଇବା ପାଇଁ ଗଲାବେଳେ ପୋଲିସ୍ କନେଷ୍ଟବଲ ମାନେ ସେହି ସାଇକେଲ ବ୍ୟବହାର କରୁଥିଲେ । ଘରପୋଡ଼ି ଜାଗାରେ ମହାରାଜା ନିଜେ ଉପସ୍ଥିତ ରହି ନିଆଁ ଲିଭା କାର୍ଯ୍ୟ ନିୟନ୍ତ୍ରଣ କରୁଥିଲେ । ବକେଟ ଲାଇନ କରି ନିକଟସ୍ଥ କୂଅ ବା ପୋଖରୀରୁ ପାଣି ଅଣାଯାଇ ନିଆଁଲିଭା ଯାଉଥିଲା । ପଡ଼ୋଶୀ ନୀଳଗିରି ରାଜ୍ୟର ଜଣେ ପିଲା ଆମ ସହିତ ସ୍କୁଲରେ ପଢୁଥିଲା । ସେ ଥରେ ମୋତେ କହିଥିଲା ଛୋଟିଆ ନୀଳଗିରି ରାଜ୍ୟର ରାଜା ପ୍ରଜାଙ୍କ ସୁଖ ଦୁଃଖ ବିଷୟରେ ଟିକିଏ ବି ସଚେତନ ନଥିଲେ । କିନ୍ତୁ ଆଶ୍ଚର୍ଯ୍ୟ କଥା ଏତେବଡ଼ ଷ୍ଟେଟର ମହାରାଜା ହୋଇ ମଧ ମୟୂରଭଞ୍ଜ ମହାରାଜା ପ୍ରଜାଙ୍କ ଦୁଃଖ ସମୟରେ ନିଜେ ଆସି ଠିଆ ହେଉଛନ୍ତି । ଥରେ ନୀଳଗିରି ରାଜକନ୍ୟାଙ୍କ ବିବାହରେ ଯୋଗ ଦେବା ପାଇଁ ମୟୂରଭଞ୍ଜ ମହାରାଜା ନୀଳଗିରି ଯାଇଥିଲେ । ବହୁତ ବାଣ ରୋଷଣୀ

ଛାଳି ବର ଶୋଭାଯାତ୍ରା ଆସୁଥିବାବେଳେ ଗୋଟିଏ ହାଉଇ ବାଣ ଚାଳଘର ଉପରେ ଖସିପଡ଼ି ଗୋଟିଏ ସାହିରେ ନିଆଁ ଲାଗିଯାଇଥିଲା । ରଜାଘର ବାହାଘରରେ ସମସ୍ତେ ବ୍ୟସ୍ତ ହୋଇ ସେହି ଅଗ୍ନିକାଣ୍ଡ କଥା ଭୁଲି ଯାଇଥିଲେ । କିନ୍ତୁ ମୟୂରଭଞ୍ଜ ମହାରାଜା ତୁରନ୍ତ ସେଠାକୁ ଯାଇ ସାହି ଲୋକମାନଙ୍କୁ ସଙ୍ଗଠିତ କରି ନିଆଁ ଲିଭାଇଥିଲେ । ଯେଉଁ ଲୋକମାନଙ୍କ ଘର ପୋଡ଼ି ଯାଇଥିଲା ସେମାନଙ୍କୁ ରିଲିଫ୍ ଆକାରରେ କିଛି ଆର୍ଥିକ ସାହାଯ୍ୟ ଦେଇଥିଲେ ଓ କୌଣସି ରୟାଲଟି ନଦେଇ ନିକଟବର୍ତ୍ତୀ ମୟୂରଭଞ୍ଜ ଷ୍ଟେଟ ଜଙ୍ଗଲରୁ ଘର ତିଆରି ପାଇଁ ଆବଶ୍ୟକ ହେଉଥିବା କାଠ ବାଉଁଶ ଇତ୍ୟାଦି ଆଣିବା ପାଇଁ ଆଦେଶ ଦେଇଥିଲେ । ନୀଳଗିରି ରାଜ୍ୟରେ ଏସବୁ ପାଇଁ କୌଣସି ବ୍ୟବସ୍ଥା ନଥିଲା । ମୟୂରଭଞ୍ଜ ମହାରାଜାଙ୍କର ଗରିବଲୋକ ମାନଙ୍କ ବିପଦବେଳେ ସାହାଯ୍ୟ କରିବା ଭଳି ମହାନୁଭବତା ଦେଖି ନୀଳଗିରି ଲୋକମାନେ ଅଭିଭୂତ ହୋଇ ପଡ଼ିଥିଲେ ।

ମହାରାଜାଙ୍କର ନିକଟ ଆତ୍ମୀୟ, ସନ୍ତାନ ସନ୍ତତି ଓ ଭାଇ ବିରାଦର ମାନଙ୍କ ବିଷୟରେ ଏଠାରେ ସାମାନ୍ୟ ସୂଚନା ଦେବା ଆବଶ୍ୟକ ମନେ କରୁଛି । ରାଜ ପରିବାରରେ ଦୁଇଜଣ ବିଧବା ମହାରାଣୀ ଥିଲେ । ସେମାନଙ୍କୁ 'ଡାଉଜାର' ମହାରାଣୀ କୁହାଯାଉଥିଲା । ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ବିଧବା ଦ୍ୱିତୀୟା ପତ୍ନୀଙ୍କ ନାମ ଥିଲା ଡାଉଜାର ମହାରାଣୀ ସୁରୁଚି ଦେବୀ । ସେ ଅଧିକାଂଶ ସମୟ କଲିକତାରେ ରହୁଥିଲେ । ବାରିପଦା ଆସିଲେ ତାଙ୍କ ନିବାସ ଥିଲା ବେଲଗଡ଼ିଆ ପ୍ୟାଲେସ । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ପ୍ରଥମା ପତ୍ନୀ ମହାରାଣୀ ଲକ୍ଷ୍ମୀକୁମାରୀଙ୍କ ଅକାଳ ବିୟୋଗ ପରେ, ସେ ନବବିଧାନ ବ୍ରାହ୍ମ ସମାଜର ପ୍ରତିଷ୍ଠାତା ଆଚାର୍ଯ୍ୟ କେଶବ ଚନ୍ଦ୍ର ସେନଙ୍କ କନ୍ୟା ସୁରୁଚି ଦେବୀଙ୍କୁ ବିବାହ କରିଥିଲେ । କିନ୍ତୁ ସେ ବ୍ରାହ୍ମଧର୍ମାବଲମ୍ବୀ ହୋଇଥିବାରୁ ରାଜବାଟୀରେ ରହିବା ପାଇଁ ତାଙ୍କୁ ଅନୁମତି ମିଳି ନଥିଲା । ମହାରାଜା ଶ୍ରୀରାମଚନ୍ଦ୍ର ତାଙ୍କପାଇଁ ବେଲଗଡ଼ିଆ କୋଠି ନିର୍ମାଣ କରି ପତ୍ନୀଙ୍କ ସହ ସେଠାରେ ରହିଥିଲେ । ତାଙ୍କର ନାବାଳକ ଦୁଇପୁତ୍ର ପୂର୍ଣ୍ଣଚନ୍ଦ୍ର ଓ ପ୍ରତାପଚନ୍ଦ୍ର ସେମାନଙ୍କ ପିତୃବ୍ୟ ରାଉତରାୟ ସାହେବଙ୍କ ସହିତ ରାଜବାଟିରେ ରହି ପ୍ରତିପାଳିତ ହେବାକୁ ଲାଗିଲେ । ପ୍ରତିଦିନ ସନ୍ଧ୍ୟାବେଳେ ରାଉତରାୟ ସାହେବ ଦୁଇ ରାଜକୁମାରଙ୍କୁ ମହାରାଜାଙ୍କ ସହ ଭେଟ କରାଇବା ପାଇଁ ବେଲଗଡ଼ିଆ କୋଠିକୁ ନେଇ ଯାଉଥିଲେ । ସେମାନେ ଘଣ୍ଟାଏ ଦୁଇଘଣ୍ଟା ପିତାଙ୍କ ସହ କଟାଇବା ପରେ

ପୁଣି ରାଭତରାୟ ସାହେବଙ୍କ ସହିତ ଫିଟନରେ ବସି ରାଜବାଟି ଫେରି ଆସୁଥିଲେ । ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ଦ୍ୱିତୀୟା ପତ୍ନୀଙ୍କ ଗର୍ଭରୁ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଜାତ ହୋଇଥିଲା । ତାଙ୍କ ପୁତ୍ର ଧ୍ରୁବେନ୍ଦ୍ରଙ୍କ ଅକାଳ ବିୟୋଗ ହୋଇଥିଲା । କନ୍ୟା ମଧ୍ୟପ୍ରଦେଶର ସୁରୁଗୁଡ଼ା ରାଜାଙ୍କୁ ବିବାହ କରିଥିଲେ ।

ଅନ୍ୟଜଣେ ଡାଭଜାର ମହାରାଣୀ ଥିଲେ ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କ ବିଧବା ପତ୍ନୀ ତଖତକୁମାରୀ ଦେବୀ । ତାଙ୍କୁ ବଡ଼ ମହାରାଣୀ ବୋଲି ସମସ୍ତେ କହୁଥିଲେ । ସେ ଥିଲେ ଗୁଜରାଟ କଚ୍ଛ ଅଞ୍ଚଳର ଗୋଟିଏ ବଡ଼ ଦେଶୀୟ ରାଜ୍ୟ ଓ୍ୱାଙ୍କନୀରର ରାଜକୁମାରୀ । ଅଳ୍ପ ବୟସରେ ଜଣେ ତରୁଣ ରୂପବାନ ମହାରାଜାଙ୍କୁ ବିବାହ କରିଥିବା ଏହି ରାଜକନ୍ୟା ଚିରଦୁଃଖିନୀ ଥିଲେ । ବିବାହର ମାତ୍ର ଆଠବର୍ଷ ପରେ ସେ ବିଧବା ହୋଇଥିଲେ । ବାକି ଜୀବନ ଏହି ନିସନ୍ତାନ ମହାରାଣୀ ଦୁଃସହ ନିସଙ୍ଗତା ଭିତରେ କଟାଇ ଦେଇଥିଲେ । ବାରିପଦା ଉପକଣ୍ଠରେ ତଖତପୁର ଠାରେ ଗୋଟିଏ ଉଦ୍ୟାନ ବାଟିକାରେ ଅବସ୍ଥିତ ମନ୍ଦିରରେ ପୂଜାର୍ଚ୍ଚନା କରି ସମୟ କଟାଇ ଦେଉଥିଲେ । ସନ୍ଧ୍ୟାବେଳ ତାଙ୍କର କଟୁଥିଲା ବାରିପଦାରେ ସେ ସ୍ୱାମୀଙ୍କର ଯେଉଁ ସ୍ମୃତି ମନ୍ଦିର ନିର୍ମାଣ କରିଥିଲେ ସେଠାରେ । ବଡ଼ ମହାରାଣୀ ତାଙ୍କ ସ୍ୱାମୀଙ୍କ ଭଳି ଶିକ୍ଷାପ୍ରେମୀ ଥିଲେ । ସେ ତଖତପୁର ଠାରେ ନିଜ ବ୍ୟୟରେ ଗୋଟେଏ ମାଇନର ସ୍କୁଲ ପ୍ରତିଷ୍ଠା କରିଥିଲେ । ସେଠାରେ ଆଖପାଖ ଗ୍ରାମର ପିଲାମାନେ ପାଠ ପଢୁଥିଲେ । ବାରିପଦା ବାଳିକା ସ୍କୁଲର ସର୍ବଶ୍ରେଷ୍ଠ ଛାତ୍ରୀ ପାଇଁ ଗୋଟିଏ ସ୍ୱର୍ଣ୍ଣପଦକ ଦେବା ପାଇଁ ସେ ଅର୍ଥଦାନ କରିଥିଲେ । ପ୍ରତିବର୍ଷ ମାଇନର ପରୀକ୍ଷାରେ ସର୍ବଶ୍ରେଷ୍ଠ କୃତୀ ଛାତ୍ରୀକୁ ଗିନି ସୁନାର ଗୋଟିଏ ପଦକ ପ୍ରଦାନ କରାଯାଉଥିଲା । ବାରିପଦାଠାରେ ଯେତେବେଳେ କଲେଜ ସ୍ଥାପନ କରିବା ପାଇଁ ଲୋକପ୍ରିୟ ମନ୍ତ୍ରୀମଣ୍ଡଳ ନିଷ୍ପତ୍ତି ନେଲେ, ମହାରାଣୀ, କଲେଜର ସ୍ଥାୟୀ ଗୃହ ନିର୍ମାଣ କରିବା ପାଇଁ ତାଙ୍କର ତଖତପୁରସ୍ଥିତ ବିସ୍ତୀର୍ଣ୍ଣ ଉଦ୍ୟାନ ବାଟିକାଟିକୁ ଦାନ କରିଦେଇଥିଲେ । ତେଣୁ ପୂର୍ବତନ ମହାରାଜାଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ବାରିପଦା କଲେଜକୁ ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ ଭାବେ ନାମକରଣ କରାଯାଇଥିଲା ।

ମୟୂରଭଞ୍ଜ ମହାରାଣୀଙ୍କ ନାମ ଥିଲା ପ୍ରେମକୁମାରୀ । ସେ ପିତୃକୁଳ ସମ୍ପର୍କରେ ବଡ଼ ମହାରାଣୀଙ୍କ ଆତ୍ମୀୟା ଥିଲେ ଓ ଅତ୍ୟନ୍ତ ରୂପବତୀ ଥିଲେ ।

ରାଜ ପରିବାରର ଅନ୍ତଃପୁରୀକା ମାନେ କଠୋର ଭାବେ ପର୍ଦାନସୀନ ଥିଲେ । ତେଣୁ ସାଧାରଣ ଲୋକେ ସେମାନଙ୍କ ଦର୍ଶନ ଲାଭ କରିବାର କୌଣସି ସମ୍ଭାବନା ନଥିଲା । ମହାରାଣୀ ଦେବ ଦେବୀ ମନ୍ଦିର ଦର୍ଶନ କରିବାକୁ ଗଲେ ମନ୍ଦିର ଭିତରୁ ସବୁଲୋକଙ୍କୁ ବାହାର କରି ଦିଆଯାଉଥିଲା । ମହାରାଣୀ କାରରୁ ଓହ୍ଲାଇ ଜଣେ ଦାସୀ ଧରିଥିବା ଗୋଟିଏ ଘଟାଟୋପ ଛତା ଭିତରେ ପଶି ଯାଉଥିଲେ ଓ ପୁରୁଷ ଶୂନ୍ୟ ମନ୍ଦିର ବେଢ଼ା ଭିତରେ ଛତାରୁ ବାହାରୁଥିଲେ । ମହାରାଜାଙ୍କର ଦୁଇପୁତ୍ର ଓ ଏକମାତ୍ର କନ୍ୟା ଥିଲେ । ରାଜ ପରିବାର ପ୍ରଥାନୁଯାୟୀ ସେମାନଙ୍କୁ ଯଥାକ୍ରମେ ଟିକାଏତ, ଛୋଟରାୟ ଓ ଜେମା ବୋଲି ସମ୍ବୋଧନ କରାଯାଉଥିଲା । ଟିକାୟତ ଛୋଟରାୟଙ୍କ ନାମ ଥିଲା ଯଥାକ୍ରମେ ପ୍ରଦୀପ ଚନ୍ଦ୍ର ଓ ସ୍ୱରୂପ ଚନ୍ଦ୍ର । ଜେମାଙ୍କ ନାମଥିଲା ପ୍ରତିଭା ମଞ୍ଜରୀ । ଲଣ୍ଡନର ପବ୍ଲିକ ସ୍କୁଲରେ ରାଜକୁମାର ମାନଙ୍କ ବାଲ୍ୟଶିକ୍ଷା ହୋଇଥିଲା । ପରେ ସେମାନେ ଆଜମୀର ସ୍ଥିତ ରାଜକୁମାରମାନଙ୍କ ପାଇଁ ଉଦ୍ଦିଷ୍ଟ ମେୟୋ କଲେଜରୁ ସିନିୟର କେମ୍ବ୍ରିଜ ପାଶ୍ କରିଥିଲେ । ଦୁଇଭାଇଙ୍କ ଭିତରୁ ଛୋଟରାୟ ଥିଲେ ମେଧାବୀ ଓ ସେ ଆମେରିକାରୁ ଇଲେକ୍‌ଟ୍ରିକାଲ ଇଞ୍ଜିନିୟରିଂ ପାଶ୍ କରିଥିଲେ ଓ ସେଠାରେ ବିବାହ କରିଥିଲେ । ପରେ ପତ୍ନୀଙ୍କ ସହ ବିବାହ ବିଚ୍ଛେଦ ହୋଇଯିବାରୁ ଭାରତବର୍ଷକୁ ଫେରିଆସିଥିଲେ । ଦୁଃଖର କଥା ଅଳ୍ପ ବୟସରେ ଛୋଟରାୟଙ୍କର ଅକାଳ ବିୟୋଗ ହୋଇଯାଇଛି । ତାଙ୍କ ପିତାଙ୍କ ଅନ୍ତେ ଟିକାଏତଙ୍କୁ ମହାରାଜା ବୋଲି ସମ୍ବୋଧନ କରାଯାଉଛି । ସେ ନେପାଳର ଜଣୈକା ରାଜକନ୍ୟାଙ୍କୁ ବିବାହ କରିଛନ୍ତି । ବହୁଦିନ ହେବ ରାଜପଦ ବିଲୋପ ହୋଇଯାଇଚି । କିନ୍ତୁ ତାର ସ୍ମୃତି ଟିକକ ଏବେ ବି ରହିଚି । ତାହା ମଧ୍ୟ ଧୀରେ ଧୀରେ ଜନମାନସରୁ ଫିକା ପଡ଼ି ଆସିଲାଣି । ଅଳ୍ପଦିନ ପରେ ଦିନେ ନିଜ ରାଜ୍ୟର ଦଣ୍ଡମୁଣ୍ଡର କର୍ତ୍ତା ଭାବେ ଓ ଈଶ୍ୱରଙ୍କ ପ୍ରତିଭୂ ଚଳନ୍ତି ବିଷ୍ଣୁ ରୂପେ ପୂଜିତ ଏଇ ରାଜା ମହାରାଜାମାନଙ୍କ କାହାଣୀ ଇତିହାସ ପୃଷ୍ଠାରେ ଆବଦ୍ଧ ହୋଇ ରହିଯିବ ।

ମହାରାଜାଙ୍କ ପିତୃବ୍ୟ, ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ କନିଷ୍ଠ ଭ୍ରାତା ରାଉତରାୟ ସାହେବ ଶ୍ରୀଦାମଚନ୍ଦ୍ର ଭଞ୍ଜ ଦେଓ ଦୀର୍ଘଦିନ ପର୍ଯ୍ୟନ୍ତ ଜୀବିତ ଥିଲେ । ଶ୍ରୀରାମଚନ୍ଦ୍ର ବ୍ରାହ୍ମଣକନ୍ୟା ବିବାହ କରିବା ପରେ ରାଜବାଟୀରେ ନ ରହି ବେଲଗାଡ଼ିଆ ପ୍ୟାଲେସରେ ରହୁଥିଲେ । ରାଉତରାୟ ସାହେବ ମାତୃହୀନ ପୂର୍ଣ୍ଣଚନ୍ଦ୍ର ଓ ପ୍ରତାପଚନ୍ଦ୍ରଙ୍କୁ ପ୍ରତିପାଳନ କରିଥିଲେ । ଉଭୟ ପୂର୍ଣ୍ଣଚନ୍ଦ୍ର ଓ

ପ୍ରତାପଚନ୍ଦ୍ର ତାଙ୍କୁ ଯୁଗପତ ଭୟ ଓ ଭକ୍ତି କରୁଥିଲେ । ରାଉତରାୟ ସାହେବ ଜଣେ ଧନୀ ମହାଜନ ଥିଲେ ଓ ବାରିପଦା ଓ ବାଲେଶ୍ୱରର ବଡ଼ ବଡ଼ ବ୍ୟବସାୟୀମାନଙ୍କୁ ଟଙ୍କା କରଜଦେଉଥିଲେ । ତାଙ୍କର ଏକମାତ୍ର ପୁତ୍ର ଲାଲ ସାହେବ ପ୍ରଫୁଲ୍ଲ ଚନ୍ଦ୍ର ବସ୍ତର ରାଜ୍ୟର ଗାଦିନସୀନ ମହାରାଣୀଙ୍କୁ ବିବାହ କରି ବସ୍ତର ଚାଲି ଯାଇଥିଲେ । ବସ୍ତର ମହାରାଣୀଙ୍କ ଅକାଳମୃତ୍ୟୁ ପରେ ରାଜନୈତିକ କାରଣରୁ ବ୍ରିଟିଶ ସରକାର ପ୍ରଫୁଲ୍ଲ ଚନ୍ଦ୍ରଙ୍କୁ ପେନସନ ଦେଇ ବିଲାତ ପଠାଇ ଦେଇଥିଲେ । ବିଲାତରେ ଅବସ୍ଥାନ କାଳରେ ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଦର୍ଶନ ଶାସ୍ତ୍ର ଓ ଧର୍ମତତ୍ତ୍ୱରେ ଏମ.ଏ. ପାଶ କରି ସେଠାରେ ଅଧ୍ୟାପନା କରୁଥିଲେ । ଭାରତ ବର୍ଷ ସ୍ୱାଧୀନ ହେବା ପରେ ପ୍ରଫୁଲ୍ଲ ଚନ୍ଦ୍ର ସ୍ୱଦେଶକୁ ଫେରିଆସି ସ୍ଥାୟୀ ଭାବେ ବାରିପଦାରେ ବସବାସ କରିଥିଲେ । ସେ ବସ୍ତରକୁ ଆଉ ଯାଇନଥିଲେ । ତାଙ୍କ ଜ୍ୟେଷ୍ଠପୁତ୍ର ପ୍ରବୀଣ ଚନ୍ଦ୍ର ବସ୍ତର ମହାରାଜା ହୋଇଥିଲେ । କିନ୍ତୁ ଗାଦିନସୀନ ହେବା ପୂର୍ବରୁ ସମଗ୍ର ଭାରତବର୍ଷରେ ଗଡ଼ଜାତ ମିଶ୍ରଣ ହୋଇଯାଇ ରାଜପଦ ଲୋପ ପାଇ ଯାଇଥିଲା । ତରୁଣ ପ୍ରବୀଣ ଚନ୍ଦ୍ରଙ୍କ ପକ୍ଷରେ ଏହା ସହ୍ୟ କରିବା ସହଜ ନଥିଲା । ସେ ଭାରତ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ବସ୍ତରର ଆଦିବାସୀ ପ୍ରଜାମାନେ ତାଙ୍କୁ ସମର୍ଥନ ଦେଇଥିଲେ । ସେହି ବିଦ୍ରୋହ ଦମନ କରିବା ଆଳରେ ମଧ୍ୟପ୍ରଦେଶ ପ୍ରଶାସନ ଅତି ନୃଶଂଶ ଭାବେ ତରୁଣ ରାଜକୁମାରଙ୍କୁ ଗୁଳି କରି ହତ୍ୟା କରିଥିଲେ । ପ୍ରଫୁଲ୍ଲ ଚନ୍ଦ୍ର ଗଣତନ୍ତ୍ର ପରିଷଦ ଓ ପରେ ସ୍ୱତନ୍ତ୍ର ଦଳର ଜଣେ ସକ୍ରୀୟ ସଭ୍ୟ ଥିଲେ ଓ ଦୀର୍ଘଦିନ ସେହି ଦଳ ପକ୍ଷରୁ ରାଜ୍ୟସଭାର ସଭ୍ୟ ହୋଇଥିଲେ ।

ମହାରାଜାଙ୍କର ଅନ୍ୟତମ ସମ୍ପର୍କୀୟ ଭାଇ ଲାଲସାହେବ ଶରତ ଚନ୍ଦ୍ର ଜଣେ ବିଦ୍ୱାନ ବ୍ୟକ୍ତି ଓ କବିଭାବେ ସୁପରିଚିତ ଥିଲେ । ସେ ଅନେକ ଗୁଡ଼ିଏ ଝୁମର କବିତାର ରଚୟିତା । ମୟୂରଭଞ୍ଜ ମିଶ୍ରଣ ପରେ ସେ ଓଡ଼ିଶା ପବ୍ଲିକ ସର୍ଭିସ କମିଶନର ଜଣେ ସଭ୍ୟ ହୋଇଥିଲେ । ତାଙ୍କ ପୁତ୍ର ଲାଲ ସାହେବ ପ୍ରମୋଦ ଚନ୍ଦ୍ର ବହୁଥର ବାରିପଦା ଆସନରୁ ଓଡ଼ିଶା ବିଧାନ ସଭାକୁ ସ୍ୱାଧୀନ ସଭ୍ୟ ଭାବେ ନିର୍ବାଚିତ ହୋଇଥିଲେ । ଏହାଙ୍କ ପୂର୍ବରୁ ଆଉଜଣେ ଲାଲ ସାହେବ, ନଳିନୀ ଚନ୍ଦ୍ର ମଧ ଗଣତନ୍ତ୍ର ପରିଷଦ ପକ୍ଷରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଏମାନଙ୍କ ବ୍ୟତୀତ ନବୀନଚନ୍ଦ୍ର ଓ ନିମାଇ ଚନ୍ଦ୍ର (ବାବାଜି ଲାଲ ସାହେବ) ବୋଲି ଆଉ ଦୁଇଜଣ ଲାଲସାହେବ ରାଜନୀତିରେ

ପ୍ରତ୍ୟକ୍ଷ ସମ୍ପର୍କ ରଖୁନଥିଲେ ମଧ୍ୟ ବାରିପଦାର ବିଭିନ୍ନ ସମସ୍ୟାରେ ଆଗ୍ରହ ଦେଖାଉଥିଲେ ଓ ବାରିପଦା ଜନସାଧାରଣଙ୍କ ପ୍ରିୟ ଭାଜନ ହୋଇ ପାରିଥିଲେ ।

ମୟୂରଭଞ୍ଜ ରାଜପରିବାରର ସଦସ୍ୟମାନେ ଅତ୍ୟନ୍ତ ଭଦ୍ର ଓ ବିନୟୀ ଥିଲେ । ସେମାନଙ୍କ ଠାରେ ଉନ୍ନାସିକତା ନଥିଲା । ସେମାନେ ସର୍ବସାଧାରଣଙ୍କ ସହିତ ସହଜରେ ମିଳାମିଶା କରିପାରୁଥିଲେ । ରାଜପରିବାରର ଲୋକମାନେ ଓ ରାଜବାଟିର ପରିଚାରକମାନେ ମଧ୍ୟ ଅତ୍ୟନ୍ତ ସୌଜନ୍ୟପୂର୍ଣ୍ଣ ଭାବେ କଥାବାର୍ତ୍ତା କରୁଥିଲେ । ସେମାନଙ୍କ ପାଖକୁ ଗଲେ ସେମାନେ 'କୁଆଡ଼େ ଆସିଲେ ?' ନପଚାରି ପଚାରୁଥିଲେ, 'କୁଆଡ଼େ ଆସିବା ହେଲେ ?' 'ବସନ୍ତୁ' ନକହି କହୁଥିଲେ 'ବସିବା ହୁଅନ୍ତୁ ।' ମୟୂରଭଞ୍ଜ ରାଜ୍ୟର ଓଡ଼ିଶା ସହ ମିଶ୍ରଣ ପରେ ମୟୂରଭଞ୍ଜ ମହାରାଜା ଅନ୍ୟାନ୍ୟ ଗଡ଼ଜାତ ରାଜାଙ୍କ ପରି ପ୍ରତ୍ୟକ୍ଷ ରାଜନୀତିରେ ଯୋଗ ନଦେଇ ସପରିବାର କଲିକତାରେ ବସବାସ କରି ବ୍ୟବସାୟରେ ମନୋନିବେଶ କରିଥିଲେ ।

ମହାରାଜା ପ୍ରତାପଚନ୍ଦ୍ର ଥିଲେ ଜଣେ ପ୍ରଶିକ୍ଷିତ ଓ ଦକ୍ଷ ବୈମାନିକ । ପ୍ରଥମେ ସେ ଗୋଟିଏ ଟାଇଗାରମଥ୍ ଉଡ଼ାଜାହାଜ କିଣି ବିମାନଚାଳନା ଶିକ୍ଷା କରିଥିଲେ । ବାରିପଦାକୁ ପ୍ରଥମେ ଆସିଥିବା ବ୍ୟୋମଯାନର ନାମ ଥିଲା 'ଚପଳା' । ତା ପାଇଁ ବାରିପଦା ସହରରୁ ଛମାଇଲ ଦୂର ରାଜାବସା ଠାରେ ଗୋଟିଏ ଏରୋଡ୍ରମ ନିର୍ମାଣ କରାଯାଇଥିଲା । ସେଠାରେ ଥିଲା ବିସ୍ତୀର୍ଣ୍ଣ ପଡ଼ିଆ, ଉଡ଼ାଜାହାଜର ଉଠିବା ବା ଓହ୍ଲାଇବା ପାଇଁ ପକା ରନୱେ ଓ ଉଡ଼ାଜାହାଜ ନିରାପଦରେ ରହିବା ପାଇଁ ହ୍ୟାଙ୍ଗର୍ । ତାରଗଲକାର ନାମକ ଜଣେ ପ୍ରଶିକ୍ଷକ ପାଇଲଟ ମୋଟା ଦରମାରେ ନିଯୁକ୍ତି ପାଇ ବାରିପଦା ଆସିଥିଲେ । ଉଡ଼ାଜାହାଜର ରକ୍ଷଣାବେକ୍ଷଣ ପାଇଁ ଥିଲେ ଜଣେ ଗ୍ରାଉଣ୍ଡ ଇଞ୍ଜିନିୟର । ଏହାର ଅଳ୍ପଦିନ ପରେ ମହାରାଜା ଆଉ ଯୋଡ଼ିଏ ବିମାନ କିଣିଥିଲେ । ଏହି ବିମାନରେ ମହାରାଜାଙ୍କ ବୈମାତୃକ କନିଷ୍ଠ ଭ୍ରାତା ଧ୍ରୁବେନ୍ଦ୍ର ଓ ଓଡ଼ିଶାର ଅନ୍ୟ କେତେଜଣ ଦେଶୀୟ ରାଜ୍ୟର ରାଜା ମଧ୍ୟ ବିମାନ ଚାଳନା ଶିକ୍ଷା କରିଥିଲେ । ଧ୍ରୁବେନ୍ଦ୍ର ଜଣେ ଦକ୍ଷ ବିମାନ ଚାଳକ ଥିଲେ । ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ରାଜକୀୟ ବିମାନ ବାହିନୀରେ ଜଣେ ପାଇଲଟ ଅଫିସର ଭାବେ ଯୋଗଦାନ କରିଥିଲେ । ଚାରବାଟିଆ ବିମାନ ଘାଟିରେ ଅବସ୍ଥାପିତ ଥିବା ସମୟରେ ଗୋଟିଏ ଦୁଃଖଦାୟକ ବିମାନ ଦୁର୍ଘଟଣାରେ ତରୁଣ ବୟସରେ

ତାଙ୍କର ଅକାଳ ମୃତ୍ୟୁ ହୋଇଯାଇଥିଲା । ଧ୍ରୁବେନ୍ଦ୍ର ଉଡ଼ାଉଥିବା ରୟେଲ ଏୟାର ଫୋର୍ସର ଲଢୁଆ ବିମାନଟି ଦୁର୍ଘଟଣାଗ୍ରସ୍ତ ହୋଇ କେନ୍ଦ୍ରାପଡ଼ା ରୋଡ଼ ରେଳଷ୍ଟେସନ ନିକଟରେ ବିରୂପା ନଦୀ ବାଲିରେ ଖସି ପଡ଼ି ଜଳିଯାଇଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଯିବା ପରେ ମହାରାଜା ତାଙ୍କର ତିନୋଟିଯାକ ବିମାନ ବ୍ରିଟିଶ ସରକାରଙ୍କ ବିମାନ ବାହିନୀକୁ ଦାନ କରିଦେଇଥିଲେ । ଏହାର ପ୍ରତିଦାନ ସ୍ୱରୂପ ବ୍ରିଟିଶ ସରକାର ତାଙ୍କୁ ରାଜକୀୟ ବିମାନ ବାହିନୀର ଜନୈକ ଅବୈତନିକ ଫ୍ଲାଇଟ ଲେଫ୍ଟନାଣ୍ଟ ଭାବେ ନିଯୁକ୍ତି ଦେଇଥିଲେ ଓ ୧୯୪୫ ମସିହାରେ ଯୁଦ୍ଧ ବିରତି ପରେ ଦଶଟି ନୂଆ ଡ୍ୟାକୋଟା ବିମାନ ଉପହାର ସ୍ୱରୂପ ଦେଇଥିଲେ । ବିଶ୍ୱଯୁଦ୍ଧ ପରିସମାପ୍ତିର ଅବ୍ୟବହିତ ପୂର୍ବରୁ ପୂର୍ବ ରଣାଙ୍ଗନରେ ବ୍ୟବହୃତ ହେବା ପାଇଁ ଏହି ବିମାନଗୁଡ଼ିକୁ ଅଣାଯାଇ କଲାଇକୁଣ୍ଡା ବିମାନଘାଟିରେ ରଖାଯାଇଥିଲା । ସେଗୁଡ଼ିକ ବ୍ୟବହାରରେ ଲାଗିବା ପୂର୍ବରୁ ଯୁଦ୍ଧ ଶେଷ ହୋଇଯାଇଥିଲା । ସେ ସମୟରେ ଭାରତବର୍ଷର ଦେଶୀୟ ରାଜ୍ୟର କେତେଜଣ ରାଜା-ମହାରାଜା ମିଳିତ ଭାବରେ 'ଭାରତ ଏୟାରୱେଜ' ନାମରେ ଯେଉଁ ବିମାନ ସେବା ଆରମ୍ଭ କରିଥିଲେ ମୟୂରଭଞ୍ଜ ମହାରାଜା ଉକ୍ତ କମ୍ପାନୀର ଜଣେ ଅଂଶୀଦାର ଭାବେ ତାଙ୍କର ସବୁଗୁଡ଼ିକ ବିମାନ ସେହି କମ୍ପାନୀକୁ ଦେଇ ଦେଇଥିଲେ ।

ବାରିପଦାରେ ଆଉ ଜଣେ ବୈମାନିକଙ୍କର ଜନ୍ମ ହୋଇଥିଲା । ସେ ହେଉଛନ୍ତି ଶଚି ଭୂୟାଁ । ତାଙ୍କ ପିତା ଅର୍ଜୁନ ଭୂୟାଁ ସମ୍ଭବତଃ ପ୍ରଥମ ଓଡ଼ିଆ ଗ୍ରାଜୁଏଟ ଇଞ୍ଜିନିୟର ଥିଲେ । କିନ୍ତୁ ଦୁର୍ଘଟଣାରେ ତାଙ୍କର ଗୋଟିଏ ଚକ୍ଷୁର ଦୃଷ୍ଟିଶକ୍ତି ନଷ୍ଟ ହୋଇ ଯାଇଥିବାରୁ ସେ ବ୍ରିଟିଶ ସରକାରଙ୍କ ଅଧୀନରେ ସରକାରୀ ଚାକିରି କରି ନପାରି ମୟୂରଭଞ୍ଜ ଷ୍ଟେଟ୍‌ରେ ସହକାରୀ ଇଞ୍ଜିନିୟର ଚାକିରି କରିବାକୁ ବାଧ୍ୟ ହୋଇଥିଲେ । ଶଚି ଭୂୟାଁ ଲଣ୍ଡନରୁ ବିମାନ ଚାଳନା ଶିକ୍ଷାଲାଭ କରି ଭାରତବର୍ଷକୁ ଫେରିଆସି ଓଡ଼ିଶା ବାହାରେ ଚାକିରି କରୁଥିଲେ । ବିଶ୍ୱଯୁଦ୍ଧ ଲାଗିଯିବା ପରେ ସେ ରାଜକୀୟ ବିମାନ ବାହିନୀରେ ଜଣେ ପ୍ରଶିକ୍ଷକ ବୈମାନିକ ଭାବେ ନିଯୁକ୍ତି ପାଇଥିଲେ । ଦିନେ ଜଣେ ଶିକ୍ଷାନବୀସ ପାଇଲଟଙ୍କୁ ବିମାନ ଚାଳନା ଶିକ୍ଷା ଦେଉଥିବାବେଳେ ତାଙ୍କ ବିମାନଟି ଦୁର୍ଘଟଣା ଗ୍ରସ୍ତ ହୋଇ ସେ ଅକାଳ ମୃତ୍ୟୁ ବରଣ କରିଥିଲେ ।

ସ୍କୁଲ ଛୁଟିଦିନମାନଙ୍କରେ ଦିନେ ଦିନେ ଆମେ ଦଳବାନ୍ଧି ରାଜାବସା ଏରୋଡ୍ରାମକୁ ବୁଲି ଯାଉଥିଲୁ । ଦଶ କିଲୋମିଟର ବାଟ ପାଦରେ ଚାଲି

ଚାଲି ଯିବା ପାଇଁ ଆମ ଟିକି ଟିକି ପାଦ ଥକି ଯାଉଥିଲା ନିଶ୍ଚୟ । ତଥାପି ସେଠାକୁ ଯିବାପାଇଁ ଆମେ କେବେ ବି ନିରୁତ୍ସାହିତ ହେଉନଥିଲୁ । ପ୍ଲେନମାନଙ୍କର ଟେକ୍‌ଅଫ ବା ଲ୍ୟାଣ୍ଡି ଦେଖିବା ପାଇଁ ଭାରି ମଜା ଲାଗୁଥିଲା । ରାନଓ୍ୱେ ଠାରୁ ନିରାପଦ ଦୂରତ୍ୱରେ ରହି ଆମେ ସେ ଦୃଶ୍ୟ ଦେଖୁଥିଲୁ ।

ଛୁଟିଦିନମାନଙ୍କରେ ଦଳବାନ୍ଧି ବୁଲିବାରେ ଆମମାନଙ୍କର ଭାରି ଆନନ୍ଦ ଥିଲା । ଆମେ ଦିନେ ଦିନେ ଯାଇ ବେଲଗଡ଼ିଆ ଠାରେ ମହାରାଜାଙ୍କ ମୋଟର ଗ୍ୟାରେଜରେ ରଖାଯାଇଥିବା ମୋଟର ଗାଡ଼ି ଗୁଡ଼ିକୁ ଦେଖୁଥିଲୁ । ପଚାଶରୁ ଉର୍ଦ୍ଧ୍ୱ ଥିଲା ସେହି ଗାଡ଼ି ଗୁଡ଼ିକର ସଂଖ୍ୟା । ସେଥି ଭିତରୁ କେତେଗୁଡ଼ିଏ ଅତି ମୂଲ୍ୟବାନ ରୋଲ୍ସରୟେସ ଓ ମାର୍ସିଡିଜ ବେଞ୍ଜ ଗାଡ଼ି ଥିଲା । ତା ଛଡ଼ା ଅନ୍ୟାନ୍ୟ ଗାଡ଼ି ମଧ ଥିଲା । ବିଶ୍ୱଯୁଦ୍ଧ ପରେ ମହାରାଜା କ୍ୟାଡ଼ିଲକ, ଫୋର୍ଡ଼ ଓ ବୁଇକ୍ ପ୍ରଭୃତି କେତେଖଣ୍ଡ ଆଧୁନିକ ଆମେରିକାନ କାର କିଣିଥିଲେ ମଧ ନିଜେ ଆର୍ମି ଡିସପୋଜାଲରୁ କିଣା ଯାଇଥିବା ଫୋର୍ଡ଼ ଜିପ୍ ଚଢ଼ିବାକୁ ପସନ୍ଦ କରୁଥିଲେ । ଜିପ୍ ସେ ନିଜେ ଚଳାଉଥିଲେ । ମହାରାଜାଙ୍କ ମୋଟର ଗାଡ଼ିଗୁଡ଼ିକ ରେଜିଷ୍ଟ୍ରେସନ ହେଉନଥିଲା । ନମ୍ବର ପ୍ଲେଟ ଲାଗିବା ସ୍ଥାନରେ ନାଲି ପ୍ଲେଟ୍‌ରେ ମୟୂରଭଞ୍ଜ ଷ୍ଟେଟ ଲେଖା ଯାଇଥିବା ପ୍ଲେଟ୍ ଲଗାଯାଉଥିଲା । ଗାଡ଼ିଗୁଡ଼ିକ ଚଳାଇବା ପାଇଁ ଓ ତାର ରକ୍ଷଣାବେକ୍ଷଣ କରିବା ପାଇଁ ଅନେକ ଡ୍ରାଇଭର ଓ ମେକାନିକ ନିଯୁକ୍ତି ପାଇଥିଲେ । ଗ୍ୟାରେଜ୍ ପାଖରେ ସେମାନଙ୍କୁ ସରକାରୀ ବାସଗୃହ ମିଳିଥିଲା । ସେମାନଙ୍କ ତତ୍ତ୍ୱାବଧାରକ ଥିଲେ ଶୋଭାକର ଭଞ୍ଜବାବୁ- ଡାକ ନାମ ବଡ଼ ବାବୁ । ସେହି ଗ୍ୟାରେଜ ନିକଟରେ ବାରିପଦାର ଏକମାତ୍ର ପେଟ୍ରୋଲ ପମ୍ପଟି ଥିଲା । ଭାରି ଶସ୍ତାଥିଲା ପେଟ୍ରୋଲ ସେତେବେଳେ; ଗ୍ୟାଲନ (୩.୭୫ଲିଟର) ଆଠ ଅଣା କି ଦଶ ଅଣାରେ ବିକ୍ରି ହେଉଥିଲା । ପମ୍ପରୁ ଖୋଲା ପେଟ୍ରୋଲ ମିଳିବା ସହିତ ଦୁଇ ଗ୍ୟାଲନର ସିଲ୍ ଟିଣ ମଧ କିଣିବାକୁ ମିଳୁଥିଲା । ମହାରାଜାଙ୍କ ଗାଡ଼ି ବ୍ୟତୀତ ବାରିପଦା ସହରରେ ଅନେକ ମୋଟର ଗାଡ଼ି ଥିଲା । ମୟୂରଭଞ୍ଜ ଷ୍ଟେଟର ପ୍ରାୟ ସବୁ ଅଫିସର ମୋଟର ଗାଡ଼ି ରଖୁଥିଲେ । ସେମାନେ ଗାଡ଼ି କିଣିବା ପାଇଁ ଅଳ୍ପ ସୁଧରେ ସରକାରୀ ଋଣ ପାଉଥିଲେ । ବାରିପଦାରେ ଡାକ୍ତର, ଓକିଲ, ବ୍ୟବସାୟୀମାନେ ମଧ ମୋଟର ଗାଡ଼ି ରଖୁଥିଲେ । ବାରିପଦା ରାଜପଥରେ ଅନେକ ମୋଟରଗାଡ଼ିର ଯିବା ଆସିବା ଲାଗି ରହୁଥିଲା । ତା ଭିତରୁ ଅନେକଗୁଡ଼ିଏ ଛୋଟ ଛୋଟ ବେବିଅଷ୍ଟିନ ଓ ବେବିଫୋର୍ଡ଼ ଥିଲା । ବାରିପଦାରେ ମୋଟରଗାଡ଼ି ପ୍ରତି

ଲୋକମାନଙ୍କର ଯେଉଁ ସଉକ ବା ଆଗ୍ରହ ଥିଲା ତାହା ଓଡ଼ିଶାରେ ଅନ୍ୟ କେଉଁ ସହରରେ ନଥିଲା । ଚାଳିଶ ଦଶକରେ ବାରିପଦାରେ ଅନେକ ମୋଟର ଗାଡ଼ିଥିବା ସତ୍ୱେ ବାଲେଶ୍ୱର କଟକ ପୁରୀ ପ୍ରଭୃତି ସହରରେ କ୍ୱଚିତ୍ କଦବା ଖଣ୍ଡେ ଅଧେ ମୋଟର ଗାଡ଼ି ନଜରରେ ପଡୁଥିଲା । ୧୯୪୮ ମସିହାରେ ମୁଁ ପ୍ରଥମ ଥର ପାଇଁ କଟକ ବୁଲିଆସିଥିଲି । ସେତେବେଳେ ବି କଟକ ରାସ୍ତାରେ ମୋଟରକାର ବହୁଳ ଚଳାଚଳ ନଦେଖି ଆଶ୍ଚର୍ଯ୍ୟ ହୋଇଥିଲି । ସେ ସମୟରେ କଟକ ଓଡ଼ିଶା ପ୍ରଦେଶର ରାଜଧାନୀ ହୋଇ ରହିଥିବା ସତ୍ୱେ ସେଠାରେ ମୋଟରଗାଡ଼ି ସଂଖ୍ୟା ଥିଲା ନଗଣ୍ୟ ।

ମହାରାଜାଙ୍କ ଗ୍ୟାରେଜ ପାଖରେ ଥିଲା ଘୋଡ଼ାଶାଳ । ଅନେକ ଗୁଡ଼ିଏ ମୂଲ୍ୟବାନ ଘୋଡ଼ାଦୌଡ଼ରେ ଭାଗନେବା ଉପଯୋଗୀ ଘୋଡ଼ା(ରେସ୍ ହର୍ସ) ରଖାଯାଇଥିଲା ସେଠାରେ । ଏହି ଘୋଡ଼ାଗୁଡ଼ିକୁ ମହାରାଜା ସିଧାସଳଖ ଅଷ୍ଟ୍ରେଲିଆରୁ ଅଣାଇଥିଲେ । କେଉଁ ଉଦ୍ଦେଶ୍ୟରେ ସେଗୁଡ଼ିକୁ ସେ କିଣିଥିଲେ ସେ କଥା ମୁଁ ଜାଣିନାହିଁ । କିନ୍ତୁ ତାଭିତରୁ ଗୋଟିଏ ଯୋଡ଼ିଏ ଘୋଡ଼ା ଫିଟନ ବା ବଗି ଗାଡ଼ି ଟାଣିବା ପାଇଁ ବ୍ୟବହାର କରାଯାଉଥିଲା । ଅନ୍ୟଗୁଡ଼ିକ ପ୍ରତିଦିନ କେବଳ ଦାନା ଆଉ ଘାସ ଖାଇ ଚଲାଇ ମଲାଇ ହେଉଥିଲେ ଓ ସକାଳୁ ସଇସମାନେ ସେହି ଘୋଡ଼ାଗୁଡ଼ିକୁ ମୁଖ୍ୟ ରାସ୍ତାରେ ସହର ଚାରିପଟେ ବୁଲାଇ ଆଣୁଥିଲେ । ସେମାନଙ୍କ ଉପରେ କେହି କେବେ ଚଢ଼ିବାର ମୁଁ ଦେଖିନାହିଁ । ମୟୂରଭଞ୍ଜରେ ଲୋକପ୍ରିୟ ମନ୍ତ୍ରୀମଣ୍ଡଳ ହେବାପରେ ପ୍ରମୋଦ ମହାନ୍ତି ଓ ହାକିମ ବୋଲି କେତେଜଣ ଘୋଡ଼ାସବାର ସେହି ଘୋଡ଼ାଗୁଡ଼ିକ ଉପରେ ବସି ସେମାନଙ୍କୁ ଦୌଡ଼ାଉଥିଲେ । କିନ୍ତୁ ଅଳ୍ପଦିନ ପରେ ମନ୍ତ୍ରୀମଣ୍ଡଳର ନିଷ୍ପତ୍ତି ଅନୁଯାୟୀ ସେହି ଘୋଡ଼ାଗୁଡ଼ିକୁ ଓ ମହାରାଜାଙ୍କ ପୁରୁଣା ମୋଟର ଗାଡ଼ିଗୁଡ଼ିକୁ ବିକ୍ରି କରି ଦିଆଯାଇଥିଲା । କଲିକତାର ବେପାରିମାନେ ଆସି ସେହି ମୂଲ୍ୟବାନ 'ରେସ୍ ହର୍ସ' ଓ 'ଭିନଟେଜ୍ ମୋଟର କାର' ଗୁଡ଼ିକୁ କିଣିନେଇଥିଲେ । ସେହି ଘୋଡ଼ାମାନଙ୍କ ସହିତ ମହାରାଜାଙ୍କ ପାଟଘୋଡ଼ା ବି ଥିଲା । ଶଙ୍ଖ ଶୁଭ୍ର ରଙ୍ଗ ଥିଲା ତାର । ପାର୍ବଣ ସମୟରେ ରାଜବାଟି ନିକଟସ୍ଥ ଦେବୀ ମେଳାରେ ହେଉଥିବା ରଜାଘର ଦୁର୍ଗାପୂଜା ପାଇଁ ବେଲବରଣ ଦିନ ନଦୀରୁ ଘଟ ଆସିବାବେଳେ ହେଉଥିବା ଶୋଭାଯାତ୍ରାର ଅଗ୍ରଭାଗରେ ରହୁଥିଲା ପାଟଘୋଡ଼ା । ଢୋଲ ବାଜାର ତାଳେ ତାଳେ ମୁଣ୍ଡ ହଲାଇ ନାଚି ନାଚି କଦମ ଚାଲିରେ ଆସୁଥିଲା ସେ । ରଜାଘର ମୋଟର ଗ୍ୟାରେଜ

ପଛପଟେ ଗୋଟିଏ ପୋଖରୀ ଥିଲା- ତା ନାମ ଘୋଡ଼ାବନ୍ଧ । ସେ ପୋଖରୀ ପାଣିରେ ରଜାଘର ମୋଟର ଗାଡ଼ି ଧୁଆ ଯାଉଥିଲା । ଘୋଡ଼ାମାନଙ୍କୁ ଗାଧୋଇ ଦିଆ ଯାଉଥିଲା । ତାର ଗୋଟିଏ ପାର୍ଶ୍ୱରେ ସ୍ନାନ ଘାଟ ମଧ ଥିଲା । ଅନେକ ଲୋକ ଗାଧଉ ଥିଲେ ସେଠି । ସେହି ପୋଖରୀର ଅଗଭୀର ପାଣିରେ ମୁଁ ପହଁରି ଶିଖିଥିଲି । ସେହି ପୋଖରୀର ଗୋଟିଏ କୋଣରେ ନାଲି କଇଁ ଫୁଟୁଥିଲା । ଉଜ୍ଜ୍ୱଳ ରକ୍ତବର୍ଣ୍ଣର ଅତିସୁନ୍ଦର ସେ ଫୁଲ ।

ବାରିପଦାରେ ବର୍ଷ ସାରା କିଛିନା କିଛି ଉତ୍ସବ ଲାଗି ରହୁଥିଲା । ଜଗନ୍ନାଥଙ୍କର ଯେପରି ବାରମାସରେ ତେର ଯାତ୍ରା ସେହି ଅବସ୍ଥା ଥିଲା ବାରିପଦା ସହରର । ସେଠାର ଅନୁଷ୍ଠିତ ଉତ୍ସବ ଗୁଡ଼ିକ ଭିତରୁ କେତେକ ଥିଲା ଧାର୍ମିକ, କେତେକ ସାମାଜିକ ଆଉ କେତେକ ରାଜକୀୟ । ମହାରାଜାଙ୍କୁ କେନ୍ଦ୍ର କରି ଯେଉ ସବୁ ଉତ୍ସବ ପାଳନ କରାଯାଉଥିଲା ତା ଭିତରୁ ତାଙ୍କ ସ୍ୱନକ୍ଷତ୍ର ପାଳନ ଥିଲା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ରାଜକୀୟ ଉତ୍ସବ । ଏହି ଉତ୍ସବ ସାତଦିନ ଧରି ପାଳନ କରାଯାଉଥିଲା । ଶୀତଦିନେ ବୋଧହୁଏ ଡିସେମ୍ବର ମାସରେ ମହାରାଜାଙ୍କ ସ୍ୱନକ୍ଷତ୍ର ବା ଜନ୍ମଦିନ ପଡୁଥିଲା । ଏହା ମୟୂରଭଞ୍ଜର ଜାତୀୟ ଉତ୍ସବ ଭାବେ ପାଳନ କରାଯାଉଥିଲା । ସେଦିନ ପ୍ରତ୍ୟୁଷରୁ ବାରିପଦା ହାଇସ୍କୁଲ ଛାତ୍ରମାନେ ପ୍ରଭାତ ଫେରି କରି ସହର ପରିକ୍ରମା କରୁଥିଲେ । ପ୍ରଭାତ ଫେରି ସମୟରେ ସେମାନେ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ରଚିତ ମୟୂରଭଞ୍ଜର ଜାତୀୟ ସଙ୍ଗୀତ 'ମୋର ଏହି ଭଞ୍ଜଭୂମି ମୋର ମହାରାଜା/ ଜନ୍ମେ ଜନ୍ମେ ଏ ଦୁହିଁଙ୍କୁ କରୁଥିବି ମୁଁ ପୂଜା' ଗାନ କରୁଥିଲେ । ସକାଳ ଆଠଟାବେଳେ ପୋଲିସ ଲାଇନ ପଡ଼ିଆରେ ମହାରାଜା ମୟୂରଭଞ୍ଜ ଷ୍ଟେଟ୍‌ର ମୟୂର ଲାଞ୍ଛିତ ପତାକା ଉତ୍ତୋଳନ କରି ସଶସ୍ତ୍ର ପୋଲିସ ବାହିନୀର ସାମରିକ ଅଭିବାଦନ ଗ୍ରହଣ କରୁଥିଲେ । ସେତେବେଳେ ମୟୂରଭଞ୍ଜ ଷ୍ଟେଟ ବ୍ରାସବ୍ୟାଣ୍ଡରେ ସୁମଧୁର ଐକତାନ ତୋଳି ମୟୂରଭଞ୍ଜ ଷ୍ଟେଟର ନ୍ୟାସନାଲ ଆନଥାମ ବାଜି ଉଠୁଥିଲା- ମୋର ଏହି ଭଞ୍ଜଭୂମି । ଏହି ଗାର୍ଡ଼ ଅଫ୍ ଅନର ପରିଚାଳନା କରୁଥିଲେ ସୁବେଦାର ଆଖଣ୍ଡଳମଣି ଦାଶ । ତାପରେ ମହାରାଜାଙ୍କର ଯେତେ ବୟସ ସେତେଟା ତୋପଧ୍ୱନୀ କରା ଯାଉଥିଲା । ମନ୍ଦିର ମସ୍‌ଜିଦ୍ ଓ ଗୀର୍ଜାରେ ମହାରାଜାଙ୍କ ଦୀର୍ଘଜୀବନ ପାଇଁ ପ୍ରାର୍ଥନା କରାଯାଉଥିଲା ।

ସେଦିନ ଅପରାହ୍ନରେ ଇଣ୍ଡଷ୍ଟ୍ରିଆଲ ଇନିଷ୍ଟିଚ୍ୟୁଟ ପରିସର ଭିତରେ

ବାର୍ଷିକ କୃଷି ଓ ଶିଳ୍ପ ପ୍ରଦର୍ଶନୀ ଉଦ୍‌ଘାଟିତ ହେଉଥିଲା । ସେହି ପ୍ରଦର୍ଶନୀରେ ସମଗ୍ର ଷ୍ଟେଟରେ ଉତ୍ପାଦିତ ଦର୍ଶନୀୟ କୃଷିଜାତ ଦ୍ରବ୍ୟ ଓ କୁଟୀର ଶିଳ୍ପ ସାମଗ୍ରୀ ପ୍ରଦର୍ଶିତ ହେଉଥିଲା । ବିଭିନ୍ନ ଷ୍ଟଲରେ ପ୍ରଦର୍ଶିତ ହେଉଥିଲା ଅଗ୍ରଣୀ କୃଷକମାନଙ୍କ ଦ୍ୱାରା ଉତ୍ପାଦିତ ବିଶାଳକାୟ ଫୁଲକୋବି, ବନ୍ଧାକୋବି, ମଣିଷ ଉଚ୍ଚର କଦଳୀ କାନ୍ଧି, ବିରାଟ ବିରାଟ ବୋଇତାଳୁ, ଲାଉ ଆଉ ଅମୃତଭଣ୍ଡା, ଅଧକେଜି ଓଜନର କଳା ମଚ ମଚ ମୁକ୍ତକେଶୀ ବାଇଗଣ କିମ୍ବା ମାରଗ୍ଲୋବ ବା ଅକ୍ସହାର୍ଟ ବିଲାତି ବାଇଗଣ । ତାଛଡ଼ା ଅନେକ ଶିଳ୍ପ ସାମଗ୍ରୀର ପ୍ରଦର୍ଶନୀ ମଧ ହେଉଥିଲା ଯେମିତି ଓଲମରାର କାଣ୍ଡିଆ ଚଦର ମଠା ଆଉ ବାପ୍ତା କନା, ବୈଦପୁରର ତନ୍ତବୁଣା ଧୋତି ଆଉ ଗାମୁଛା । ଜେଲଖାନାର ଦରି, ବୋବେଇ ଦଉଡ଼ିର ଆସବାବ ପତ୍ର । ପିଠାବଟା ଆଉ ଲୁଲୁଙ୍ଗ କିମ୍ବା ଖିଚିଂର ପଥୁରି ବାସନ ଇତ୍ୟାଦି । ରାଣୀବାଗ ଓ ମଞ୍ଚାବନ୍ଧାର ମାଳୀମାନେ ଶୀତଋତୁ ଫୁଲର ସମ୍ଭାରରେ ସଜାଇ ଦେଉଥିଲେ ପ୍ରଦର୍ଶନୀ ପଡ଼ିଆକୁ । ପ୍ରଦର୍ଶନୀ ବାହାରେ କେଟେଲ୍ ସୋ ବା ଗୋ ପ୍ରଦର୍ଶନୀ ହେଉଥିଲା । ବାରିପଦା ଲୋକମାନେ ପାଳିଥିବା ଉତ୍କୃଷ୍ଟ ଗୋ ସମ୍ପଦର ପ୍ରଦର୍ଶନ ହେଉଥିଲା ସେଠାରେ ଓ ଶ୍ରେଷ୍ଠ ଗାଈ, ବଳଦ ଓ ଷଣ୍ଢମାନଙ୍କୁ ପୁରସ୍କୃତ କରାଯାଉଥିଲା ।

ଅନେକ ସମୟରେ ବାରିପଦାର ଏହି ପ୍ରଦର୍ଶନୀରେ ଚିତ୍ର ଶିଳ୍ପୀମାନେ ସେମାନଙ୍କ ଚିତ୍ର ପ୍ରଦର୍ଶନୀ କରୁଥିଲେ । ଯେଉଁବର୍ଷ ଶିଳ୍ପୀ ମୁରଲୀଧର ଟାଲି କଲିକତାର ସର୍ବଭାରତୀୟ ଚାରୁକଳା ପ୍ରଦର୍ଶନୀରେ ତାଙ୍କର 'ପ୍ରତୀକ୍ଷମଣା' ତୈଳଚିତ୍ର ପାଇଁ ସ୍ୱର୍ଣ୍ଣପଦକ ଲାଭ କରିଥିଲେ, ସେହିବର୍ଷ ସେ ବାରିପଦା ପ୍ରଦର୍ଶନୀରେ ନିଜର କଳାକୃତୀ ଗୁଡ଼ିକର ପ୍ରଦର୍ଶନ କରିଥିଲେ । ମହାରାଜା ପ୍ରଦର୍ଶନୀ ଉଦ୍‌ଘାଟନ କରି ଷ୍ଟଲ ସବୁ ବୁଲି ଦେଖୁଥିବା ଅବସରରେ ଶିଳ୍ପୀ ମୁରଲୀଧର ଟାଲି, ତାଙ୍କଠାରୁ ପାଞ୍ଚ ମିନିଟ୍ ସମୟ ମାଗିନେଇ ସେହି ସମୟ ଭିତରେ ମହାରାଜାଙ୍କର ଗୋଟିଏ ପେନ୍‌ସିଲ୍ ପୋଟ୍ରେଟ ଆଙ୍କିଦେଇଥିଲେ । ଅତି ଜୀବନ୍ତ ହୋଇଥିଲା ମହାରାଜାଙ୍କର ସେହି ପ୍ରତିକୃତି । ମହାରାଜା ଖୁସିହୋଇ ଶିଳ୍ପୀଙ୍କୁ ପାଞ୍ଚଶହ ଟଙ୍କା ପାରିତୋଷିକ ଦେଇଥିଲେ ଓ ତାଙ୍କର କେତେଗୁଡ଼ିଏ ତୈଳ ଚିତ୍ର ଉପଯୁକ୍ତ ମୂଲ୍ୟ ଦେଇ କିଣି ନେଇଥିଲେ ।

ଅନେକ ଗୁଣୀ ଶିଳ୍ପୀ ସଙ୍ଗୀତଜ୍ଞ ଓ ସାହିତ୍ୟିକ ମୟୂରଭଞ୍ଜ ମହାରାଜାଙ୍କ ପୃଷ୍ଠପୋଷକତା ଲାଭ କରିପାରିଥିଲେ । ସେଥିପାଇଁ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ, କାଳିନ୍ଦୀ ଚରଣ ପାଣିଗ୍ରାହୀ ପ୍ରମୁଖ ସେମାନଙ୍କ ଆଦ୍ୟ

ଯୌବନରେ ବାରିପଦାକୁ ସେମାନଙ୍କର କର୍ମଭୂମି ଭାବେ ବାଛିନେଇଥିଲେ । ସ୍ୱର୍ଗତ ଗୋପାଳ ପ୍ରହରାଜ ଭାଷାକୋଷ ଭଳି ବିଶାଳ ଗ୍ରନ୍ଥର ପ୍ରକାଶନ ନିମନ୍ତେ ଆର୍ଥିକ ସହାୟତା ପାଇଁ ମୟୂରଭଞ୍ଜ ମହାରାଜାଙ୍କ ପାଖକୁ ଯାଇଥିଲେ । ସେ ସମୟରେ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଥିଲେ ମୟୂରଭଞ୍ଜର ମହାରାଜା । ସେ ପ୍ରହରାଜଙ୍କ ପାଖରୁ ଆର୍ଥିକ ସହାୟତା ନିମନ୍ତେ ଆବେଦନ ପତ୍ରଟି ଗ୍ରହଣ କରିବା ପରେ ପଚାରିଲେ, 'ଭାଷାକୋଷ ପ୍ରକାଶନ ପାଇଁ ଖର୍ଚ୍ଚର ଅଟକଳ କ'ଣ ?' ପ୍ରହରାଜ ଭାଷାକୋଷ ପ୍ରକାଶ ସମ୍ପର୍କରେ କୌଣସି ଖର୍ଚ୍ଚ ଅଟକଳ କରି ନଥିଲେ କିମ୍ୱା ଜଣେ ତରୁଣ ଗଡ଼ଜାତ ରାଜାଙ୍କଠାରୁ ଏଭଳି ପ୍ରଶ୍ନ ଆଶା କରିନଥିଲେ । ସେ ଅପ୍ରତିଭ ଭାବେ କେତେ ସମୟ ମହାରାଜାଙ୍କ, ମୁହଁକୁ ଚାହିଁ ରଖିବା ପରେ କହିଥିଲେ, 'ଏ ଯାଏ ଅଟକଳ କରିନାହିଁ ହଜୁର ।' ତାଙ୍କ କଥା ଶୁଣି ମହାରାଜା ସ୍ମିତ ହସି କହିଲେ, ଏତେବଡ଼ ଗୋଟିଏ ଯୋଜନା ହାତକୁ ନେବା ପରେ ଖର୍ଚ୍ଚ ଅଟକଳ କରିନାହାନ୍ତି କିପରି ? ଠିକ୍ ଅଛି ବର୍ତ୍ତମାନ ମୁଁ ପଚିଶ ହଜାର ଟଙ୍କା ମଞ୍ଜୁର କରିଦେଉଚି । ପରେ ଅଧିକ ଟଙ୍କା ପ୍ରୟୋଜନ ହେଲେ ଆବଶ୍ୟକତା ଅନୁଯାୟୀ ବାକି ଟଙ୍କା ମଞ୍ଜୁର କରି ଦିଆଯିବ । ଏହି ଆଦେଶ ମହାରାଜା ପ୍ରହରାଜଙ୍କ ଦରଖାସ୍ତ ଉପରେ ଲେଖିଦେଇଥିଲେ । ଭାଷାକୋଷ ଛପାଇବା ପାଇଁ ସବୁ ପ୍ରସ୍ତୁତି ଶେଷ କରି ପ୍ରହରାଜ ମହାଶୟ ଟଙ୍କା ନେବାପାଇଁ ପୁଣିଥରେ ବାରିପଦା ଆସିବାବେଳକୁ ପୂର୍ଣ୍ଣଚନ୍ଦ୍ର ଜୀବିତ ନଥିଲେ । ପରବର୍ତ୍ତୀ ମହାରାଜା ପ୍ରତାପଚନ୍ଦ୍ର କହିଲେ, 'ପୂର୍ବ ମହାରାଜାଙ୍କ ଆଦେଶ ପାଳନ ମୋ ପକ୍ଷରେ ଅପରିହାର୍ଯ୍ୟ, କିନ୍ତୁ ତାଙ୍କ ଆଦେଶ କାହିଁ ? ଆଦେଶ ଦେଖାଇଲେ ପୂର୍ବତନ ମହାରାଜାଙ୍କ ଆଦେଶ ଅବଶ୍ୟ ପାଳନ କରାଯିବ ।' ସେକଥା ଶୁଣି ବଡ଼ ହତାଶ ହୋଇ ଯାଇଥିଲେ ପ୍ରହରାଜ ମହାଶୟ । କିନ୍ତୁ ମହାରାଜାଙ୍କ ତରୁଣ ପେସ୍କାର ରାଧୁବାବୁ ପୂର୍ଣ୍ଣଚନ୍ଦ୍ରଙ୍କ ଲିଖିତ ଆଦେଶଟିକୁ ଗୋଟିଏ ନଥିରୁ ଖୋଜି ବାହାର କରିବା ପରେ ମହାରାଜା ପ୍ରତାପଚନ୍ଦ୍ର ପୂର୍ବତନ ମହାରାଜା ମଞ୍ଜୁର କରିଥିବା ଅର୍ଥ ଭାଷାକୋଷ ପ୍ରକାଶ କରିବା ପାଇଁ ଗୋପାଳ ପ୍ରହରାଜଙ୍କୁ ଦେଇଥିଲେ । ଏହାପରେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ପ୍ରକାଶନ କାର୍ଯ୍ୟ ସୁଗମ ହୋଇପାରିଥିଲା । ଗୋପାଳ ପ୍ରହରାଜ ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କ ଋଣ ସ୍ୱୀକାର କରି ତାଙ୍କ ନାମରେ ଭାଷାକୋଷର ନାମକରଣ କରିଥିଲେ ।

ମହାରାଜାଙ୍କ ସ୍ୱନକ୍ଷତ୍ର ଉପଲକ୍ଷେ ମୟୂରଭଞ୍ଜ ଆଥେଲେଟିକ

ଏସୋସିଏସନ ବାର୍ଷିକ ଦୌଡ଼କୁଦ ପ୍ରତିଯୋଗିତାର ଆୟୋଜନ କରୁଥିଲେ । ବହୁ ପ୍ରତିଯୋଗୀ ଭାଗ ନେଉଥିଲେ ଏହି ପ୍ରତିଯୋଗିତାରେ । ବହୁପ୍ରକାର ଖେଳ ସାମିଲ କରାଯାଉଥିଲା ଏହି ପ୍ରତିଯୋଗିତାରେ ଓ ତାହା ସମାପ୍ତ ହେବା ପାଇଁ ତିନିଦିନ ସମୟ ଲାଗୁଥିଲା । ସାଇକେଲ ରେସ୍‌ରେ ସବୁବେଳେ ବାରିପଦାର ମାଛ ବେପାରୀମାନେ ପ୍ରାଧାନ୍ୟ ବିସ୍ତାର କରୁଥିଲେ । କାରଣ ଏହି ମାଛ ବେପାରୀମାନେ ପ୍ରତିଦିନ ବଡ଼ିଭୋର୍‌ରୁ ସାଇକେଲରେ ୫୬ କିଲୋମିଟର ବାଟ ଅତିକ୍ରମ କରି ବାଲେଶ୍ୱର ଯାଇ ସେଠାରୁ ଲୁଣିମାଛ ନେଇ ଅପରାହ୍ନରେ ବାରିପଦା ଫେରି ଆସୁଥିଲେ । ଦୀର୍ଘ ପଥ ସାଇକେଲ ଚାଳନାରେ ଅଭ୍ୟସ୍ତ ମାଛ ବେପାରୀମାନଙ୍କ ସହିତ ପ୍ରତିଦ୍ୱନ୍ଦିତା କରିବା ସହଜ ନଥିଲା । ଏହି ଅବସରରେ ପ୍ରତିବର୍ଷ ଗୋଟିଏ ମଜାର ପ୍ରତିଯୋଗିତା କରାଯାଉଥିଲା । ସେ ଖେଳକୁ କୁହାଯାଉଥିଲା 'ଟ୍ରେଜାରହାଣ୍ଟ' ବା 'ଗୁପ୍ତଧନ ସନ୍ଧାନ ।' ପ୍ରତିଯୋଗିତାର ପୂର୍ବରାତିରେ ଆୟୋଜକମାନେ ସହରର କେତୋଟି ଗୁପ୍ତସ୍ଥାନରେ ଇଂରାଜୀ ବର୍ଣ୍ଣମାଳାର ପ୍ରତି ଅକ୍ଷରରେ ଆରମ୍ଭ ହେଉଥିବା ଗୋଟିଏ ଶବ୍ଦ ଆଲକାତରାରେ ଲେଖି ରଖୁଥିଲେ । ପରଦିନ ମହାରାଜା ପ୍ୟରେଡ଼ ପରିଦର୍ଶନ କରିସାରିବା ପରେ ଗୁପ୍ତସ୍ଥାନଗୁଡ଼ିକର ସଙ୍କେତ ଦିଆଯାଇଥିବା ସୂଚନାପତ୍ର ଗୁଡ଼ିକ ବଣ୍ଟାଯାଉଥିଲା । ପ୍ରତିଯୋଗିମାନେ ସେହି ସଙ୍କେତକୁ ଅନୁସରଣ କରି ସହର ସାରା ବୁଲି ଗୁପ୍ତ ଶବ୍ଦଗୁଡ଼ିକୁ ଖୋଜି ସୂଚନା ପତ୍ରର ଚିହ୍ନିତ ସ୍ଥାନରେ ଉତ୍ତର ଲେଖି ପ୍ରତିଯୋଗୀତା କେନ୍ଦ୍ରରେ ଦାଖଲ କରୁଥିଲେ । ସଠିକ୍ ଉତ୍ତର ଦେଇଥିବା ସର୍ବପ୍ରଥମ ପ୍ରତିଯୋଗୀଙ୍କୁ ଶହେଟଙ୍କା ପୁରସ୍କାର ମିଳୁଥିଲା । ଚାଳିଶ ଦଶକରେ ଶହେ ଟଙ୍କାର କ୍ରୟ ଶକ୍ତିକୁ ବିଚାର କଲେ ଏହା ବେଶ ମୋଟା ଅଙ୍କର ପୁରସ୍କାର ଥିଲା । ତେଣୁ ବହୁ ପ୍ରତିଯୋଗୀ ଏ ଖେଳରେ ଭାଗନେଉଥିଲେ ।

ମହାରାଜାଙ୍କ ସ୍ୱନକ୍ଷତ୍ର ଉତ୍ସବର ସବୁଠାରୁ ଆକର୍ଷଣୀୟ ଅନୁଷ୍ଠାନ ଥିଲା ବାରିପଦା କ୍ଲବ ସଦସ୍ୟମାନଙ୍କ ଦ୍ୱାରା ଆୟୋଜିତ ନାଟକାଭିନୟ । ପ୍ରତିବର୍ଷ ଏ ଉପଲକ୍ଷେ ଗୋଟିଏ ନୂଆ ନାଟକ ମଞ୍ଚସ୍ଥ ହେଉଥିଲା । ସେଥିପାଇଁ ପ୍ରତିଯୋଗିତା ମାଧ୍ୟମରେ ନାଟକଟି ନିର୍ବାଚିତ କରାଯାଇ ନାଟ୍ୟକାରଙ୍କୁ ପୁରସ୍କୃତ କରାଯାଉଥିଲା । କେବଳ ମୟୂରଭଞ୍ଜ ଷ୍ଟେଟ ନୁହେଁ ସାରା ଓଡ଼ିଶାର ନାଟ୍ୟକାରମାନେ ଏହି ପ୍ରତିଯୋଗିତାରେ ଅଂଶ ଗ୍ରହଣ କରୁଥିଲେ । କେଉଁବର୍ଷ ଉପଯୁକ୍ତ ମୌଳିକ ନାଟକ ନ ମିଳିଲେ କୌଣସି ପ୍ରସିଦ୍ଧ ବଙ୍ଗଳା ନାଟକର

ଓଡ଼ିଆ ଅନୁବାଦ କରାଯାଇ ଅଭିନୀତ ହେଉଥିଲା । ପ୍ରତିବର୍ଷ ମହାରାଜା ମୂଳରୁ ଶେଷ ଯାଏ ବସି ଏହି ନାଟକାଭିନୟ ଦେଖି ଉପଭୋଗ କରୁଥିଲେ । ସେ ନାଟକ ସହିତ ହାସ୍ୟାଭିନୟ ଦେଖିବା ପାଇଁ ବିଶେଷ ଆଗ୍ରହ କରୁଥିଲେ । ଫାର୍ସ ଲେଖିବା ଭାର ପଡୁଥିଲା ବସନ୍ତ ଶତପଥୀଙ୍କ ଉପରେ । ବସନ୍ତ ବାବୁ ଜଣେ ଉଚ୍ଚକୋଟୀର ବ୍ୟଙ୍ଗକାର ଥିଲେ । ସେ ସମସାମୟିକ ସାମାଜିକ ଚଳଣି ଇତ୍ୟାଦି ଉପରେ ହାସ୍ୟରସ ଭରା ବିଦ୍ରୂପାତ୍ମକ ନାଟିକା ଲେଖୁଥିଲେ । ସେହି ହାସ୍ୟାଭିନୟ ଭାରି ଉପଭୋଗ୍ୟ ହେଉଥିଲା । ବସନ୍ତ ବାବୁ ଥିଲେ ମୟୂରଭଞ୍ଜ ଷ୍ଟେଟର ଲୋକ ସମ୍ପର୍କ ଅଧିକାରୀ ଓ ଭଞ୍ଜପ୍ରଦୀପର ସମ୍ପାଦକ । ଓଡ଼ିଶା ସହ ମୟୂରଭଞ୍ଜ ଷ୍ଟେଟର ମିଶ୍ରଣ ପରେ ସେ ଲୋକସମ୍ପର୍କ ବିଭାଗ ଛାଡ଼ି ଶିକ୍ଷା ବିଭାଗ ଅଧୀନରେ ଇଂରାଜୀ ଅଧ୍ୟାପକ ଚାକିରି ଗ୍ରହଣ କରିଥିଲେ । ପରବର୍ତ୍ତୀ କାଳରେ ବସନ୍ତ ଶତପଥୀ ନିଜକୁ ଜଣେ ବିଶିଷ୍ଟ କଥାକାର ଭାବେ ଓଡ଼ିଆ ସାହିତ୍ୟରେ ସୁପ୍ରତିଷ୍ଠିତ କରିପାରିଥିଲେ । ନାଟକଗୁଡ଼ିକରେ ବାରିପଦାର ବହୁ ବିଶିଷ୍ଟ ଲୋକମାନେ ଅଭିନୟ କରୁଥିଲେ । ସେମାନଙ୍କ ଭିତରେ ଏସ.ପି. ରାମଚନ୍ଦ୍ର ଦାଶ, ବ୍ୟାଙ୍କ ମ୍ୟାନେଜର ସୁରେଶ ଚନ୍ଦ୍ର ମିଶ୍ର, ଆଡ଼ଭୋକେଟ କୈଳାସ ଚନ୍ଦ୍ର ପତି, ଖେଳୁଆଡ଼ ବ୍ରଜସୁନ୍ଦର ଦାଶ ପ୍ରଭୃତି ପ୍ରଧାନ ଭୂମୀକା ଗ୍ରହଣ କରୁଥିଲେ । ସେତେବେଳେ ଅଭିନେତ୍ରୀମାନଙ୍କୁ ନେଇ ସୌଖିନ ନାଟକ କରିବା ପରମ୍ପରା ନଥିଲା । ତେଣୁ ପୁରୁଷ ମାନେ ନାରୀ ଚରିତ୍ର ଅଭିନୟ କରୁଥିଲେ । ସୁରେଶ ବାବୁ ଉମେଶ ମହାନ୍ତି, ଶରତ ବିନ୍ଧାଣୀ ପ୍ରଭୃତି ନାରୀ ଚରିତ୍ରର ଦକ୍ଷ ଅଭିନେତା ଥିଲେ । ସୁପ୍ରତିଷ୍ଠିତ ନାଟ୍ୟକାର ଆନନ୍ଦ ଶଙ୍କର ଦାସଙ୍କ ବାପା ଦୁର୍ଗାଶଙ୍କର ଦାସ ଜଣେ ବିଶିଷ୍ଟ କୌତୁକାଭିନେତା ଥିଲେ । ସାଧାରଣତଃ ବ୍ରଜବାବୁ ନାଟକଗୁଡ଼ିକୁ ନିର୍ଦ୍ଦେଶନା ଦେଉଥିଲେ । ସେ ନିଜେ ଜଣେ ଦକ୍ଷ ଚରିତ୍ରାଭିନେତା ଥିଲେ । ସ୍ୱନକ୍ଷତ୍ର ଉପଲକ୍ଷେ ଭାରି ଜାକ ଜମକରେ ଦୁଇଦିନ ନାଟକ ପରିବେଷଣ କରାଯାଉଥିଲା– ପ୍ରଥମ ଦିନ ସର୍ବସାଧାରଣଙ୍କ ପାଇଁ, ତା ପରଦିନ ମହାରାଜା ଓ ନିମନ୍ତ୍ରିତ ଅତିଥିମାନଙ୍କ ପାଇଁ ।

ମହାରାଜାଙ୍କ ସ୍ୱନକ୍ଷତ୍ର ଉପଲକ୍ଷେ ବାରିପଦା ସଙ୍ଗୀତ ସମାଜ ବାର୍ଷିକ ସଙ୍ଗୀତ ପ୍ରତିଯୋଗିତା କରୁଥିଲେ । ବାରିପଦା ସାହିତ୍ୟ ସମାଜ ମଧ୍ୟ ସାହିତ୍ୟ ସଭାର ଆୟୋଜନ କରୁଥିଲେ । ନାଚ ଗୀତ ହସ ଖୁସିରେ ବାରିପଦା ସହର ସାତଦିନ ପାଇଁ ଉତ୍ସବ ମୁଖର ହୋଇଉଠୁଥିଲା ।

ମହାରାଜାଙ୍କ ରାଜ୍ୟାଭିଷେକ ଉପଲକ୍ଷେ ରାଜବାଟିରେ ବିଶେଷ ଉତ୍ସବ ପାଳିତ ହେଉଥିଲା । ସେଦିନ ରାଜବାଟିରେ ଅନୁଷ୍ଠିତ ପୂଜା ହୋମ ଇତ୍ୟାଦି ଶେଷ ହେବାପରେ ମହାରାଜା ଔପଚାରିକ ରାଜକୀୟ ପୋଷାକ ପିନ୍ଧି ରାଜବାଟି ପ୍ରାଙ୍ଗଣରେ ପ୍ରଜାମାନଙ୍କୁ ଦର୍ଶନ ଦେଉଥିଲେ । ରାଜବାଟିର ଦରବାର ହଲରେ ଷ୍ଟେଟର ସବୁ ଗେଜେଟେଡ ଅଫିସର ଓ ବିଶିଷ୍ଟ ନାଗରିକ ମାନେ ଔପଚାରିକ ପୋଷାକ ପିନ୍ଧି ମହାରାଜାଙ୍କ ପ୍ରତି ସେମାନଙ୍କର ଆନୁଗତ୍ୟ ପ୍ରଦର୍ଶନ କରୁଥିଲେ । ଦରବାରରେ ଉପସ୍ଥିତ ହେବା ପାଇଁ ଔପଚାରିକ ପୋଷାକ ଥିଲା ଶେରଓ୍ୱାନି, ଚୁଡ଼ିଦାର ପାଇଜାମା ଓ ମୁଣ୍ଡରେ ପଗଡ଼ି । ରାତିରେ ଆମନ୍ତ୍ରିତ ଅତିଥିମାନଙ୍କ ପାଇଁ ରାଜବାଟିରେ ନୈଶ ଭୋଜିର ଆୟୋଜନ ହେଉଥିଲା ଓ ସେହି ଉପଲକ୍ଷେ ବାଈନାଚ ବି ହେଉଥିଲା ।

ରାଜବାଟିରେ ସୁନିଆ ଓ ପୁଷ୍ୟାଭିଷେକ ପ୍ରଭୃତି ପର୍ବ ମଧ୍ୟ ପାଳନ କରାଯାଉଥିଲା । ସୁନିଆ ଦିନ ରାଜବାଟିର ବହିଃ ପ୍ରାଙ୍ଗଣରେ ଗୋବରା ଚଢ଼େଇ ଲଢ଼େଇ ହେଉଥିଲା । ଲଢ଼େଇ ଉଦ୍ଦେଶ୍ୟରେ ଅଣ୍ଡିରା ଗୋବରା ଚଢ଼େଇ ପୋଷିଥିବା ଲୋକମାନେ ସେମାନଙ୍କ ପୋଷା ଚଢ଼େଇ ସହିତ ରାଜବାଟିକୁ ଆସୁଥିଲେ । ତାର ଯୋଡ଼ିଦାର ଠିକ୍ କରିବା ପରେ ଲଢ଼େଇର ଆୟୋଜନ ହେଉଥିଲା । ଗୋଡ଼ରେ ସୂତାବାନ୍ଧି ଲଢୁଆ ଗୋବରା ଚଢ଼େଇ ଗୁଡ଼ିକୁ ସେମାନଙ୍କ ମାଲିକମାନେ ନିଜ ହାତ ଆଙ୍ଗୁଠିରେ ବସାଇ ରଖୁଥିଲେ । ଦୁଇଟି ପ୍ରତିଦ୍ୱନ୍ଦୀ ଗୋବରାଙ୍କୁ ମୁହାଁମୁହିଁ କଲାମାତ୍ରେ ସେଗୁଡ଼ିକ ଖୁମ୍ପା ଖୁମ୍ପି ହୋଇ ଲଢ଼ିବା ଆରମ୍ଭ କରିଦେଉଥିଲେ । କେତେ ସମୟ ଲଢ଼େଇ କରିବା ପରେ ଯେଉଁ ଚଢ଼େଇଟି ଥକିଯାଇ ବା ଆଘାତ ପାଇ ଲଢ଼େଇରୁ ଓହରି ଯାଉଥିଲା ସେ ହାରୁଥିଲା ।

ପ୍ରତିବର୍ଷ ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କ ବାର୍ଷିକ ଶ୍ରାଦ୍ଧ ଉପଲକ୍ଷେ ତାଙ୍କ ସମାଧି ମନ୍ଦିରରେ ବିଶେଷ ପୂଜାର୍ଚ୍ଚନା ଓ ପ୍ରାର୍ଥନା ସଭା ହେଉଥିଲା । ସେହି ଉପଲକ୍ଷେ ଗୋଟିଏ ବିଶାଳ ଦରିଦ୍ର ନାରାୟଣ ସେବା ଓ ବାଳଭୋଜନର ଆୟୋଜନ କରାଯାଉଥିଲା ।

ରାଜବାଟିରେ ପାଳନ କରାଯାଉଥିବା ସବୁ ଉତ୍ସବ ଭିତରେ ସର୍ବ ପ୍ରଧାନ ଥିଲା ଚୈତ୍ରପର୍ବ । ସେହି ଉପଲକ୍ଷେ ରାଜବାଟିରେ ଛଉନାଚ ହେଉଥିଲା । ବାରିପଦା ତଥା ମୟୂରଭଞ୍ଜର ଲୋକମାନେ ଛଉନାଚ ଦେଖିବା ପାଇଁ ସାରାବର୍ଷ ଅଧିର ଆଗ୍ରହରେ ଅପେକ୍ଷା କରି ରହୁଥିଲେ । ବାରିପଦା

ଛଉ ନାଚ ଆଜି ବିଶ୍ୱପ୍ରସିଦ୍ଧ ହୋଇ ଭାରତୀୟ ସାଂସ୍କୃତିକ କ୍ଷେତ୍ରରେ ନିଜକୁ ସୁପ୍ରତିଷ୍ଠିତ କରିପାରିଛି ।

ଛଉନାଚର ଉତ୍ପତ୍ତି ଓ ବିକାଶ ସମ୍ପର୍କରେ ଅନେକ ଲୋକଙ୍କ ମନରେ କେତେକ ଭ୍ରାନ୍ତ ଧାରଣା ରହିଛି । କେତେକ ଭାବନ୍ତି ଛାଉଣୀରୁ ଛଉ ନାଚର ଉତ୍ପତ୍ତି ହୋଇଚି । ଛାଉଣୀ ଅର୍ଥାତ୍ ସୈନ୍ୟ ଶିବିରରେ ଅବସର ସମୟରେ ମୟୂରଭଞ୍ଜର ପାଇକମାନେ ଏହି ନାଚ ନାଚୁଥିଲେ । ପରବର୍ତ୍ତୀ ସମୟରେ ସେହି ନାଚ ସାଂସ୍କୃତିକ କ୍ଷେତ୍ରକୁ ଆସି ନିଜକୁ ପ୍ରତିଷ୍ଠିତ କରିପାରିଥିଲା । ସ୍ୱର୍ଗତ ରାଧାମୋହନ ମହାନ୍ତି ଦୀର୍ଘଦିନ ଗବେଷଣା କରି ଲେଖିଥିବା ମୟୂରଭଞ୍ଜ ଛଉର ଉତ୍ପତ୍ତି ବିକାଶ ଓ ବ୍ୟାକରଣ ସମ୍ପର୍କୀୟ ପୁସ୍ତକରେ ଲେଖିଛନ୍ତି ଯେ ଛାଉଣୀ ଓ ଛଉ ଭିତରେ ଉଚ୍ଚାରଣଗତ ସାଦୃଶ୍ୟ ଥିବା ସତ୍ତ୍ୱେ ଛାଉଣୀରୁ ଛଉନାଚର ଉତ୍ପତ୍ତି ହୋଇନଥିଲା । ପୂର୍ବକାଳରେ ଆଜିକାଲିପରି ସୈନ୍ୟ ଶିବିର ବା କ୍ୟାନଟନ୍‌ମେଣ୍ଟରେ ଓଡ଼ିଶାର ପାଇକମାନେ ରହୁନଥିଲେ । ପାଇକମାନେ ଜାଗିରି ଭୋଗକରୁଥିଲେ ଓ ଚାଷବାଷ କରି ଚଳୁଥିଲେ । ଯୁଦ୍ଧ ସମୟରେ ଡକରା ପାଇ ସେମାନେ ଢାଲ, ତରୁଆଲ ଧରି ଯୁଦ୍ଧ କ୍ଷେତ୍ରକୁ ବାହାରି ପଡୁଥିଲେ । ଚାଷବାସ ଅବସରରେ ସେମାନେ ପାଇକ ଆଖଡ଼ାରେ ଶରୀର ଚର୍ଚ୍ଚା କରୁଥିଲେ ଓ ଯୁଦ୍ଧ ବିଦ୍ୟା ଅନୁଶୀଳନ କରୁଥିଲେ । କୌଣସି ପାଇକର ଛଉପରି ଗୋଟିଏ ଆୟାସ ସାଧ୍ୟ ନାଚ ଶିଖି ତାହା ଅନୁଶୀଳନ କରିବା ପରି ସମୟ ନଥିଲା । ଛଉନାଚ ସହିତ ଦୀର୍ଘଦିନ ଅନ୍ତରଙ୍ଗ ଭାବେ ସଂପୃକ୍ତ ରହିଥିବା ସ୍ୱର୍ଗତ ମହାନ୍ତିଙ୍କ ମତରେ ଛଉନାଚ ଗୋଟିଏ ଧର୍ମୀୟ ସାମାଜିକ ଅନୁଷ୍ଠାନ । ଭାରତବର୍ଷର ସବୁ ନୃତ୍ୟକଳା ପରି ଛଉନାଚ ମଧ୍ୟ ଧର୍ମାନୁଷ୍ଠାନରୁ ସୃଷ୍ଟ । ଏହା ଚୈତ୍ରପର୍ବର ଗୋଟିଏ ଅଙ୍ଗ । ପଣା ସଂକ୍ରାନ୍ତି ଦିନ ସୌର ବର୍ଷ ପ୍ରାରମ୍ଭରେ କୃଷିଋତୁକୁ ସ୍ୱାଗତ କରିବା ପାଇଁ ଚୈତ୍ରମାସର ଶେଷ ପାଦରେ ଏହି ପର୍ବ ପାଳନ କରାଯାଇ ଓଡ଼ିଆ ନବବର୍ଷରେ ଉଦ୍‌ଯାପିତ ହୋଇଥାଏ । ଚୈତ୍ରମାସରେ ଶିବଭକ୍ତ ଭକ୍ତାମାନେ ଏହି ବ୍ରତପାଳନ କରନ୍ତି । ନିଜକୁ ଶାରୀରିକ କଷ୍ଟ ଦେବା ଏହି ବ୍ରତର ଗୋଟିଏ ଅଙ୍ଗ । ସେହି ଉପଲକ୍ଷେ ଭକ୍ତାମାନେ ନିଆଁରେ ଚାଲି, କଣ୍ଟାଶେଯରେ ଗଡ଼ି କିମ୍ୱା ଉଚ୍ଚ ଖମ୍ବ ଉପରେ ବନ୍ଧା ଯାଇଥିବା ଦଣ୍ଡାରୁ ଓହଳି ଏହିବ୍ରତ ପାଳନ କରୁଥିଲେ । ଏହାକୁ ନିଆଁପାଟ, କଣ୍ଟାପାଟ, ଉଡ଼ା କୁହାଯାଉଥିଲା ଓ ଏହା ରାଜବାଟି ସମ୍ମୁଖରେ ଅନୁଷ୍ଠିତ ହେଉଥିଲା । ଚୈତ୍ରମାସର ଶେଷ ଦୁଇ ରାତିରେ ରାଜବାଟି

ପ୍ରାଙ୍ଗଣରେ ଖୁବ୍ ଜାକଜମକରେ ଛଉ ନାଚ ହେଉଥିଲା । ରାଜବାଟିର ପ୍ରଶସ୍ତ ଅଙ୍ଗନରେ ମାଟି ବିଛାଯାଇ ଆସର ପ୍ରସ୍ତୁତ ହେଉଥିଲା। ତା ଆଗରେ ଥିବା ମଣ୍ଡପରେ ମହାରାଜା, ତାଙ୍କ ଆତ୍ମୀୟ ସ୍ୱଜନ ଓ ଆମନ୍ତ୍ରିତ ହୋଇ ଅନ୍ୟାନ୍ୟ ଦେଶୀୟ ରାଜ୍ୟରୁ ଆସିଥିବା ରାଜକୀୟ ଅତିଥି ମାନଙ୍କ ଗହଣରେ ବସି ନାଚ ଦେଖୁଥିଲେ । ରାଜବାଟିର ପ୍ରଶସ୍ତ ପ୍ରାଙ୍ଗଣ ଜନ ସମୁଦ୍ରରେ ପରିଣତ ହୋଇଯାଉଥିଲା । ସେହି ପ୍ରାଙ୍ଗଣକୁ ଘେରି ରହିଥିବା ରାଜପ୍ରାସାଦର ଦୋତାଲା ବାରଣ୍ଡାରେ ସ୍ତ୍ରୀ ଲୋକମାନେ ବସି ନାଚ ଦେଖୁଥିଲେ । ସେହି ବାରଣ୍ଡାରେ ମହାରାଣୀ ଓ ରାଜପରିବାରର ଅନ୍ୟାନ୍ୟ ମହିଳା ମାନଙ୍କର ବସିବା ପାଇଁ ସ୍ଥାନ ନିର୍ଦ୍ଦିଷ୍ଟ ହୋଇ ରହୁଥିଲା । ରାତି ଦଶଟାରୁ ଆରମ୍ଭ ହୋଇ ଏହି ନୃତ୍ୟୋତ୍ସବ ସାରା ରାତି ଚାଲି ବଢ଼ି ଭୋର୍‌ରୁ ଶେଷ ହେଉଥିଲା । ହଜାର ହଜାର ଲୋକ ବିନିଦ୍ର ରହି ସେହି ନାଚକୁ ଉପଭୋଗ କରୁଥିଲେ ।

ଛଉନାଚ ଗୋଟିଏ ଧରଣର ଲୋକନୃତ୍ୟ । ଏକ ଧର୍ମୀୟ ସାମାଜିକ ପୃଷ୍ଠଭୂମିରୁ ଏହାର ଉତ୍ପତ୍ତି । ମୟୂରଭଞ୍ଜ ଷ୍ଟେଟର ନିକଟବର୍ତ୍ତୀ ବିହାରର ସିଂହଭୂମ୍, ଷଢ଼େଇକଲା, ଖରସୂଆଁ, ପଶ୍ଚିମବଙ୍ଗର ପୁରୁଲିଆ ଓ ଓଡ଼ିଶାର କେତେକ ଗଡ଼ଜାତ ଅଞ୍ଚଳରେ ଏହି ନାଚର ଅଧିକ ପ୍ରଚଳନ ଦେଖାଯାଏ । ଛଉନାଚ ଦଣ୍ଡନାଚର ସମଗୋତ୍ରୀୟ । ଏହି ନାଚ ଚୈତ୍ରପର୍ବର ଗୋଟିଏ ଅଙ୍ଗ ଭାବେ ବିବେଚିତ ହେଉଥିଲେ ମଧ୍ୟ ପୂର୍ବେ ବାରିପଦାରେ ଏହି ନାଚ ହେଉନଥିଲା । ଚୈତ୍ରପର୍ବ ଉପଲକ୍ଷେ ରାଜବାଟିରେ ରାମଲୀଳା ଅଭିନୀତ ହେଉଥିଲା । କିନ୍ତୁ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ପିତା କୃଷ୍ଣଚନ୍ଦ୍ର ଭଞ୍ଜଙ୍କ ରାଜତ୍ୱ କାଳରେ(୧୮୬୨-୧୮୮୨) ବାରିପଦାରେ ଏହି ନାଚ ଆରମ୍ଭ କରାଯାଇଥିଲା । ସେଥିପାଇଁ ଷଢ଼େଇକଳାରୁ ଦୁଇଜଣ ଓସ୍ତାଦ ବା ଗୁରୁ ଅଣାଯାଇ ଦୁଇଟି ନାଚ ଦଳ କରି ନାଟୁଆ ପିଲାଙ୍କୁ ତାଲିମ ଦିଆଯାଇଥିଲା । ମହାରାଜା ଶ୍ରୀରାମଚନ୍ଦ୍ର ଓ ତାଙ୍କ ଅନ୍ତେ ପ୍ରତାପଚନ୍ଦ୍ରଙ୍କ ରାଜତ୍ୱ କାଳରେ ଉଦାର ରାଜକୀୟ ପୃଷ୍ଠପୋଷକତା ଲାଭ କରି ଏହି ନୃତ୍ୟକଳାର ଅଭୂତପୂର୍ବ ବିକାଶ ହୋଇଥିଲା । ମୁଖା ବ୍ୟବହାର ଛଉ-ନାଚ ଶୈଳୀର ଗୋଟିଏ ମୁଖ୍ୟ କଥା । ଷଢ଼େଇକଳା ଓ ପୁରୁଲିଆ ଛଉରେ ମୁଖା ବ୍ୟବହାର କରାଯାଏ । କିନ୍ତୁ ବାରିପଦା ଛଉରୁ ମୁଖାର ବ୍ୟବହାର ଉଠାଇ ଦିଆଯାଇ ଏହି ନୃତ୍ୟଶୈଳୀକୁ ଆଧୁନିକ କରଣ କରିବା ପାଇଁ ଚେଷ୍ଟା କରାଯାଇଥିଲା । ଛଉନାଚରେ ଶାସ୍ତ୍ରୀୟ ନୃତ୍ୟଭଙ୍ଗୀ ଓ ସଙ୍ଗୀତର ବ୍ୟବହାରର ଅନୁପ୍ରବେଶ ଘଟିଥିଲା । ବାରିପଦା

ଛଉର ମୂଳଉସ ଷଢ଼େଇକଳା ଛଉ ହୋଇଥିଲେ ମଧ୍ୟ ବାରିପଦା ଲୋକମାନେ ସେମାନଙ୍କ ଛଉକୁ ଉତ୍କୃଷ୍ଟତର ବୋଲି ଭାବୁଥିଲେ ଓ ବାରିପଦା ଛଉର କୌଣସି ବିରୂପ ସମାଲୋଚନା ସହ୍ୟ କରିବାକୁ ପ୍ରସ୍ତୁତ ନଥିଲେ ।

ବାରିପଦା ଛଉର ଦୁଇଟି ଦଳ ଉତ୍ତର ସାହି ଓ ଦକ୍ଷିଣ ସାହି ନାମରେ ପରିଚିତ ଥିଲେ । ରାଜବାଟିର ଉତ୍ତରରେ ଥିବା ବାରିପଦାର ସବୁ ଅଧିବାସୀ ଉତ୍ତର ସାହିର ସମର୍ଥକ ଥିବାବେଳେ ରାଜବାଟିର ଦକ୍ଷିଣରେ ଥିବାଲୋକମାନେ ଦକ୍ଷିଣ ସାହିର ସମର୍ଥକ ଥିଲେ । ପ୍ରତିବର୍ଷ ଦୁଇ ସାହି ମଧ୍ୟରେ ପ୍ରତିଦ୍ୱନ୍ଦିତା ହେଉଥିଲା ଓ ମହାରାଜା ଉଭୟ ଦଳର ସବୁ ନାଚଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବେ ବିଚାର କରି ଗୋଟିଏ ଦଳକୁ ବିଜୟୀ ଘୋଷଣା କରି ପୁରସ୍କୃତ କରୁଥିଲେ । ଦୁଇସାହି ଭିତରର ପ୍ରତିଦ୍ୱନ୍ଦିତା ସେମାନଙ୍କ ସମର୍ଥକମାନଙ୍କ ଭିତରେ ବିବାଦରେ ପରିଣତ ହୋଇଯାଉଥିଲା । ମହାରାଜା ପ୍ରତାପଚନ୍ଦ୍ର ଛଉନାଚର ଜଣେ ସମଝଦାର ଦର୍ଶକ ଥିଲେ । ତେଣୁ ତାଙ୍କ ବିଚାର ସମସ୍ତଙ୍କ ଶୀରୋଧାର୍ଯ୍ୟ ଥିଲା । ଥରେ ଦକ୍ଷିଣ ସାହିର କୃଷ୍ଣଚନ୍ଦ୍ର ନାଏକ ନାମକ ଜଣେ ଅଭିଜ୍ଞ ଓ କୁଶଳୀ ନୃତ୍ୟଶିଳ୍ପୀ ନିଜର କିଛି ଆପତ୍ତି ସାହିର ମ୍ୟାନେଜରଙ୍କ ଜରିଆରେ ମହାରାଜାଙ୍କୁ ଜଣାଇଥିଲେ । ଛଉନାଚ ପୂର୍ବରୁ ସେହି ଆପତ୍ତିର ବିଚାର ନହେବାରୁ କୃଷ୍ଣ ଟିକିଏ ଅମନଯୋଗୀ ହୋଇ ନାଚିଥିଲେ ଓ ଗୋଟିଏ ଦୁଇଟି ଜାଗାରେ ତାଳ ଭାଙ୍ଗି ଦେଇଥିଲେ । ଏହି ତ୍ରୁଟି ମହାରାଜାଙ୍କ ଦୃଷ୍ଟି ଏଡ଼ାଇ ନଥିଲା । ସେ ତା ପରଦିନ କୃଷ୍ଣକୁ ଡକାଇ ନିଜର ଅସନ୍ତୋଷ ବ୍ୟକ୍ତ କରିବା ସହିତ ତାଙ୍କୁ ରାଜ୍ୟରୁ ବହିଷ୍କାର ଆଦେଶ ଦେଇଥିଲେ । ମହାରାଜାଙ୍କର ଏହି ଦଣ୍ଡାଦେଶ କୃଷ୍ଣ ନାଏକଙ୍କ ପ୍ରତି ବର ସଦୃଶ ହୋଇଥିଲା । ସେ ତୁରନ୍ତ କଲିକତା ଯାଇ ସେଠାରେ ବିଖ୍ୟାତ ଷ୍ଟାର ଥିଏଟରର ଜଣେ ନୃତ୍ୟଶିଳ୍ପୀ ଭାବେ ବହୁ ଅଧିକ ଦରମାରେ କାମ ପାଇ ଯାଇଥିଲେ । ଏହାପରେ ସେ ଦିଲ୍ଲୀରେ ନିଜର ଗୋଟିଏ ଛଉନୃତ୍ୟ ଶିକ୍ଷା ପ୍ରତିଷ୍ଠାନ ସ୍ଥାପନ କରିଥିଲେ ଓ ବହୁ ଛାତ୍ର ଛାତ୍ରୀଙ୍କୁ ଛଉନୃତ୍ୟ ଶିକ୍ଷାଦେଇ ଜଣେ ବିଶିଷ୍ଟ ଗୁରୁ ଭାବେ ଜାତୀୟ ସ୍ତରରେ ସମ୍ମାନିତ ହୋଇପାରିଥିଲେ ।

ବାରିପଦା ଛଉର ଦୁଇଟିଯାକ ଦଳକୁ ଦୁଇଜଣ ବରିଷ୍ଠ ଷ୍ଟେଟ ଅଫିସରଙ୍କ ଦାୟିତ୍ୱରେ ରଖାଯାଇଥିଲା । ସେମାନଙ୍କୁ କୁହାଯାଉଥିଲା ମ୍ୟାନେଜର । ଉତ୍ତରସାହିର ମ୍ୟାନେଜର ଥିଲେ ମୟୂରଭଞ୍ଜ ଷ୍ଟେଟ୍‌ର ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ ରାମଚନ୍ଦ୍ର ଦାଶ । ଲୋକମାନେ ତାଙ୍କୁ ରାମବାବୁ କିମ୍ବା

ପୋଲିସ ସାହେବ ବୋଲି ସମ୍ବୋଧନ କରୁଥିଲେ । ପରବର୍ତ୍ତୀ କାଳରେ ସେ ଓଡ଼ିଶା ପୋଲିସ ବିଭାଗର ସର୍ବମୟ କର୍ତ୍ତା ଆଇ:ଜି. ପଦବୀକୁ ପଦୋନ୍ନତି ପାଇଥିଲେ ଓ ଅବସର ଗ୍ରହଣ ପରେ ରେଲଓ୍ୱେ ସର୍ଭିସ୍ କମିଶନର ଚେୟାରମ୍ୟାନ ହୋଇଥିଲେ । ରାମବାବୁ ଦୀର୍ଘ ଦେହୀ ଓ ସୁପୁରୁଷ ଥିଲେ । ସେ ମୟୂରଭଞ୍ଜ ଷ୍ଟେଟର ପୋଲିସ୍ ସାହେବ କାର୍ଯ୍ୟ କରିବା ସହିତ ମହାରାଜାଙ୍କର ଏଡିସିବା ଅଙ୍ଗରକ୍ଷୀ ମଧ୍ୟ ଥିଲେ । ସେ ଜଣେ ଉଚ୍ଚକୋଟୀର ମଞ୍ଚ ଅଭିନେତା ଥିଲେ ।

ଦକ୍ଷିଣ ସାହିର ମ୍ୟାନେଜର ଥିଲେ ବ୍ୟାଙ୍କ ମ୍ୟାନେଜର ସୁରେଶ ଚନ୍ଦ୍ର ମିଶ୍ର । ଛାତ୍ର ଜୀବନରେ ସୁରେଶବାବୁ ଜଣେ ମେଧାବୀ ଛାତ୍ର ଥିଲେ । ସେ ଅର୍ଥନୀତି ଅନର୍ସ ସହ ବି.ଏ. ଓ ବି.ଏଲ. ପାଶ୍ କରି ପାଟଣା ଠାରେ ଏମ.ଏ. ପଢୁଥିଲେ । ସେ ସମୟରେ ମହାରାଜା ମୟୂରଭଞ୍ଜ ଷ୍ଟେଟବ୍ୟାଙ୍କ ପ୍ରତିଷ୍ଠା କରିବା ପାଇଁ ଯୋଜନା କରି ତା ଦାୟିତ୍ୱ ସୁରେଶ ବାବୁଙ୍କୁ ଦେବାପାଇଁ ସ୍ଥିର କରିଥିଲେ । ବ୍ୟାଙ୍କିଂ ଟ୍ରେନିଂ ନେବା ପାଇଁ ମହାରାଜା ତାଙ୍କୁ ବମ୍ବେ ଓ ପୁନାକୁ ପଠାଇଥିଲେ । ମିଷ୍ଟର ସେନ୍‌ଗୁପ୍ତ ବୋଲି ୟୁକୋ ବ୍ୟାଙ୍କର ଜଣେ ବରିଷ୍ଠ ମ୍ୟାନେଜରଙ୍କୁ ଧାରସୂତ୍ରରେ ଆଣି ମୟୂରଭଞ୍ଜ ଷ୍ଟେଟ୍ ବ୍ୟାଙ୍କ ପ୍ରତିଷ୍ଠା ହୋଇଥିଲା । ସୁରେଶ ବାବୁ ତାଲିମ ଶେଷକରି ତାଙ୍କ ଅଧୀନରେ ସହକାରୀ ବ୍ୟାଙ୍କ ମ୍ୟାନେଜର ଭାବେ କର୍ମଜୀବନ ଆରମ୍ଭ କରିଥିଲେ ଓ ବର୍ଷକ ପରେ ମିଃ. ସେନଗୁପ୍ତଙ୍କ ଠାରୁ ମ୍ୟାନେଜର ଦାୟିତ୍ୱ ଗ୍ରହଣ କରିଥିଲେ । ସେ ଏହି ବ୍ୟାଙ୍କର ପ୍ରଭୂତ ଉନ୍ନତି ସାଧନ କରିଥିଲେ । ବ୍ୟାଙ୍କର ଲାଭର ପରିମାଣ ଦେଖି ମହାରାଜା ସୁରେଶବାବୁଙ୍କୁ ଉଚ୍ଚ ଦରମାରେ ବ୍ୟାଙ୍କର ଜେନେରାଲ ମ୍ୟାନେଜର ଭାବେ ପଦୋନ୍ନତି ଦେଇଥିଲେ । ଇମ୍ପରିଆଲ ବ୍ୟାଙ୍କ (ପରବର୍ତ୍ତୀ କାଳରେ ଭାରତୀୟ ଷ୍ଟେଟ୍ ବ୍ୟାଙ୍କ)କୁ ଛାଡ଼ିଦେଲେ ମୟୂରଭଞ୍ଜ ଷ୍ଟେଟ ବ୍ୟାଙ୍କ ଥିଲା ଓଡ଼ିଶାର ଏକମାତ୍ର ବାଣିଜ୍ୟିକ ବ୍ୟାଙ୍କ । ଓଡ଼ିଶା ସହ ମୟୂରଭଞ୍ଜର ମିଶ୍ରଣ ହେବାପରେ ମୟୂରଭଞ୍ଜ ଷ୍ଟେଟ ବ୍ୟାଙ୍କ ଭାରତୀୟ ଷ୍ଟେଟ ବ୍ୟାଙ୍କ ସହିତ ମିଶି ଯାଇଥିଲା ଓ ସୁରେଶବାବୁ ଉକ୍ତ ବ୍ୟାଙ୍କର ଜଣେ ଉଚ୍ଚପଦସ୍ଥ ଅଫିସର ଭାବେ କାର୍ଯ୍ୟକରି ଅବସର ଗ୍ରହଣ କରିଥିଲେ । ସେ ଜଣେ ଉଚ୍ଚକୋଟିର କଳାକାର ଥିଲେ । ମଞ୍ଚରେ ନାରୀ ଭୂମିକାରେ ସେ ନିପୁଣ ଭାବେ ଅଭିନୟ କରିପାରୁଥିଲେ । ସେ ମଧ୍ୟ ଜଣେ ଦକ୍ଷ କଣ୍ଠ ସଙ୍ଗୀତ ଶିଳ୍ପୀଥିଲେ । ତାଙ୍କ କନ୍ୟା ଇନ୍ଦ୍ରାଣୀ ମିଶ୍ର ଓ ଭଣଜା ଶାନ୍ତନୁ ମହାପାତ୍ର ଓ

ଦେବାଶୀଷ ମହାପାତ୍ର ଓଡ଼ିଶାର ବିଶିଷ୍ଟ କଣ୍ଠ ଶିଳ୍ପୀ ଭାବେ ପରିଚିତ । ବିଶିଷ୍ଟ ଗୀତିକାର ଓ ଭାରତୀୟ ନାଟ୍ୟକଳାର ସୁପରିଚିତ ଗବେଷକ ଜୀବନ ପାଣି ମଧ୍ୟ ତାଙ୍କର ଅନ୍ୟତମ ଭଣଜା ।

ଛଉନାଚ ଆସରରେ ଜାଗା କରି ନାଚ ଦେଖିବା ଗୋଟିଏ କଷ୍ଟକର ବ୍ୟାପାର ଥିଲା । ତଥାପି ହଜାର ହଜାର ଲୋକ ଛଉ ଦେଖିବା ପାଇଁ ରାଜବାଟିକୁ ଯାଉଥିଲେ । ଅନେକ ସେ ଭିଡ଼ ଭିତରେ ଠେଲାପେଲା ହୋଇ ଲାଭ କ'ଣ ଭାବି ଛଉନାଚ ଦେଖିବାକୁ ନଯାଇ ଘରେ ରହିଯାଉଥିଲେ । ଛଉନାଚ ଆରମ୍ଭ ହେବା ପୂର୍ବରୁ ଧୁମ୍‌ସାରେ ବାଡ଼ିକୁ କ୍ଷୀପ୍ର ଭାବେ ଚଳାଇ ଗୁଡ଼ୁ ଗୁଡ଼ୁ ଶବ୍ଦ କରି ଗୁଡ଼ୁ ଗୁଡ଼ି ବାଜୁଥିଲା । ଗୁଡ଼ୁଗୁଡ଼ି ବଜାଇ ଛଉନାଚ ଆରମ୍ଭ ହେବାର ସଙ୍କେତ ଦିଆଯାଉଥିଲା । ତାପରେ ବାଜୁଥିଲା ରଙ୍ଗବାଜା-ମହୁରୀର ସୁସ୍ୱର ଲହରୀ ସହିତ ଢୋଲର ତାଳବାଦ୍ୟ । ଏହା ହେଉଛି ଛଉନାଚର ପ୍ରସ୍ତାବନା ସଙ୍ଗୀତ । ସାରା ବାରିପଦା ସହରକୁ ଶୁଭୁଥିଲା ଛଉର ଗୁଡ଼ୁ ଗୁଡ଼ି ଓ ରଙ୍ଗବାଜା । ସେହି ବାଦ୍ୟ ଐକତାନ ନିଦାଘ ରାତ୍ରିର ନିସ୍ତରଙ୍ଗ ବାୟୁମଣ୍ଡଳକୁ ଚଳ ଚଞ୍ଚଳ କରି ଦେଉଥିଲା, ନିଦ ହରିନେଉଥିଲା ଲୋକଙ୍କ ଆଖିରୁ । ଛଉନାଚ ଦେଖି ନ ଯିବାପାଇଁ ସଂକଳ୍ପ କରିଥିବା ଲୋକ ବି ଛଉର ବାଜା ଶୁଣି ସମ୍ମୋହିତ ପରି ବିଛଣାରୁ ଉଠି ଛଉନାଚ ଆସର ଆଡ଼େ ଟାଣିହୋଇ ଚାଲି ଯାଉଥିଲା ।

ଛଉନାଚର ଛ ମାସ ପୂର୍ବରୁ ଏହାର ପୂର୍ବାଭ୍ୟାସ ଆରମ୍ଭ ହେଉଥିଲା । ଏହାକୁ କୁହାଯାଉଥିଲା ଆଖଡ଼ା । ଦୁଇ ସାହି ଯଥାସାଧ୍ୟ ଗୋପନୀୟତା ରକ୍ଷା କରି ସେମାନଙ୍କ ଆଖଡ଼ାରେ ନାଚ ଅଭ୍ୟାସ କରୁଥିଲେ । ପ୍ରତିବର୍ଷ ନୂଆନାଚ ଯୋଗୁ ପ୍ରତିଦ୍ୱନ୍ଦିତାରେ ବେଶି ନମ୍ବର ମିଳୁଥିଲା । ଯଦି କୌଣସି ସାହିର ନୂଆନାଚ ବିଷୟ ଜଣା ପଡ଼ିଯାଉଥିଲା ଆର ସାହିବାଲା ତାକୁ ଟକ୍କର ଦେବାଭଳି ନୂଆନାଚର ସଂଯୋଜନା କରିଦେଉଥିଲେ । ତେଣୁ ସେ ବିଷୟରେ ଗୋପନୀୟତାର ଆବଶ୍ୟକତା ରହିଥିଲା । ଦଶହରା ଦିନ ଆଖଡ଼ାର ଶୁଭାରମ୍ଭ ହେଉଥିଲା । ଛଉରେ ନାଚୁଥିବା ଶିଳ୍ପୀମାନେ ସ୍ୱଳ୍ପ ଶିକ୍ଷିତ ଓ ନିମ୍ନ ଆୟକାରୀ ବର୍ଗର ଥିଲେ । ସେମାନେ ଜୀବିକା ପାଇଁ ସରକାରି ଅଫିସରେ ପିଅନ, ଡ୍ରାଇଭର କିମ୍ବା ରାଜବାଟିରେ ପରିଚାରକ ଭାବେ କାମ କରୁଥିଲେ କିମ୍ବା ମାଛ ଓ ପରିବା ବିକିବା ଭଳି ଛୋଟ ଛୋଟ ବ୍ୟବସାୟ କରୁଥିଲେ । ସେତେବେଳର ଛଉ ଶିଳ୍ପୀମାନଙ୍କ ଭିତରେ ଉତ୍ତର ସାହିର ମଦନ ଲେଙ୍କା

ପ୍ରସନ୍ନ ଦାସ, ଶ୍ରୀହରି ନାୟକ ଓ ଦକ୍ଷିଣ ସାହିର ଚନ୍ଦ୍ରମୋହନ ଭଞ୍ଜବାବୁ କୃଷ୍ଣଚନ୍ଦ୍ର ନାଏକ, ଶମ୍ଭୁ ନାଏକ ଇତ୍ୟାଦିଙ୍କ କଥା ଆଜି ମନେପଡୁଚି । ଛଉରେ ଝିଅମାନେ ନାଚୁନଥିଲେ । ପୁଅପିଲାମାନେ ନାରୀ ଭୂମିକା ଗୁଡ଼ିକରେ ନାଚୁଥିଲେ । କୁହାଯାଉଥିଲା ଏହା କଷ୍ଟସାଧ୍ୟ ନାଚ ହୋଇଥିବାରୁ ଝିଅମାନେ ନାଚି ପାରିବେ ନାହିଁ । କଥାଟା ବୋଧହୁଏ ସତ ନୁହେଁ, କାରଣ ବର୍ତ୍ତମାନ ବହୁତ ଝିଅ ଛଉନାଚ ଶିଖି ନାଚିବା ଆରମ୍ଭ କରିଦେଲେଣି ଓ ସେମାନଙ୍କ ନାଚ ବେଶି ମନୋଗ୍ରାହୀ ହେଉଚି । ଷାଠିଏ ମସିହାରେ ସୁମିତ୍ରା ବୋଲି ଜଣେ ହରିଜନ ଝିଅ ପ୍ରଥମେ ଛଉରେ ନାଚିବା ଆରମ୍ଭ କରିଥିଲା କିନ୍ତୁ ସେତେବେଳେ ଅନ୍ୟ ଝିଅମାନେ ନାଚିବାକୁ ବାହାରି ନଥିଲେ । ସୁମିତ୍ରାକୁ ବ୍ୟବସାୟୀ ଥିଏଟରରେ ଅଭିନେତ୍ରୀ ହେବାପାଇଁ ଆମନ୍ତ୍ରଣ ଆସିଯିବାରୁ ସେ ଛଉ ଛାଡ଼ି ଚାଲିଗଲା ।

ମୟୂରଭଞ୍ଜ ଷ୍ଟେଟର ଓଡ଼ିଶା ସହିତ ମିଶ୍ରଣ ହୋଇଯିବା ପରେ ଛଉନାଚ ପ୍ରତି ରାଜ ପୃଷ୍ଠପୋଷକତା ବନ୍ଦ ହୋଇଯାଇଥିଲା । ବିନା ଅନୁଦାନରେ ଛଉନାଚ ଭଳି ଗୋଟିଏ ବ୍ୟୟବହୁଳ ଅନୁଷ୍ଠାନକୁ ଚଳାଇ ରଖିବା ସହଜ କଥା ନୁହେଁ । କିନ୍ତୁ ଭବାନୀ କୁମାର ଦାସ, ରମେଶ ମହାପାତ୍ର, ରାଧାମୋହନ ମହାନ୍ତି, ସାଧନ ଦେ ପ୍ରଭୃତି କେତେଜଣ ଛଉପ୍ରେମୀ ବ୍ୟକ୍ତି ବହୁ କଷ୍ଟ ସ୍ୱୀକାର କରି ବାରିପଦାରେ ଛଉନାଚକୁ ବଞ୍ଚାଇବା ପାଇଁ ପ୍ରୟାସ କରିଥିଲେ । ଏ କାମରେ ଅଗ୍ରଣୀ ଭୂମିକା ନେଇଥିଲେ ଭବାନୀବାବୁ । ସେ କେତେଜଣ ପୁରୁଣା ଓସ୍ତାଦ ଓ ନାଚୁଆଙ୍କୁ ଏକାଠି କରି କୌଣସି ପ୍ରକାରେ ଛଉନାଚ କରାଉଥିଲେ । ସେ ଭାରତର ପୂର୍ବତନ ବଡ଼ଲାଟ ରାଜଗୋପାଳଚାରୀ ଓ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ମନୋରଞ୍ଜନ ପାଇଁ ଦିଲ୍ଲୀରେ ମୟୂରଭଞ୍ଜ ଛଉନାଚ୍ କରାଇଥିଲେ । ଏହାପରେ ଭାରତ ସରକାର ଛଉନାଚ ପାଇଁ ବାର୍ଷିକ ଦଶହଜାର ଟଙ୍କା ଅନୁଦାନ ମଞ୍ଜୁର କରିଥିଲେ ଓ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ଆନୁକୂଲ୍ୟରେ ମୟୂରଭଞ୍ଜ ଛଉନୃତ୍ୟ ପ୍ରତିଷ୍ଠାନ ପ୍ରତିଷ୍ଠିତ ହୋଇଥିଲା । ଏହି ପ୍ରତିଷ୍ଠାନ ଛଉନୃତ୍ୟକଳାର ପ୍ରଶିକ୍ଷଣ ଓ ତାହାର ଚର୍ଚ୍ଚା ପାଇଁ ସୁଯୋଗ ସୃଷ୍ଟି କରିବାରେ ସହାୟକ ହୋଇଥିଲା ।

ମୟୂରଭଞ୍ଜ ଷ୍ଟେଟରେ ରାଜତ୍ୱ କରୁଥିବା ଭଞ୍ଜବଂଶର କୁଳଦେବୀ ହେଉଛନ୍ତି କିଚକେଶ୍ୱରୀ । ରାଜବାଟି ଭିତରେ କିଚକେଶ୍ୱରୀ ଠାକୁରାଣୀଙ୍କ ମନ୍ଦିର ଥିଲା । ଦଶହରା ଉପଲକ୍ଷେ କିଚକେଶ୍ୱରୀ ମହା ଆଡ଼ମ୍ବରରେ ପୂଜିତା

ହେଉଥିଲେ । କିନ୍ତୁ ଶାରଦୀୟା ଦୁର୍ଗାପୂଜା ଉପଲକ୍ଷେ ମହିଷାମର୍ଦ୍ଦିନୀ ଦେବୀ ଦୁର୍ଗାଙ୍କର ମୃଣ୍ମୟୀ ମୂର୍ତ୍ତି ରାଜବାଟି ସଂଲଗ୍ନ ଦେବୀମାଲାରେ ପୂଜିତ ହେଉଥିଲେ । ଦଶହରା ଦିନ ମୃଣ୍ମୟୀ ଦେବୀମୂର୍ତ୍ତିଙ୍କ ବିସର୍ଜନ ହେବାପରେ ମହାରାଜା ପାଇକମାନଙ୍କ ସମଭିବ୍ୟାହରରେ ଗୋଟିଏ ଶୋଭାଯାତ୍ରାରେ ଦଶହରା ପଡ଼ିଆକୁ ଯାଉଥିଲେ । ବର୍ତ୍ତମାନ ବାଳିକା ସ୍କୁଲ ଆଗରେ ଦୈନିକ ପରିବା ଓ ମାଛ ବଜାର ଚାଲୁଥିବା ପ୍ରଶସ୍ତ ପଡ଼ିଆଟା ଥିଲା ଦଶହରା ପଡ଼ିଆ । ସେଠାରେ ଗୋଟିଏ କଦଳୀ ଗଛ ପୋତାଯାଇ ତାକୁ ଲକ୍ଷ୍ୟସ୍ଥଳ କରାଯାଉଥିଲା ଓ ପାଇକମାନେ ସେହି କଦଳୀଗଛକୁ ତୀର ମାରି ଲକ୍ଷ୍ୟଭେଦ କରୁଥିଲେ । ଏହି ପ୍ରତିଯୋଗିତାରେ ବିଜୟୀ ପାଇକ ମୁଣ୍ଡରେ ମହାରାଜା ଶିରିପା ବାନ୍ଧି ତାକୁ ସମ୍ବର୍ଦ୍ଧିତ କରୁଥିଲେ ।

ବାରିପଦାର ବଙ୍ଗୀୟ ଅଧିବାସୀମାନେ ଭାରି ଜାକ ଜମକରେ ସହିଦ ପଡ଼ିଆଠାରେ ସାର୍ବଜନୀନ ଦୁର୍ଗାପୂଜାର ଆୟୋଜନ କରୁଥିଲେ । ବଙ୍ଗାଳିମାନଙ୍କ ଦ୍ୱାରା ଏହି ପୂଜା ଆୟୋଜିତ ହେଉଥିଲେ ମଧ ବାରିପଦାର ସବୁ ଲୋକ ଏହି ପୂଜା ପାଇଁ ଚାନ୍ଦା ଦେଇ ସେଥିରେ ଅଂଶ ଗ୍ରହଣ କରୁଥିଲେ । ପାର୍ବଣ ଚାରିଦିନ ସେଠାରେ ମେଳା ବସୁଥିଲା । ସେହି ଉପଲକ୍ଷେ ଆୟୋଜକମାନଙ୍କ ଆମନ୍ତ୍ରଣ କ୍ରମେ ଓଡ଼ିଶାର ପ୍ରସିଦ୍ଧ ଯାତ୍ରାଦଳମାନେ ସେଠାରେ ଆସି ଅଭିନୟ ପ୍ରଦର୍ଶନ କରୁଥିଲେ । ତାଛଡ଼ା ବଙ୍ଗୀୟ ଯୁବକ ମାନେ ମଧ ବଙ୍ଗଳା ଥିଏଟର ମଞ୍ଚସ୍ଥ କରୁଥିଲେ । ଯାତ୍ରା ଓ ଥିଏଟର ଦେଖିବା ପାଇଁ ଭାରି ଭିଡ଼ ହେଉଥିଲା ।

ଦଶହରା ଉପଲକ୍ଷେ ଶଙ୍ଖପଟା ଲାଲସାହେବଙ୍କ ଗୃହଦେବୀ ଜ୍ୱାଳାମୁଖୀ, ଲାଲସାହେବ ନବୀନଚନ୍ଦ୍ର ଓ ଲାଲସାହେବ ନିମାଇଁ ଚନ୍ଦ୍ର (ବାବାଜି ଲାଲ ସାହେବ)ଙ୍କ ଗୃହଦେବୀ ଯଥାକ୍ରମେ ଶାରଦା ଦେବୀ ଓ କନକଦୁର୍ଗାଙ୍କର ମଧ ବହୁ ଆଡ଼ମ୍ବରରେ ପୂଜାର୍ଚ୍ଚନା ହେଉଥିଲା । ଲାଲ ସାହେବ ନବୀନଚନ୍ଦ୍ରଙ୍କ ମନ୍ଦିର ପ୍ରାଙ୍ଗଣରେ ବାଦୀ-ପାଲା ଓ ବାବାଜି ଲାଲ ସାହେବଙ୍କ ଘରେ ଯାତ୍ରା ଅଭିନୟ କରାଯାଉଥିଲା । ପାର୍ବଣ ଚାରିଦିନ ବାରିପଦା ସହରରେ ଗହଳି ଲାଗି ରହୁଥିଲା ।

ବଗସାମଲ ଗଡ଼ର ଗଡ଼ଚଣ୍ଡୀ ଅମ୍ବିକା ସେତେବେଳେ ଛୋଟ ଗୋଟିଏ ମନ୍ଦିରରେ ଗ୍ରାମଦେବୀ ଭାବେ ପୂଜିତା ହେଉଥିଲେ । ବିଶିଷ୍ଟ ବ୍ୟବସାୟୀ ରାମଦୟାଲ ସାହା ପ୍ରଭୃତି କେତେଜଣ ଦେବୀଭକ୍ତଙ୍କ ଉଦ୍ୟମରେ ଅମ୍ବିକାଙ୍କ

ପାଇଁ ନୂତନ ମନ୍ଦିର ନିର୍ମାଣ କରାଯିବାପରେ ତାହା ଗୋଟିଏ ଦେବୀପୀଠରେ ପରିଣତ ହୋଇଯାଇଛି । ସେ ସମୟରେ ଅମ୍ବିକା ମନ୍ଦିରରେ ଭକ୍ତମାନଙ୍କର ଏତେ ଗହଳି ହେଉନଥିଲା କିମ୍ବା ପାର୍ବଣରେ ବିଶେଷ ପୂଜାର୍ଚ୍ଚନାର ଆୟୋଜନ ହେଉନଥିଲା ।

ବାରିପଦାର ଗୁଡ଼ୁରୀ ବଜାରରେ ଦୀପାବଳି ଉପଲକ୍ଷେ କାଳୀପୂଜା ହେଉଥିଲା । ଗଭୀର ରାତିରେ କରାଳ ଦର୍ଶନୀ ମହାକାଳୀଙ୍କର ମୃଣ୍ମୟୀ ମୂର୍ତ୍ତି ସ୍ଥାପନ କରି ପୂଜା କରାଯାଉଥିଲା ଓ ପ୍ରତ୍ୟୁଷରେ ବିସର୍ଜନ କରି ଦିଆଯାଉଥିଲା । ବଜାରର ମାରୱାଡ଼ି ବ୍ୟବସାୟୀମାନେ ଦୀପାବଳି ଉପଲକ୍ଷେ ଲକ୍ଷ୍ମୀପୂଜା ଓ ନୂଆଖାତା କରୁଥିଲେ । ପରବର୍ତ୍ତୀ ସମୟରେ ବାରିପଦା ହାଟ ନିକଟସ୍ଥ ଷ୍ଟେସନବଜାରରେ ବ୍ୟବସାୟୀମାନେ ମଧ୍ୟ କାଳୀପୂଜା ଆରମ୍ଭ କରିଥିଲେ ।

କାର୍ତ୍ତିକ ମାସରେ ଜଗତ ଜନନୀ ଦୁର୍ଗାଙ୍କୁ ଜଗଦ୍ଧାତ୍ରୀ ରୂପରେ ପୂଜା କରାଯାଏ । ବାରିପଦାର ଦେଉଳ ସାହିରେ ପ୍ରଥମେ ମୃଣ୍ମୟୀ ଜଗଦ୍ଧାତ୍ରୀଙ୍କ ପୂଜା ଆରମ୍ଭ କରାଯାଇଥିଲା । ପରେ କେ.ଏମ୍.ବି.ଏମ୍ ଟକିଜ୍ ସିନେମା ଘର ନିକଟରେ ଆଉ ଗୋଟିଏ ଜଗଦ୍ଧାତ୍ରୀ ପୂଜାର ଆୟୋଜନ କରାଯାଇଥିଲା । ଏହି ଦୁଇ ଆୟୋଜକଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ଲାଗିରହୁଥିଲା । ଉଭୟ ଆୟୋଜକ ଅନ୍ୟ ପକ୍ଷଠାରୁ ବେଶି ଆଡ଼ମ୍ବରରେ ପୂଜା କରିବା ପାଇଁ ଚେଷ୍ଟା କରୁଥିଲେ । ଦେଉଳସାହି ଜଗଦ୍ଧାତ୍ରୀ ପୂଜା କମିଟି କୁମାର ପୂର୍ଣ୍ଣିମା ଉପଲକ୍ଷେ ଗୋଟିଏ ସଙ୍ଗୀତ ଅନୁଷ୍ଠାନ କରି ଖ୍ୟାତନାମା କଣ୍ଠ ଶିଳ୍ପୀମାନଙ୍କୁ ଆମନ୍ତ୍ରଣ କରୁଥିଲେ । ତାପରେ ସିନେମାହଲ ପାଖ ପୂଜା କମିଟି କାର୍ତ୍ତିକ ପୂର୍ଣ୍ଣମୀ ଦିନ ବୋଇତ ବନ୍ଦାଣ ଉତ୍ସବ କରି ସଙ୍ଗୀତ ଆସରର ଆୟୋଜନ କଲେ । ଏହି ସାଂସ୍କୃତିକ ଅନୁଷ୍ଠାନ ଦେଖିବା ପାଇଁ ପ୍ରବଳ ଜନ ସମାଗମ ହେଉଥିଲା ।

ପବିତ୍ର କାର୍ତ୍ତିକ ମାସରେ ବାରିପଦାର ବଡ଼ ଜଗନ୍ନାଥ ମନ୍ଦିର, ବାଣିଆ ଜଗନ୍ନାଥ ମନ୍ଦିର, ରାଧାମୋହନ ମନ୍ଦିର, ଗୌରାଙ୍ଗ ମନ୍ଦିର, ମାରୁୱାଡ଼ି ମନ୍ଦିର ପ୍ରଭୃତି ସବୁ ମନ୍ଦିରରେ ପ୍ରଭାତ ଆଳତୀ ହେଉଥିଲା । ଆଦ୍ୟ ହେମନ୍ତର ଶୀତର ଶୀହରଣକୁ ଉପେକ୍ଷା କରି ପ୍ରତ୍ୟୁଷରୁ ସ୍ନାନ କରି ଦଳ ଦଳ ସ୍ତ୍ରୀ ପୁରୁଷ ମନ୍ଦିର ମାନଙ୍କୁ ଯାଇ ମଙ୍ଗଳାଳତୀ ଦର୍ଶନ କରୁଥିଲେ । କାର୍ତ୍ତିକ ପୂର୍ଣ୍ଣିମା ପ୍ରତ୍ୟୁଷରେ ଅଣ୍ଡିଆ ଘାଟ ଠାରେ ବୁଢ଼ାବଳଙ୍ଗ ନଦୀରେ ଡଙ୍ଗା ଭସାଇ ବୁଡ଼ ପକାଇବା ପାଇଁ ଭାରି ଭିଡ଼ ହେଉଥିଲା ।

ପୁରୀ ପରେ ବାରିପଦାର ରଥଯାତ୍ରା ହେଉଚି ଓଡ଼ିଶାର ସର୍ବବୃହତ ରଥଯାତ୍ରା । ପୁରୀ ଭଳି ବାରିପଦାରେ ମଧ୍ୟ ତିନୋଟି ବିଶାଳକାୟ ରଥ ନିର୍ମାଣ କରାଯାଏ । କିନ୍ତୁ ପୁରୀ ଠାରେ ଅନୁଷ୍ଠିତ ରଥଯାତ୍ରା ଦିନ ବାରିପଦାରେ ରଥଟଣା ହୁଏ ନାହିଁ । ସେଦିନ କେବଳ ପହଣ୍ଡି ବିଜେ କରି ଠାକୁରମାନଙ୍କୁ ରଥାରୂଢ଼ କରାଯାଏ, ପୁରୀ ଜଗନ୍ନାଥଙ୍କୁ ସମ୍ମାନ ଜଣାଇ ରଥଟଣା ଯାଏ ନାହିଁ । ତାପର ଦୁଇଦିନ ରଥଟଣା ଯାଏ । ପ୍ରଥମ ଦିନ ବଳଭଦ୍ରଙ୍କ ରଥକୁ ଟଣାଯାଇ ରାଧାମୋହନ ମନ୍ଦିରସ୍ଥିତ ମାଉସୀବାଡ଼ିରେ ପହଞ୍ଚାଇ ଦିଆଯାଇ ସୁଭଦ୍ରାଙ୍କ ରଥକୁ ଅଧାବାଟ ଟାଣି ଥାନା ଆଗରେ ରଖାଯାଏ । ତହିଁ ପରଦିନ ସୁଭଦ୍ରା ଓ ଜଗନ୍ନାଥଙ୍କ ରଥ ଟଣାଯାଇ ମାଉସୀ ବାଡ଼ିରେ ପହଞ୍ଚାଇ ଦିଆଯାଏ । ଅନୁରୂପ ଭାବେ ବାହୁଡ଼ାଯାତ୍ରା ମଧ୍ୟ ଅନୁଷ୍ଠିତ ହୋଇଥାଏ । ରଥଟଣା ଶେଷରେ ରଥ ଉପରୁ ଠାକୁରଙ୍କ ପ୍ରସାଦ ଗୁଡ଼ମିଠେଇ ଫୋପଡ଼ା ଯାଇ ବିତରଣ କରାଯାଏ । ଚାଉଳ ଚୂନା ଓ ଗୁଡ଼ରୁ ପ୍ରସ୍ତୁତ ଗୁଡ଼ ମିଠେଇ ମିଷ୍ଟାନ୍ନଟି ଅତ୍ୟନ୍ତ ସୁସ୍ୱାଦୁ । ଏହା କେବଳ ବାରିପଦାର କେତୋଟି ନିର୍ଦ୍ଦିଷ୍ଟ ଦୋକାନରେ ମିଳିଥାଏ । ଠାକୁରମାନେ ମାଉସୀମା ମନ୍ଦିରରେ ଥିବାବେଳେ ପ୍ରତିଦିନ ବିଭିନ୍ନ ବେଶ ହୋଇଥାନ୍ତି । ସେହି ବେଶ ଦେଖିବା ପାଇଁ ରାଧାମୋହନ ମନ୍ଦିର ନିକଟରେ ପ୍ରବଳ ଜନଗହଳି ହୋଇଥାଏ । ସେହି ଅବସରରେ ସେହି ମନ୍ଦିର ନିକଟରେ ଗୋଟିଏ ବଡ଼ ଧରଣର ମେଳା ବସେ । ରଥଯାତ୍ରାର ଏହି ପରମ୍ପରା ଦେବୋତ୍ତର ବିଭାଗ ଏବେ ମଧ୍ୟ ପାଳନ କରୁଛନ୍ତି । ଆଜିକାଲି ବାରିପଦାର ରଥଯାତ୍ରା ସମୟରେ ରଥଗୁଡ଼ିକୁ ଭକ୍ତ ଦର୍ଶକ ମାନେ ଟାଣୁଛନ୍ତି ଓ ଦେବୀ ସୁଭଦ୍ରାଙ୍କ ରଥଟିକୁ କେବଳ ମହିଳାମାନେ ଟାଣୁଛନ୍ତି । ପୂର୍ବେ ସେପରି ହେଉନଥିଲା । ରାଜ୍ୟର ବିଭିନ୍ନ ସ୍ଥାନରୁ ଆସିଥିବା ବେଠିଆ ମାନେ ରଥ ଟାଣୁଥିଲେ । ରଥ ଟାଣିବା ପାଇଁ ଶିଆଳି ଦଉଡ଼ି ମଧ୍ୟ ସେମାନେ ଆଣୁଥିଲେ । ବାରିପଦା ରଥଯାତ୍ରା ସମୟରେ ପୁରୀ ପରି ମହାରାଜା ଛେରା ପହଁରା କରୁନଥିଲେ । ସେ ସୁସଜ୍ଜିତ ପାଟହାତୀ ଉପରେ ବସି ଗୋଟିଏ ଶୋଭାଯାତ୍ରାରେ ଆସି ରଥରେ କେବଳ ଚନ୍ଦନ ପାଣି ଛିଞ୍ଚି ରଥ ପ୍ରତିଷ୍ଠା କରୁଥିଲେ ଓ ଜଗନ୍ନାଥ ଦର୍ଶନ କରୁଥିଲେ । ତା ପରେ ରଥଟଣା ଯାଉଥିଲା । ରାଜ ପରିବାରର ଅନ୍ୟାନ୍ୟ ସଦସ୍ୟ ଓ ରାଜ ଅତିଥି ମାନେ ମଧ୍ୟ ସୁସଜ୍ଜିତ ହାତୀ ଉପରେ ବସି ମହାରାଜାଙ୍କ ଗହଣରେ ଶୋଭାଯାତ୍ରାରେ ଜଗନ୍ନାଥ

ଦର୍ଶନ କରିବାକୁ ଯାଉଥିଲେ । ରଥଯାତ୍ରା ସମୟରେ ଭାରି ଗହଳି ହେଉଥିଲା । ଦୂର ଦୂରାନ୍ତରୁ ଆଦିବାସୀ ସ୍ତ୍ରୀ ପୁରୁଷ ମାନେ ଦଳ ଦଳ ହୋଇ ବାରିପଦାକୁ ରଥ ଦେଖିବାକୁ ଆସୁଥିଲେ । ଆଦିବାସୀ ସାନ୍ତାଳ ଝିଅମାନଙ୍କ ସୁସ୍ୱର ଗୀତ ଲହରୀ ଓ ସମ୍ମିଳିତ କଳହାସ୍ୟଧ୍ୱନୀରେ ଓ ଯୁବକମାନଙ୍କ ବଂଶୀଧ୍ୱନୀ ଓ ମାଦଳ ଶବ୍ଦରେ ବାରିପଦାର ରାଜପଥ ମୁଖରିତ ହୋଇ ଉଠୁଥିଲା । ଯାନବାହାନ ଅଭାବରୁ ସେମାନେ ଚାଲି ଚାଲି ରଥ ଦେଖିବାକୁ ଆସୁଥିଲେ । ରଥଯାତ୍ରା ଦେଖି ରାତିରେ ସେମାନେ କଚିରି ପିଣ୍ଡା କିମ୍ବା ହାଇସ୍କୁଲ ବାରଣ୍ଡାରେ ଶୋଇ ରାତିଟା କଟାଇ ଦେଇ ପୁଣି ପରଦିନ ସକାଳୁ ଗୀତ ଗାଇ ଗାଇ ସ୍ୱଗ୍ରାମକୁ ବାହୁଡ଼ି ଯାଉଥିଲେ । ଏବେ ବି ମଫସଲରୁ ଲୋକମାନେ ରଥ ଦେଖିବା ପାଇଁ ବାରିପଦା ଆସୁଛନ୍ତି । କିନ୍ତୁ ରଥ ଦେଖିସାରି ସେମାନେ ବସରେ ବସି ନିଜ ଗ୍ରାମକୁ ବାହୁଡ଼ି ଯାଉଛନ୍ତି । କଚେରି ପିଣ୍ଡାରେ ଶୋଇ ରାତି କଟାଇବା ଆବଶ୍ୟକତା ଆଉ ରହୁନାହିଁ ।

ବାରିପଦାର ମନ୍ଦିରଗୁଡ଼ିକ ଦେବୋତ୍ତର ବିଭାଗ ଅଧୀନରେ ପରିଚାଳିତ ହେଉଥିଲା । ମନ୍ଦିର ପରିଚାଳନା ଉପରେ ମହାରାଜାଙ୍କର ସଜାଗ ଦୃଷ୍ଟି ରହୁଥିଲା । ତେଣୁ ମନ୍ଦିରର ନୀତିକାନ୍ତି ଅତି ସୁରୁଖୁରୁରେ ହେଉଥିଲା । ବାରିପଦା ବଡ଼ ଜଗନ୍ନାଥ ମନ୍ଦିରର ଆରାଧ୍ୟ ଦେବତାଙ୍କ ନାମ ହେଉଚି ଶ୍ରୀହରି-ବଳଦେବ ଜୀଉ । ପ୍ରଚୁର ଭୂ-ସମ୍ପତ୍ତି ଥିଲା ଏହି ଠାକୁରଙ୍କର । ଏଠାରେ ଜଗନ୍ନାଥଙ୍କ ଠାରେ ଲାଗୁଥିବା ଭୋଗ ପୁରୀ ଦେଉଳର ଭୋଗଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ହରି-ବଳଦେବଙ୍କ ପ୍ରଧାନ ଅନ୍ନଭୋଗ ହେଉଛି ଦଳା ଖେଚୁଡ଼ି । ଚୋପାଥିବା କଞ୍ଚା ମୁଗଡ଼ାଲି, ହେଙ୍ଗୁ ଓ ଗୁଆଘିଅ ସହଯୋଗରେ ପ୍ରସ୍ତୁତ ଏହି ଖେଚୁଡ଼ିର ସ୍ୱାଦ ଅପୂର୍ବ । ଶୁଖିଲା ଭୋଗ ଲାଗୁଥିଲା ବଡ଼ ବଡ଼ ମିଠେଇ ଓ କଡ଼ା ପାଗର ବଡ଼ ବଡ଼ ଆରିସା ପିଠା । ଜଗନ୍ନାଥଙ୍କ ଭୋଗରାଗ ମନ୍ଦିର ରୋଷଶାଳରୁ ମନ୍ଦିରକୁ ନେବାପାଇଁ ଦୁଇଜଣ ବାମନ ଟହଲିଆ ଥିଲେ । କ୍ଷୁଦ୍ରକାୟ ଏହି ମନ୍ଦିର ସେବକ ଦୁଇଜଣ କିନ୍ତୁ ବେଶ ବଳିଷ୍ଠ ଓ ସମର୍ଥ ଥିଲେ । ସେମାନେ ଭୋଗ ସାମଗ୍ରୀ ଥିବା ବଡ଼ ବଡ଼ ପିତଳ ପରାତକୁ ମୁଣ୍ଡ ଉପରେ ସନ୍ତୁଳିତ ଅବସ୍ଥାରେ ରଖି କ୍ଷୀପ୍ର ପାଦରେ ରୋଷଶାଳରୁ ମନ୍ଦିର ଅଭ୍ୟନ୍ତରକୁ ଯାଉଥିଲେ । ପର୍ବପର୍ବାଣୀ ଉପଲକ୍ଷେ ଜଗନ୍ନାଥ ଦର୍ଶନ ପାଇଁ ମଫସଲରୁ ଆସୁଥିବା ଯାତ୍ରୀମାନେ ବାମନ-ସେବକ ଦୁଇଜଣଙ୍କୁ ବିଷ୍ଣୁଙ୍କ ବାମନାବତାରର ପ୍ରତିଭୂ ଭାବେ ଦର୍ଶନ କରି ଦର୍ଶନୀ ଦେଉଥିଲେ ।

ବାଣିଆ ଜଗନ୍ନାଥ ମନ୍ଦିରରେ ଲାଗୁଥିବା ଭୋଗ ବଡ଼ ଜଗନ୍ନାଥ ମନ୍ଦିର ଭୋଗ ତୁଳନାରେ ଶସ୍ତା ଥିଲା । ଅନ୍ନ, ଡାଲି, ତରକାରି, ଶାକର ପ୍ରଭୃତି ଗୋଟିଏ ବଡ଼ କଞ୍ଚା ଶାଳପତ୍ର ଖଲିରେ ବଢ଼ାଯାଇ ଠାକୁରଙ୍କ ପାଖରେ ଭୋଗ ଲାଗୁଥିଲା । ଏହି ପ୍ରସାଦ ଥିବା ପତ୍ରଟିକୁ ପତ୍ରାଳି କୁହାଯାଉଥିଲା । ଏପରି ଅନେକ ଗୁଡ଼ିଏ ପତ୍ରାଳି ଭୋଗ ଲାଗିବା ପରେ ପୂଜାରୀ ଓ ଟହଲିଆ ସେହି ପ୍ରସାଦ ପାଉଥିଲେ ଓ ବଳକା ପତ୍ରାଳି ଗୁଡ଼ିକ ସର୍ବ ସାଧାରଣଙ୍କୁ ବିକ୍ରିହେଉଥିଲା । ବାଣିଆ ମନ୍ଦିରର ଗୋଟିଏ ପ୍ରସାଦ ପତ୍ରାଳିର ଦାମ ଥିଲା ଦୁଇଅଣା ମାତ୍ର । ଗୋଟିଏ ପତ୍ରାଳିର ଭୋଗ ଜଣେ ଲୋକର ଭୋଜନ ପାଇଁ ପର୍ଯ୍ୟାପ୍ତ ଥିଲା । ତେଣୁ ଶ୍ରମିକ ଶ୍ରେଣୀର ଲୋକମାନେ ଏହି ଭୋଗ କିଣି ଖାଇ ଚଳିଯାଉଥିଲେ ।

ମୟୂରଭଞ୍ଜର ଲୋକପର୍ବ ତଥା ସର୍ବଶ୍ରେଷ୍ଠ ପର୍ବ ହେଉଚି ମକର ସଂକ୍ରାନ୍ତି ପର୍ବ । ଏହି ପର୍ବଟିକୁ ମୟୂରଭଞ୍ଜର ଆଦିବାସୀ ଅଣ ଆଦିବାସୀ ନିର୍ବିଶେଷରେ ସବୁଲୋକ ଭାରି ଉତ୍ସାହର ସହିତ ପାଳନ କରୁଥିଲେ । ମକର ସଂକ୍ରାନ୍ତି ଦିନ ନୂଆ ଲୁଗା ପିନ୍ଧିବା; ଭୋଜିଭାତ ପିଠା ପଣା ଖାଇ ନାଚ ଗୀତ ଓ ମଦ୍ୟପାନ କରିବା ଆଦିବାସୀ ମାନଙ୍କ ପାଇଁ ବାଧତାମୂଳକ ଥିଲା । କୌଣସି ଦରିଦ୍ର ଆଦିବାସୀ ମକର ପର୍ବ ଉପଲକ୍ଷେ ନୂଆ ଲୁଗା କିଣି ପିନ୍ଧି ନପାରିଲେ 'ମକର-ଛେଉଣ୍ଡ' ହୋଇ ଯାଉଥିଲା । ଆଦିବାସୀ ସାନ୍ତାଳମାନେ ମାଂସଭାତର ଭୋଜି ଖାଇ ମଦ ହାଣ୍ଡିଆ ପିଇ, କୁକୁଡ଼ା ଲଢ଼େଇ କରି, ନାଚି ଗାଇ ମକର କେଇଦିନ ଭାରି ମଉଜରେ କଟେଇ ଦେଉଥିଲେ । ନିଜ ବିଲରୁ ଯାହାକିଛି ଅମଳ କରୁଥିଲେ କିମ୍ବା 'ନାମାଲ'କୁ ଧାନ କାଟିବାକୁ ଯାଇ ଯେଉ ମୂଲ ମଜୁରୀ ଆଣୁଥିଲେ ମକର ପର୍ବରେ ସେ ସବୁ ଖର୍ଚ୍ଚ ହୋଇ ଯାଉଥିଲା । ମୟୂରଭଞ୍ଜର ଆଦିବାସୀ ସାନ୍ତାଳ ପ୍ରଜା ଜାନୁୟାରୀ ମାସର ଶେଷ ସପ୍ତାହ ବେଳକୁ ପୁଣି ସମ୍ପୂର୍ଣ୍ଣ ନିଃସ୍ୱ ହୋଇଯାଉଥିଲା ଓ ଜୀବିକା ସନ୍ଧାନରେ ଘୁରି ବୁଲିବା ଆରମ୍ଭ କରି ଦେଉଥିଲା । ସଂଘର୍ଷପୂର୍ଣ୍ଣ ଜୀବନ ସଂଗ୍ରାମ ଭିତରେ ମକର ପର୍ବର ସ୍ମୃତି ଟିକକ କେବଳ ଉଜ୍ଜ୍ୱଳ ହୋଇ ରହୁଥିଲା ତା ମନରେ । ପୁଣି ଟିକିଏ ଆନନ୍ଦ ଟିକିଏ ଉଦ୍ଦୀପନା ପାଇଁ ସାନ୍ତାଳ ଯୁବକଟି ଆଗାମୀ ମକର ପର୍ଯ୍ୟନ୍ତ ଅପେକ୍ଷା କରି ରହୁଥିଲା । ମେଦିନୀପୁର ଓ ବାଲେଶ୍ୱର ଜିଲ୍ଲାର ଉପକୂଳବର୍ତ୍ତୀ ଅଞ୍ଚଳକୁ ସାନ୍ତାଳମାନେ 'ନାମାଲ' ବୋଲି କହୁଥିଲେ । ସେଠାରେ ପ୍ରଚୁର ଧାନ ଚାଷ ହେଉଥିଲା କିନ୍ତୁ ଧାନ କାଟିବା ପାଇଁ ମୂଲିଆ

ମିଳୁ ନଥିଲେ । ସେ ଅଞ୍ଚଳର ଚାଷୀମାନେ ମୟୂରଭଞ୍ଜ ଆସି ଅଧିକ ମଜୁରୀ ଓ ଭଲ ଖାଦ୍ୟର ପ୍ରଲୋଭନ ଦେଖାଇ ସାନ୍ତାଳ ମୂଲିଆ ସଂଗ୍ରହ କରିନେଇ ଯାଉଥିଲେ । ନାମାଳରୁ ରୋଜଗାର କରି ଆଣିଥିବା ସବୁ ପଇସା ମକରରେ ଖର୍ଚ୍ଚ ହୋଇ ଯାଉଥିଲା ।

ମକର ପର୍ବ ସମୟରେ ଅଣ ଆଦିବାସୀ ହିନ୍ଦୁମାନଙ୍କ ଘରେ ମଧ୍ୟ ମାଂସ ତରକାରି ଓ ପିଠାପଣା ପ୍ରାଚୁର୍ଯ୍ୟରେ ଭରି ଯାଉଥିଲା । ବାରିପଦା ଲୋକମାନଙ୍କର ସବୁଠାରୁ ପ୍ରିୟ ଖାଦ୍ୟ ଥିଲା କଷା ମାଂସ କିମ୍ବା ମାଂସ ତରକାରି ସହିତ ଚାଉଳ ରୁଟି କିମ୍ବା ମୁଢ଼ି । ଚାଉଳ ଚୂନାର ଖଳିରେ କାଗଜ ପରି ପତଳା ରୁଟି ବେଲି ସେକା ଯାଏ । ମାଂସ ସହଯୋଗରେ ଏହି ରୁଟି ଖାଇଲେ ଅତିଶୟ ତୃପ୍ତି ମିଳିଥାଏ । ଓଡ଼ିଶାର ଅନ୍ୟ କେଉଁ ଅଞ୍ଚଳରେ ଚାଉଳ ରୁଟି ଖାଇବା ମୁଁ ଦେଖିନାହିଁ । ମୁଢ଼ି ହେଉଚି ବାରିପଦାବାସୀଙ୍କର ଅତିପ୍ରିୟ ଜଳଖିଆ । ବାରିପଦାରେ ମୁଢ଼ିକୁ 'ଭୁଜା' କୁହନ୍ତି । ମାଂସ ଝୋଳ, ମାଂସ କଷା, ଡାଲି, ତରକାରି, ଆଳୁଦମ, ଘୁଗୁନି, ବାଇଗଣ ପୋଡ଼ାର ଭରତା, ପତ୍ରପୋଡ଼ା(ପତୁଆ), ଆଚାର, ଲଙ୍କା, ପିଆଜ, ଆଳୁଚପ, ପକୋଡ଼ି, ବାରମଜା, କିମ୍ବା ଖାଲି ସୋରିଷ ତେଲ କିମ୍ବା ଦୁଧ, ଦହି, ଛେନା, କଦଳୀ, ଚିନି ସହଯୋଗରେ ମୁଢ଼ି ଖାଇବା ପ୍ରଥା ବାରିପଦା ବ୍ୟତୀତ ଅନ୍ୟତ୍ର ବିରଳ । ବାରିପଦାରେ ପ୍ରଚଳିତ ପଦ୍ଧତିରେ ମୁଢ଼ି ଖାଇବା ପାଇଁ ଅଭ୍ୟସ୍ତ ହୋଇଗଲେ, ଅନ୍ୟ କେଉଁ ଜଳଖିଆ ଖାଇ ସେ ତୃପ୍ତି ମିଳେ ନାହିଁ । ଆଜିକାଲି ଭୁବନେଶ୍ୱରରେ ଭଲ ମୁଢ଼ି କିଣିବାକୁ ମିଳୁଚି । ପୂର୍ବେ ଭୁବନେଶ୍ୱରରେ ମୁଢ଼ି ମିଳୁନଥିଲା । ଭୁବନେଶ୍ୱରରେ ରହୁଥିବା ବାରିପଦା ଲୋକ କିମ୍ବା ବାଣୀବିହାରରେ ପଢୁଥିବା ବାରିପଦା ପିଲାଙ୍କ ପାଇଁ ବାରିପଦା ନାଇଟ ଏକ୍ସପ୍ରେସ୍ ବସରେ ବଡ଼ ବିସ୍କୁଟ ଟିଣରେ କିମ୍ବା ପଲିଥିନ ବ୍ୟାଗରେ ପଶି ବାରିପଦାରୁ ମୁଢ଼ି ଆସୁଥିଲା । ବାରିପଦାରେ ମୁଢ଼ି ଚାଟ ପାଇଁ ସ୍ୱତନ୍ତ୍ର ଦୋକାନ ଅଛି । ସକାଳ ଓ ସନ୍ଧ୍ୟାରେ ଅନେକ ଭିଡ଼ ହୁଏ ସେ ଦୋକାନ ମାନଙ୍କରେ ।

ସାନ୍ତାଳମାନେ ମକର ସଂକ୍ରାନ୍ତିର ପୂର୍ବଦିନଟିକୁ ବାଉଣ୍ଡି ଭାବେ ମାନିଥାନ୍ତି । ସେଦିନ ସେମାନେ ଗାଡ଼ିଆ, ପୋଖରୀ ଘାଣ୍ଟି ଚେଙ୍ଗ କି ଗଡ଼ିଶ ମାଛ ବା କଙ୍କଡ଼ାଟିଏ ଧରି ଖା'ନ୍ତି । ସାନ୍ତାଳମାନଙ୍କ ବିଶ୍ୱାସ ବାଉଣ୍ଡିଦିନ ଯିଏ ମାଛ କଙ୍କଡ଼ା ଖାଏ ସେ ଦୀର୍ଘଜୀବୀ ହୁଏ । ମକର ବାସିଦିନଟିକୁ ସେମାନେ 'ବାନ୍ଦର-ନଚା' କରନ୍ତି । ନଡ଼ାରେ ଗୋଟିଏ ମାଙ୍କଡ଼ କରି ତାକୁ ଗାଁରେ ବୁଲି

ବୁଲି ନଚାଇ ଚାନ୍ଦା ଠୁଳ କରି ରାତିରେ ଗାଁ ବାଲା ଭୋଜି କରି ଖାଇଥାନ୍ତି । ମକର କେଇଦିନ ସବୁ ସାନ୍ତାଳ ଗାଁମାନଙ୍କରେ ହାଣ୍ଡିଆର ସୁଅ ଛୁଟେ । ଆଦିବାସୀମାନେ ରନ୍ଧା ଭାତକୁ ବାଖର ସହଯୋଗରେ ପଚାଇ ଏହି ବିଅର ଜାତୀୟ ପାନୀୟଟିକୁ ଘରେ ଘରେ ପ୍ରସ୍ତୁତ କରନ୍ତି । ମକର ପର୍ବ ପାଳନ କରିବା ପରେ ସାନ୍ତାଳମାନେ ଦଳ ଦଳ ହୋଇ 'ଦାମୋଦର' ଯାତ୍ରା କରନ୍ତି । ଦାମୋଦର ଯାତ୍ରା ଅର୍ଥ ଗଙ୍ଗାସ୍ନି କରିଯିବା । ପଶ୍ଚିମବଙ୍ଗର ସାନ୍ତାଳ ପ୍ରଗନାରେ ପ୍ରବାହିତ ଦାମୋଦର ନଦୀ ସାନ୍ତାଳମାନଙ୍କ ପବିତ୍ର ନଦୀ । ହିନ୍ଦୁମାନେ ଯେପରି ପୂର୍ବ ପୁରୁଷଙ୍କ ଅସ୍ଥି ନେଇ ଗଙ୍ଗାରେ ବିସର୍ଜନ କରନ୍ତି ସାନ୍ତାଳମାନେ ସେହିପରି ମୃତ ଗୁରୁଜନମାନଙ୍କ ଅସ୍ଥି ଦାମୋଦର ନଦୀରେ ବିସର୍ଜନ କରିଥାନ୍ତି । କିନ୍ତୁ ସେମାନଙ୍କ ପକ୍ଷରେ ଅସ୍ଥି ବିସର୍ଜନ ପାଇଁ ଏତେ ଦୂର ଯିବା ସମ୍ଭବ ହେଉ ନଥିବାରୁ ନିକଟବର୍ତ୍ତୀ ଯେକୌଣସି ବଡ଼ ନଦୀରେ ବିଶେଷତଃ ଗୋଟିଏ ନଦୀ ସହ ଅନ୍ୟଗୋଟିଏ ନଦୀର ସଙ୍ଗମ ସ୍ଥଳରେ ସେମାନେ ମୃତ ପିତାମାତାଙ୍କ ଅସ୍ଥି ବିସର୍ଜନ କରିଥାନ୍ତି । ଏଥିପାଇଁ ସେହି ସମୟରେ ବାରିପଦାର ବାରୁଣୀଘାଟରେ ବହୁ ସାନ୍ତାଳଙ୍କ ସମାଗମ ହୋଇଥାଏ ।

ବର୍ଷାଋତୁ ଶେଷ ହେବା ପରେ ବାରିପଦାକୁ ବହୁ ଯାତ୍ରାଦଳ, ଭ୍ରାମ୍ୟମାଣ ସର୍କସ ଦଳ, ପାଲା, ଦାସକାଠିଆ, ଗୋଟିପୁଅ, ବା ଚଢ଼େୟା ନାଚ ଦଳ, ମ୍ୟାଜିକ ବାଲା ଆସି ଡେରା ପକାଇ ସେମାନଙ୍କ କଳା କୌଶଳ ପ୍ରଦର୍ଶନ କରୁଥିଲେ । ସେ ସମୟରେ ପ୍ରତିବର୍ଷ ଶୀତଦିନେ ଅର୍ଣ୍ଣପୂର୍ଣ୍ଣା ଥିଏଟର ମଧ୍ୟ ବାରିପଦା ଆସି କ୍ୟାମ୍ପ କରି ଅସ୍ଥାୟୀ ମଞ୍ଚରେ ସେମାନଙ୍କ ସବୁ ନାଟକର ଅଭିନୟ ପ୍ରଦର୍ଶନ କରୁଥିଲେ । ଅନପୂର୍ଣ୍ଣା ଥିଏଟର ଦେଖିବା ପାଇଁ ପ୍ରବଳ ଜନଗହଳି ହେଉଥିଲା । ଅନ୍ନପୂର୍ଣ୍ଣା ଥିଏଟର ଚାଲୁଥିବାବେଳେ ବାରିପଦା ସହରରେ ଛୋଟମୋଟ ଚୋରି ସଂଖ୍ୟା ବଢ଼ିଯାଉଥିଲା । ଥିଏଟର ଟିକେଟ ପଇସା ଯୋଗାଡ଼ କରିବା ପାଇଁ ଟୋକାଏ ଲୋକଙ୍କ ବାଡ଼ିରେ ପଶି କଦଳୀ କାନ୍ଧି ଲାଉ କି କଖାରୁ ଚୋରି କରିନେଇ ବିକି ଦେଉଥିଲେ । ଅନେକ ଦିନୁ ବାରିପଦା ସହରରେ ଗୋଟିଏ ସ୍ଥାୟୀ ସିନେମାହଲ ଥିବା ସତ୍ତ୍ୱେ ବାରିପଦା ଲୋକମାନେ ଓଡ଼ିଆ ଥିଏଟର ଦେଖିବା ପାଇଁ ଭାରି ଆଗ୍ରହ ପ୍ରକାଶ କରୁଥିଲେ ।

ବର୍ତ୍ତମାନ ସବୁଠାରୁ ଅବହେଳିତ ଅବସ୍ଥାରେ ଥିବା ବ୍ୟବସାୟିକ ଓଡ଼ିଆ ମଞ୍ଚାଭିନୟର ସ୍ୱର୍ଣ୍ଣଯୁଗ ଥିଲା ସେତେବେଳେ । କଟକ ସହରରେ ଦୁଇଟି

ବ୍ୟବସାୟିକ ଦଳ ପ୍ରତି ରାତିରେ ଅଭିନୟ ପ୍ରଦର୍ଶନ କରୁଥିଲେ । ଗୋଟିଏ ଥିଲା କାଳିବାବୁଙ୍କର ଓଡ଼ିଶା ଥିଏଟର ଅନ୍ୟଟି ଥିଲା ଅନ୍ନପୂର୍ଣ୍ଣା ଥିଏଟର । କେତେକ କାରଣରୁ ଓଡ଼ିଶା ଥିଏଟର ବନ୍ଦ ହୋଇ ଯାଇଥିଲା ଓ ନାଟଗୁରୁ କବିଚନ୍ଦ୍ର କାଳିଚରଣଙ୍କ ଦ୍ୱାରା ପ୍ରଶିକ୍ଷିତ ଦୁର୍ଲ୍ଲଭ ସିଂହ, ବାବି, ପୀର, ଭୋଳା, ନଟବର ସେଣ, କେଶବ ଶତପଥୀ, ନିରଞ୍ଜନ ଶତପଥୀ, ପାଣ୍ଡେ, ଟିମା, ରାଧାରାଣୀ, ଲକ୍ଷ୍ମୀ, ଭାନୁମତୀ, ଲୀଳା ଦୁଲାରୀ ପ୍ରଭୃତି ବହୁ ପ୍ରତିଭା ସମ୍ପନ୍ନ ଅଭିନେତା ଅଭିନେତ୍ରୀଙ୍କର ସମାବେଶ ଅନ୍ନପୂର୍ଣ୍ଣା ଥିଏଟରରେ ହୋଇଥିଲା । କୈଶୋରରେ ଦେଖିଥିବା ସେହି ପ୍ରତିଭାବାନ ଅଭିନେତା ଅଭିନେତ୍ରୀମାନଙ୍କ ଜୀବନ୍ତ ଅଭିନୟ ଜୀବନର ସାୟାହ୍ନରେ ବି ମୁଁ ଭୁଲିପାରି ନାହିଁ । ବର୍ଷାଋତୁ ଶେଷହେବା ପରେ ଅନ୍ନପୂର୍ଣ୍ଣା ଥିଏଟର କଟକ ବାହାରକୁ ଯାଇ ଜିଲ୍ଲା ବା ମହକୁମା ସହର କିମ୍ବା ଗଡ଼ଜାତର ରାଜଧାନୀ ମାନଙ୍କରେ ଅସ୍ଥାୟୀ ମଞ୍ଚରେ ଅଭିନୟ ପ୍ରଦର୍ଶନ କରୁଥିଲେ । ସେତେବେଳେ ଅନ୍ନପୂର୍ଣ୍ଣା ଥିଏଟରର ମ୍ୟାନେଜର ଥିଲେ ବାଉରୀବନ୍ଧୁ ମହାନ୍ତି । ତାଙ୍କ ଦକ୍ଷ ପରିଚାଳନା ଯୋଗୁଁ ଏହି ନାଟକ ଦଳଟିର ପ୍ରଭୁତ ଉନ୍ନତି ସାଧିତ ହୋଇଥିଲା । ବାରିପଦାକୁ ଅନ୍ନପୂର୍ଣ୍ଣା ଥିଏଟର ଆସିଲେ ବାଉରୀବନ୍ଧୁ ବାବୁ ବ୍ୟକ୍ତିଗତ ଭାବେ ସହରର ବିଶିଷ୍ଟ ଲୋକମାନଙ୍କୁ ସାକ୍ଷାତ କରି ବିନା ମୂଲ୍ୟରେ ଥିଏଟର ଦେଖିବାପାଇଁ ଆମନ୍ତ୍ରଣ ଜଣାଉଥିଲେ । ସୁରୁଖୁରୁରେ ଥିଏଟର ଚାଲିବାପାଇଁ କିଛି କ୍ଷମତାବାନ ହାକିମ ହୁକୁମାଙ୍କ ସହିତ ଅନ୍ଧ କେତେକ ଗଣ୍ୟମାଣ୍ୟ ଲୋକଙ୍କୁ ସବୁରାତି ଅଭିନୟ ଦେଖିବାପାଇଁ କମ୍ପ୍ଲିମେଣ୍ଟାରି ପାଶ୍ ଦେଉଥିଲେ । ବାରିପଦାରେ ଲୋକନାଥ ଦାସ ବୋଲି ଜଣେ ଭଦ୍ରଲୋକ ଥିଲେ । ତାଙ୍କ ଡାକ ନାମ ଥିଲା ଲୋକା । କିନ୍ତୁ ସେ ଏଲ.ଏନ.ଡି ଭାବେ ବିଶେଷ ପରିଚିତ ଥିଲେ । ସେ ଚାକିରି ବାକିରି କରୁ ନଥିଲେ କିମ୍ବା କୌଣସି କ୍ଷମତାର ଅଧିକାରୀ ନଥିଲେ । କଳା ରଙ୍ଗର ରୋଗା ପତଳା ବାଙ୍ଗରା ମଣିଷଟିଏ ଲୋକନାଥ ଦାସ- ଫୁଙ୍କି ଦେଲେ ଉଡ଼ିଯିବା ଭଳି ସ୍ୱାସ୍ଥ୍ୟ । କିନ୍ତୁ ତାଙ୍କ ମୁହଁଟା ଥିଲା ଇସ୍ପାତ ଆଉ ଦୁର୍ଦ୍ଦାନ୍ତ ସାହସୀ ଥିଲେ ସେ । କେଉଁଠି ଗଣ୍ଡଗୋଳ ଲାଗି ଦୁଇଦଳ ମାରପିଟ୍ ହେଉଥିଲେ ସେ ନିର୍ଭୟରେ ସେହି ଭିଡ଼ ଭିତରକୁ ପଶିଯାଇ କେବଳ ପାଟିକରି ଉଭୟ ପକ୍ଷଙ୍କୁ ଗଣ୍ଡଗୋଳରୁ ନିରସ୍ତ କରିଦେଉଥିଲେ । ତାଙ୍କର ପରମ ବନ୍ଧୁ ଥିଲେ ଗ୍ରୀନ ହୋଟେଲର ମାଲିକ କୁନି ନନା । ସେ ସର୍ବ ପ୍ରଥମେ ବାରିପଦାରେ ଗୋଟିଏ ଆମିଷ ଭୋଜନାଳୟ ଖୋଲିଥିଲେ । ଗ୍ରୀନ୍ ହୋଟେଲ ଥିଲା ଗୋଟିଏ

ଆଧୁନିକ ରେଷ୍ଟୋରାଁ, ସେଠି ମାଂସଚପ୍, କଟଲେଟ୍, ଫିସ୍ ଫ୍ରାଇ ଓ ଆମଲେଟ୍ ପ୍ରଭୃତି ସବୁପ୍ରକାର ଆମିଷ ଖାଦ୍ୟ ମିଳୁଥିଲା ।

କୁନିନନା ଥିଲେ ଅତ୍ୟନ୍ତ ସ୍ୱଳ୍ପବାକ ଓ ଗମ୍ଭୀର ପ୍ରକୃତିର ମଣିଷ । ନିସନ୍ତାନ କୁନିନନାଙ୍କର ଜୀବଜନ୍ତୁରେ ଭାରି ସଉକ ଥିଲା । ତାଙ୍କ ଘର ଥିଲା ଛୋଟକାଟ୍‌ର ଗୋଟିଏ ଚିଡ଼ିଆଖାନା । ସେ କେତୋଟି ବିଲାତି କୁକୁର, ଗୋଟିଏ ମାଙ୍କଡ଼, ଗୋଟିଏ ଭାଲୁ ଓ ଗୋଟିଏ କଲରା ପତରିଆ ବାଘଛୁଆ ପାଳିଥିଲେ । ତାଛଡ଼ା ଦଳେ ବୁଲା କୁକୁରଙ୍କୁ ସେ ପ୍ରତିଦିନ ଖାଇବାକୁ ଦେଉଥିଲେ । କୁନିନନା ତାଙ୍କ ସ୍ପେନିଏଲ କୁକୁରକୁ ଧରି ବୁଲି ବାହାରିଲେ, ତାଙ୍କ ଅନୁଗତ ବୁଲା କୁକୁର ପଂଝାକ ତାଙ୍କ ଠାରୁ ସସମ୍ମାନ ଦୂରତ୍ୱ ବଜାଏ ରଖି ତାଙ୍କର ଅନୁଗମନ କରୁଥିଲେ । କୁନିନନା ଓ ଏଲ.ଏନ୍.ଡ଼ିଙ୍କର ସ୍ୱଭାବ ବିପରୀତ ହୋଇଥିଲେ ମଧ ସେମାନଙ୍କ ମଧରେ ନିବିଡ଼ ସଖ୍ୟତା ଥିଲା । ଉଭୟେ ସବୁ ଜାଗାରେ ଏକା ସାଙ୍ଗରେ ଦେଖାଯାଉଥିଲେ । ଲୋକେ ସେମାନଙ୍କୁ ରୟେଲ-ପେୟାର ନାମ ଦେଇଥିଲେ । ଉଭୟଙ୍କ ପରିଧାନ ଥିଲା ଧୋବ ଫର୍ ଫର୍ ଧୋତି ଆଉ ଗିଲରେ କୁଞ୍ଚା ଯାଇଥିବା ଅଦ୍ଧି ପଞ୍ଜାବି । ବାରିପଦା ବଜାରରେ ଛୋଟ ଛୋଟ ବ୍ୟବସାୟ କରୁଥିବା ପରିବା ବା ମାଛ ବିକାଳି, ରିକ୍ସାବାଲା, ହୋଟେଲ ଓ ଜଳଖିଆ ଦୋକାନ ମାନଙ୍କରେ କାମ କରୁଥିବା ପିଲାଙ୍କ ଉପରେ କୁନି ନନା ଓ ଏଲ.ଏନ୍.ଡ଼ିଙ୍କର ଅଖଣ୍ଡ ପ୍ରଭାବ ଥିଲା । ସେମାନେ ଯେପରି କୌଣସି ଠାରେ ଲାଗିଥିବା ଗଣ୍ଡଗୋଳକୁ ପ୍ରତିହତ କରିପାରୁଥିଲେ, ସେମିତି ଇଚ୍ଛା କଲେ ସେମାନଙ୍କ ଅନୁଗତ ବାହିନୀ ଦ୍ୱାରା ଯେକୌଣସି ସ୍ଥାନରେ ଗଣ୍ଡଗୋଳ ସୃଷ୍ଟି କରି ଦେଇପାରୁଥିଲେ । ଅର୍ଣ୍ଣପୂର୍ଣ୍ଣା ଥିଏଟର ବାରିପଦାରେ ଡେରା ପକାଇଥିବା ସମୟରେ ଅଭିନୟ ଚାଲିଥିବାବେଳେ ଗଣ୍ଡଗୋଳ ହେଲେ ତାକୁ ବନ୍ଦ କରିବା ପାଇଁ ହେଉ କିମ୍ବା ଗଣ୍ଡଗୋଳ ନକରିବା ପାଇଁ ହେଉ, ଅନ୍ନପୂର୍ଣ୍ଣା ଥିଏଟର ମ୍ୟାନେଜର ବାଉରୀବନ୍ଧୁ ମହାନ୍ତି ପ୍ରତିଥର ବାରିପଦାକୁ ଅନ୍ନପୂର୍ଣ୍ଣା ଥିଏଟର ଆସିଲେ କୁନିନନା ଓ ଏଲ.ଏନ୍.ଡ଼ିଙ୍କୁ କମ୍ପ୍ଲିମେଣ୍ଟାରି ପାଶ ଦେଉଥିଲେ । ସେ ବର୍ଷ ସେ କୌଣସି କାରଣରୁ ସେମାନଙ୍କୁ ଫ୍ରି ପାଶ୍ ନଦେବାରୁ ଉଭୟ କୁନିନନା ଓ ଏଲ.ଏନ୍.ଡ଼ି ଟିକଟ କାଟି ଥିଏଟର ଦେଖିବାକୁ ଯାଇଥିଲେ । ସେମାନେ ମଞ୍ଚ ପାଖକୁ ଲାଗି ପ୍ରଥମ ଧାଡ଼ିରେ ବସିଥିଲେ । ସେଦିନ ଅଭିନୀତ ହେଉଥିବା ନାଟକର କ୍ଲାଇମାକ୍ସ ଦୃଶ୍ୟରେ ନାୟିକା ନାୟକ ବେକରେ ବରଣମାଳା

ପିନ୍ଧାଇଦେବା କଥା । ନାୟିକା ଚରିତ୍ର ଅଭିନୟ କରୁଥିବା ଅଭିନେତ୍ରୀଙ୍କ ନାମ ଥିଲା ବାଲା । ନାୟିକା ଯେଉଁ ମୁହୂର୍ତ୍ତରେ ବରଣମାଳାଟି ନାୟକ ବେକରେ ପିନ୍ଧାଇ ଦେବାକୁ ଯାଇଚି ଏଲ.ଏନ୍.ଡ଼ି ନିଜ ଆସନରୁ ଉଠିପଡ଼ି ଉଦ୍ଧାର ଗଳାରେ ନାଟକୀୟ ଭଙ୍ଗୀରେ କହି ଉଠିଲେ- 'କି' କଲ କି' କଲ ବାଲା-କାହାଗଳେ ଲମ୍ବାଇଲ ବରଣ ମାଳା ?'

ବାସ୍ କଥା ଶେଷ । ହଠାତ୍ ପ୍ରବଳ ତାଳିମାଡ଼, ସୁସୁରି ଶବ୍ଦ ଓ ହାସ୍ୟରୋଳରେ ଅସ୍ଥାୟୀ ପ୍ରେକ୍ଷାଳୟଟି କମ୍ପି ଉଠିଥିଲା । ଏଲ.ଏନ୍.ଡ଼ିଙ୍କ ସଂଳାପକୁ ଭାରି ଉପଭୋଗ କଲେ ଦର୍ଶକମାନେ । ନାୟିକା ଚିତ୍ରବତ ବରଣମାଳା ହାତରେ ଥମକି ଛିଡ଼ା ହୋଇଗଲା । ପେଷାଦାର ମଞ୍ଚାଭିନେତ୍ରୀ ହୋଇ ବି ସେ ସେଦିନ ଦର୍ଶକମାନଙ୍କ ବିପରୀତ ପ୍ରତିକ୍ରିୟା ଯୋଗୁଁ ଘାବୁରେଇ ଯାଇଥିଲା । - ନାଟକର କ୍ଲାଇମାକ୍ସ କୁଆଡ଼େ ଭାସିଗଲା । ତାପରେ ଅଭିନୟ ଦେଖିବା ପାଇଁ ଆଉ କାହାରି ଆଗ୍ରହ ରହିଲା ନାହିଁ । ଉଲ୍ଲସିତ ଦର୍ଶକ ନିଜ ନିଜ ଆସନରୁ ଉଠି ପଡ଼ିଲେ ।

ତାପର ଦିନ ସକାଳେ ବାଉରୀବନ୍ଧୁ ବାବୁ କୁନିନନା ଓ ଲୋକନାଥ ଦାସଙ୍କୁ ସାକ୍ଷାତ କରି ଫ୍ରି ପାଶ୍ ଦେବାପାଇଁ ବିଳମ୍ବ ହୋଇଥିବା ଯୋଗୁଁ କ୍ଷମା ମାଗି ସେମାନଙ୍କ ଫ୍ରି-ପାଶ ଦେଇ ଆସିଥିଲେ ।

ବାରିପଦାର ଶିକ୍ଷିତ ଲୋକମାନେ ବାଦୀ ପାଲା ଶୁଣିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରୁଥିଲେ । ପାଲା ଗାଆଣରେ ମଧ୍ୟଯୁଗୀୟ ସାହିତ୍ୟର ଆଲୋଚନା ହେଉଥିଲା । ଗାୟକମାନେ ଅନେକ କୂଟ ସାହିତ୍ୟିକ ପ୍ରଶ୍ନର ସମାଧାନ କରୁଥିଲେ । ନରିନାଥ, ହରିନାଥ, ନିରଞ୍ଜନ କର ପ୍ରଭୃତି ଓଡ଼ିଶାର ବିଶିଷ୍ଟ ପାଲା ଗାୟକମାନେ ବାରିପଦାରେ ନିଜ କଳା ପ୍ରଦର୍ଶନ କରିବାକୁ ଯାଉଥିଲେ । ବର୍ତ୍ତମାନ ଓଡ଼ିଆ ସାହିତ୍ୟ ବିଶେଷତଃ ପୁରାତନ ସାହିତ୍ୟ ଓ ଛାନ୍ଦ ଚଉପଦୀ ଚମ୍ପୂ ପ୍ରଭୃତି ପୁରାତନ ଓଡ଼ିଶୀ ସଙ୍ଗୀତ ପ୍ରତି ଆଦର କମିଯିବା ସହ ପାଲା ଗାଆଣର ବି ଆଦର କମିଯାଉଚି । ସାରାରାତି ଉଜାଗର ରହି ବାଦିପାଲା ଶୁଣିବା ପାଇଁ ଆଜିକାଲି ଆଉ କାହାରି ଆଗ୍ରହ ନାହିଁ ।

ସେତେବେଳର ଯାତ୍ରାର ସ୍ୱରୂପ ମଧ୍ୟ ଆଜିକାଲି ପୂରାପୂରି ବଦଳିଯାଇଚି । ଟିକଟ କାଟି ଯାତ୍ରାଭିନୟର ପରମ୍ପରା ସେତେବେଳେ ନଥିଲା । ଧନୀ ଲୋକମାନେ ନିଜ ବ୍ୟୟରେ କିମ୍ବା ସାହି ଲୋକମାନେ ଚାନ୍ଦା ଭେଦା, କରି ଯାତ୍ରା କରାଉଥିଲେ । ସେତେବେଳେ ଯାତ୍ରାରେ ମାଇକ୍ରୋଫୋନ୍

ବ୍ୟବହାର କରାଯାଉ ନଥିଲା । ଅନେକ ଜାଗାରେ ଇଲେକ୍ଟ୍ରିକ ଆଲୁଅର ସୁବିଧା ମିଳୁନଥିଲା । ପେଟ୍ରୋମେକ୍ସ ଲଣ୍ଠନ ଜାଳି ଯାତ୍ରାଭିନୟ ହେଉଥିଲା । ନାରୀ ଭୂମିକାରେ ଅଭିନେତ୍ରୀମାନେ ଅଭିନୟ କରୁନଥିଲେ । ପୁଅପିଲାମାନେ ଝିଅବେଶ ହୋଇ ଅଭିନୟ କରୁଥିଲେ । ଅଭିନେତା ଅଭିନେତ୍ରୀମାନେ ଉଚ୍ଚ ସ୍ୱରରେ ସଂଳାପ କହୁଥିଲେ । ପ୍ରାଣବନ୍ତ ଅଭିନୟ କରି ହଜାରହଜାର ଦର୍ଶକମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖୁଥିଲେ ।

ଗଞ୍ଜାମ ଜିଲ୍ଲାର ଦାସକାଠିଆ ଦଳଙ୍କର ବହୁତ ଆଦର ଥିଲା ବାରିପଦାରେ । ଲୋକମାନେ ଗାୟକମାନଙ୍କ କାବ୍ୟ ଚର୍ଚ୍ଚା ଠାରୁ ପାଳିଆମାନଙ୍କ ହାସ୍ୟରସ ବେଶୀ ଉପଭୋଗ କରୁଥିଲେ ।

ସେହିପରି ପୁରୀ ଓ ଗଞ୍ଜାମ ଜିଲ୍ଲାରୁ ଗୋଟିପୁଅ ନାଚ ଦଳ ଯାଉଥିଲେ । ଦୁଇଟି ଛୋଟ ଛୋଟ ପିଲା ଛାନ୍ଦ ଚଉପଦୀ ଚମ୍ପୂ ଇତ୍ୟାଦି ଗାଇ ଓଡ଼ଶୀ ନାଚ ନାଚୁଥିଲେ । ଓସ୍ତାଦ ହାରମୋନିୟମ ବଜାଉଥିଲେ, ଆଉଜଣେ ବାୟକ ପଖଉଜ ବଜାଉଥିଲା । ଛୋଟ ଦଳ, ଅଳ୍ପ ଦକ୍ଷିଣା ମାଗୁଥିଲେ ସେମାନେ । ଅନେକ ଲୋକ ନିଜ ଘରକୁ ସେହି ଦଳକୁ ଆମନ୍ତ୍ରଣ କରି ନାଚ କରାଉଥିଲେ । ଭାରି ଉପଭୋଗ୍ୟ ହେଉଥିଲା ଗୋଟିପୁଅ ନାଚ । ରସିକ ଲୋକମାନେ ମୁଗ୍ଧ ହୋଇ ଗୀତ ଶୁଣୁଥିଲେ, ନାଚ ଦେଖୁଥିଲେ । ଗୋଟିଏ ନାଚ ସରିଲେ, ସାମାନ୍ୟ ମଦ୍ୟ ନିଶାରେ ଢୁଲୁ ଢୁଲୁ ହେଉଥିବା କେହି ଜଣେ ବରାଦ କରୁଥିଲା 'ଲ' ଗୀତ.... ଆଉ ଗୋଟିପୁଅ ନାଚୁଥିବା ଛୋଟ ପିଲାଗୁଡ଼ା ସଙ୍ଗେ ସଙ୍ଗେ ଅପାଙ୍ଗରେ କଟାକ୍ଷ ହାଣି ଆରମ୍ଭ କରିଦେଉଥିଲେ, 'ଲୀଳା ନିଧି ହେ- ଲାଜେ ମୁଁ ଗଲିଟି ସଢ଼ି.... ।'

ସ୍ୱଳ୍ପ ଶିକ୍ଷିତ ଲୋକମାନଙ୍କ ଭିତରେ ଅଧିକ ଲୋକପ୍ରିୟ ଥିଲା ଚଢ଼େୟା ନାଚ । ଚଢ଼େୟା ଚଢ଼େୟାଣୀଙ୍କ ପ୍ରଶ୍ନୋତ୍ତର ସେମାନଙ୍କ ଅଙ୍ଗଭଙ୍ଗୀ, ଅଶ୍ଳୀଳତାର ସୀମା ଛୁଇଁ ଯାଉଥିବା ରସିକତାକୁ ସାହିବସ୍ତିର ଲୋକମାନେ ଭାରି ଉପଭୋଗ କରୁଥିଲେ । ବଇଲୋଚନ ପରି କୌଣସି ବିଖ୍ୟାତ ଚଢ଼େୟା ନାଚ କରୁଥିବାବେଳେ ଆସରରେ ଠିଆହେବା ପାଇଁ ଜାଗା ମିଳୁନଥିଲା ।

ଅନେକ ଦିନ ତଳୁ ବାରିପଦାରେ ଗୋଟିଏ ସ୍ଥାୟୀ ସିନେମାହଲ ଥିଲା । ଏହି ପ୍ରେକ୍ଷାଳୟଟି ନାମ କ୍ଷେତ୍ରମୋହନ ବିଦ୍ୟାମନ୍ଦିର ଟକିଜ୍ । ସିନେମା ପ୍ରେକ୍ଷାଳୟର ନାମ ବିଦ୍ୟାମନ୍ଦିର ଶୁଣି ମନରେ ଖଟକା ଲାଗିବା ସ୍ୱାଭାବିକ । କିନ୍ତୁ ଏହି ପ୍ରେକ୍ଷାଳୟର ମାଲିକ କ୍ଷେତ୍ରମୋହନ କୋମ୍ପାନୀଙ୍କର ଏହାଥିଲା

ଗୋଟିଏ ଅଭିନବ ପରିକଳ୍ପନା । ସେହି ପ୍ରେକ୍ଷାଳୟ ଭିତରେ ଦିନବେଳେ ଗୋଟିଏ ଉଚ୍ଚ ପ୍ରାଥମିକ ସ୍କୁଲ ଚାଲୁଥିଲା । ସ୍କୁଲଟିର ନାମ ଥିଲା କ୍ଷେତ୍ରମୋହନ ବିଦ୍ୟାମନ୍ଦିର । ସେହି ସ୍କୁଲର ସମସ୍ତ ଖର୍ଚ୍ଚ ସିନେମାହଲ ଆୟରୁ ଯୋଗାଇ ଦିଆଯାଉଥିଲା । ସିନେମାହଲର ମାଲିକ କ୍ଷେତ୍ରମୋହନ ଦାସଙ୍କୁ ଲୋକମାନେ କ୍ଷେତ୍ରମୋହନ କୋମ୍ପାନୀ ବୋଲି ଡାକିବାଟା ମଧ୍ୟ ଥିଲା ଗୋଟିଏ ଅଭିନବ କଥା । କ୍ଷେତ୍ରମୋହନ ବାବୁଙ୍କର ଗୋଟିଏ କାଠ ଆସବାବ ପତ୍ର ତିଆରି କାରଖାନା ଥିଲା । ସେଠାରେ ଶାଳ, ପିଆଶାଳ, ଶିଶୁ, କୁରୁମ ପ୍ରଭୃତି ଆସବାବ ତିଆରି ପାଇଁ ଉପଯୁକ୍ତ କାଠର ବଡ଼ ବଡ଼ ଗରିଣ୍ଡାକୁ କରତରେ ଚିରାଯାଇ ପଟା ବାହାର କରାଯାଉଥିଲା ଓ ସେଥିରୁ ଚେୟାର ଟେବୁଲ, ଖଟ, ପଲଙ୍କ ଇତ୍ୟାଦି ତିଆରି କରାଯାଉଥିଲା । କଲିକତା ବମ୍ବେ, ଟାଟାନଗର ପ୍ରଭୃତି ଜାଗାରେ କଳ କାରଖାନାର ମାଲିକ ଥିଲେ କମ୍ପାନୀ ମାନେ । ତେଣୁ ବାରିପଦାର କାଠ କାରଖାନାର ମାଲିକ କ୍ଷେତ୍ରମୋହନ ବାବୁ ବି ହୋଇଗଲେ କ୍ଷେତ୍ରମୋହନ କମ୍ପାନୀ ବା କୁମ୍ପାନୀ ବାବୁ । କ୍ଷେତ୍ରମୋହନ ବାବୁ ଜଣେ ପ୍ରଗତିଶୀଳ ଓ ଦୂରଦୃଷ୍ଟି ସମ୍ପନ୍ନ ମଣିଷ ଥିଲେ । ସେ ଥିଲେ ଜଣେ ରାଜାନୁଗତ ବ୍ୟକ୍ତି । ପ୍ରତିଦିନ ସିନେମା ପ୍ରଦର୍ଶନ ପୂର୍ବରୁ ମହାରାଜା ଶ୍ରୀରାମଚନ୍ଦ୍ର, ମହାରାଜା ପୂର୍ଣ୍ଣଚନ୍ଦ୍ର, ମହାରାଜା ପ୍ରତାପଚନ୍ଦ୍ର ଓ ରାଜକୁମାର କୁମାରୀଙ୍କ ରଙ୍ଗୀନ ଫଟୋଚିତ୍ର ସ୍ଲାଇଡ଼ ସାହାଯ୍ୟରେ ପ୍ରଦର୍ଶିତ ହେଉଥିଲା ।

ବାରିପଦା ହାଇସ୍କୁଲ ଗୋଟିଏ ପୁରାତନ ଓ ବୃହତ ଶିକ୍ଷାନୁଷ୍ଠାନ ଥିଲା । ଏହି ସ୍କୁଲର ନାମ ପରବର୍ତ୍ତୀ ସମୟରେ ମହାରାଜା କୃଷ୍ଣଚନ୍ଦ୍ର ହାଇସ୍କୁଲ କରି ଦିଆଯାଇଥିଲା । କିନ୍ତୁ ଆମ୍ଭେମାନେ ପାଠ ପଢ଼ିଥିଲୁ ବାରିପଦା ହାଇସ୍କୁଲରେ । ଏହି ସ୍କୁଲର ଛାତ୍ର ସଂଖ୍ୟା ଥିଲା ବାରଶହ ଓ ପ୍ରାୟ ଚାଳିଶ ଜଣ ଶିକ୍ଷକ ଆମ୍ଭମାନଙ୍କୁ ପାଠ ପଢ଼ାଉଥିଲେ । ସେମାନଙ୍କ ଭିତରେ ଅଧିକାଂଶ ଶିକ୍ଷକ କଳା ବା ବିଜ୍ଞାନରେ ସ୍ନାତକ କିମ୍ବା ସ୍ନାନତକୋତ୍ତର ଡିଗ୍ରୀ ଲାଭ କରିବା ସହିତ ଶିକ୍ଷକତା ପାଇଁ ତାଲିମ ପ୍ରାପ୍ତ ଥିଲେ । ଅଳ୍ପ କେତେଜଣ ମାଟ୍ରିକ ସିଟି ବା ଆଇ.ଏ. ସିଟି ଶିକ୍ଷକ ତଳ ଶ୍ରେଣୀ ମାନଙ୍କରେ ପଢ଼ାଉଥିଲେ । ଏହାଛଡ଼ା ସଂସ୍କୃତ ପଢ଼ାଇବା ପାଇଁ ଦୁଇଜଣ ସଂସ୍କୃତ ପଣ୍ଡିତ ବଙ୍ଗଳା ବା ହିନ୍ଦୀ ପଢ଼ାଇବା ପାଇଁ ସ୍ୱତନ୍ତ୍ର ଶିକ୍ଷକ, ସ୍କାଉଟିଂ ଶିକ୍ଷାଦେବା ପାଇଁ ସ୍ୱତନ୍ତ୍ର ତାଲିମପ୍ରାପ୍ତ ଶିକ୍ଷକ, ଡ୍ରଇଂ ପାଇଁ କଲିକତା ଆର୍ଟସ୍କୁଲର ତାଲିମପ୍ରାପ୍ତ ଜଣେ ଆର୍ଟ ଶିକ୍ଷକ, ଖେଳକୁଦ ପାଇଁ ସ୍ୱତନ୍ତ୍ର ଶିକ୍ଷକ ମଧ୍ୟ ଥିଲେ ।

ବାରିପଦା ହାଇସ୍କୁଲରେ ଶିକ୍ଷକତା କରିଥିବା ବହୁ ଶିକ୍ଷକ ପରବର୍ତ୍ତୀକାଳରେ ବିଭିନ୍ନ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ସେମାନଙ୍କ ମଧ୍ୟରୁ ବିଶିଷ୍ଟ ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦ, ଚୀନା ଓ ସଂସ୍କୃତ ଭାଷାର ବିଶିଷ୍ଟ ବିଦ୍ୱାନ୍ ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ସାହିତ୍ୟିକ ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶ, ପ୍ରାକ୍ତନ ଅତିରିକ୍ତ ସମବାୟ ସମିତି ସମୂହର ନିବନ୍ଧକ ଲମ୍ବୋଦର ଦଣ୍ଡପାଟ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ ସମୟରେ ଆମର ଯେଉଁ ଶିକ୍ଷକମାନେ ଓଡ଼ିଶାର ବିଭିନ୍ନ ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଓ ଇନ୍ସପେକ୍ଟର ଭାବେ କାମ କରି ସୁନାମ ଅର୍ଜନ କରିଥିଲେ ସେମାନଙ୍କ ଭିତରେ ଥିଲେ ଶଚ୍ଚିଦାନନ୍ଦ କାନୁନ୍‌ଗୋ, ରାମଚନ୍ଦ୍ର ପଟ୍ଟନାୟକ,, ଗୌରୀଶଙ୍କର ଦାସ ମହାପାତ୍ର, ହରିହର ନନ୍ଦ, ଐତିହାସିକ କାଶୀନାଥ ମହାପାତ୍ର, ବିଶ୍ୱରଞ୍ଜନ ଦାସ ମହାପାତ୍ର, ଯୋଗେଶ ଚନ୍ଦ୍ର ମହାନ୍ତି ପ୍ରଭୃତି । ପ୍ରତିବର୍ଷ ବାରିପଦା ହାଇସ୍କୁଲର ଛାତ୍ରମାନେ ମାଟ୍ରିକ ପରୀକ୍ଷାରେ ପ୍ରଥମ ଦଶ ଜଣଙ୍କ ଭିତରେ ସ୍ଥାନ ପାଇବା ପାଇଁ ସକ୍ଷମ ହେଉଥିଲେ । ଶଚୀନ୍ଦ୍ରନାଥ ଦାସ, ଲାଲା ହଂସରାଜ, ବାଙ୍କନିଧି ପଟ୍ଟନାୟକ, ରାଜେନ୍ଦ୍ର ଲାଲ ଦତ୍ତ, ରାୟବାହାଦୂର ବିଶ୍ୱମ୍ଭର ମିଶ୍ର, ଦୈତାରୀ ବାରିକ ପ୍ରଭୃତି ବିଖ୍ୟାତ ପ୍ରଧାନ ଶିକ୍ଷକମାନେ ଏହି ସ୍କୁଲର ଦାୟିତ୍ୱ ବହନ କରି ଏହାକୁ ଓଡ଼ିଶାର ଗୋଟିଏ ଆଦର୍ଶ ସ୍କୁଲରେ ପରିଣତ କରି ପାରିଥିଲେ । ବାରିପଦା ସ୍କୁଲର ଛାତ୍ରମାନେ ଗର୍ବର ସହିତ ସେମାନଙ୍କ ସ୍କୁଲର ନାମ ଉଚ୍ଚାରଣ କରୁଥିଲେ ।

ଆମେ ପଢ଼ିବାବେଳେ ଆମ ସ୍କୁଲର ହେଡ଼ମାଷ୍ଟର ଥିଲେ, ରାୟବାହାଦୂର ବିଶ୍ୱମ୍ଭର ମିଶ୍ର ଓ ଦୈତ୍ୟାରୀ ବାରିକ । ବିଶ୍ୱମ୍ଭର ବାବୁ ଥିଲେ କଟକ କଲେଜିଏଟ ସ୍କୁଲର ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ । ଜଣେ ଦକ୍ଷ ପ୍ରଧାନ ଶିକ୍ଷକ, ଶିକ୍ଷାବିତ୍ ତଥା ଇଂରାଜୀ ଭାଷା ଓ ସାହିତ୍ୟର ବିଦ୍ୱାନ ଭାବେ ତାଙ୍କର ଅନେକ ସୁଖ୍ୟାତି ଥିଲା । ସେ ଅତ୍ୟନ୍ତ ସ୍ୱଳ୍ପବାକ୍ ଓ ଗମ୍ଭୀର ପ୍ରକୃତିର ମଣିଷ ଥିଲେ । ସ୍କୁଲ ସମୟରେ ସେ ସବୁବେଳେ ଔପଚାରିକ ପୋଷାକରେ ରହୁଥିଲେ । ପାଉଁଶିଆ କିମ୍ବା ଘିଅ ରଙ୍ଗର ଗଳାବନ୍ଦ କୋଟ ଓ ପ୍ୟାଣ୍ଟ, ପାଦରେ ପାଲିସ କରା କଳା ଜୋତା ଏହାହିଁ ଥିଲା ତାଙ୍କ ପୋଷାକ । ମୁଣ୍ଡରେ ଛୋଟ ଛୋଟ ବାଳ । ମୁହଁରେ ନିର୍ଲିପ୍ତ ଗାମ୍ଭୀର୍ଯ୍ୟ । ସେ ପାନ ଖାଉନଥିଲେ, ସିଗାରେଟ୍ ଟାଣୁନଥିଲେ, ରଙ୍ଗରସକୁ ପ୍ରଶ୍ରୟ ଦେଉନଥିଲେ କିମ୍ବା କେତେବେଳେ ଆମୋଦିତ ହୋଇ ଉଚ୍ଚ ସ୍ୱରରେ ହସୁ ନଥିଲେ । ସବୁ

କଥାରେ ଥିଲା ତାଙ୍କର ସଂଯମ । ତାଙ୍କ ବ୍ୟକ୍ତିତ୍ୱ ଆଗରେ ସମସ୍ତେ ସଙ୍କୁଚିତ ହୋଇଯାଉଥିଲେ ।

ବିଶ୍ୱମ୍ଭର ବାବୁ ଥିଲେ ରେଭେନ୍ସା କଲେଜିଏଟ ସ୍କୁଲରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ଶିକ୍ଷକ । ବିଶ୍ୱଯୁଦ୍ଧର ପରିସମାପ୍ତି ପରେ ଯେତେବେଳେ ପୂର୍ବ ରଣାଙ୍ଗନରେ ନେତାଜୀଙ୍କ ଆଜାଦହିନ୍ଦ ଫୌଜର ଯୁଦ୍ଧ ଘୋଷଣା ବିଷୟ ଜଣା ପଡ଼ିଲା, ଏ ଦେଶର ଲୋକମାନେ ପାଗଳ ହୋଇଗଲେ ନେତାଜୀଙ୍କ ପାଇଁ । ସବୁ ସମ୍ବାଦପତ୍ର ଓ ସାମୟିକ ପତ୍ର ପତ୍ରିକାରେ ସେଇ ଗୋଟିଏ କଥା- ନେତାଜୀଙ୍କର ଜୟଗାନ । ଚିତ୍ରକର ମାନଙ୍କର ଗୋଟିଏ ଥିମ୍ ହୋଇଗଲା- ନେତାଜୀ । କବିମାନେ କେବଳ ବନ୍ଦନା ଗାଇଲେ ଭାରତ ଜନନୀର ସେହି ବୀରପୁତ୍ରଙ୍କ ପାଇଁ । ଅନେକ ପ୍ରବନ୍ଧ ଅନେକ ସ୍ମୃତିକଥା ରଚନା ହେଲା ନେତାଜୀଙ୍କ ପାଇଁ । ସମସ୍ତଙ୍କ କଣ୍ଠରେ ଗୋଟିଏ ଗୀତ- କଦମ କଦମ ବଢ଼ାଏ ଯା.... ସେତେବେଳେ ବ୍ରିଟିଶ ସରକାର ପ୍ରଚାର କରୁଥାଏ ନେତାଜୀ ବିମାନ ଦୁର୍ଘଟଣାରେ ପ୍ରାଣ ହରାଇଛନ୍ତି ବୋଲି । ଦିଲ୍ଲୀ ଲାଲକିଲ୍ଲାରେ ଆଜାଦ୍ ହିନ୍ଦ ଫୌଜର ଧୀଲନ ସଘଲ ସାହନୱାଜ ପ୍ରଭୃତିଙ୍କ ଐତିହାସିକ ବିଚାର ଆରମ୍ଭ ହୋଇଥାଏ । ଲୋକେ ଆଚମ୍ବିତ ହୋଇ ଆଲୋଚନା କରୁଥାନ୍ତି ନେତାଜୀଙ୍କ ଚୁମ୍ବକୀୟ ବ୍ୟକ୍ତିତ୍ୱ ବିଷୟରେ । ମଜଭୂତ ବ୍ରିଟିଶ ସାମ୍ରାଜ୍ୟର ମୂଳ ଭିତ୍ତି ଦୋହଲାଇ ଦେଇଥିବା ଏଇ ବିରାଟ ମଣିଷଟିର ଜନ୍ମ ହୋଇଥିଲା କଟକରେ, ତାଙ୍କ ବାଲ୍ୟ ଓ କୈଶୋର ସେ କଟାଇଥିଲେ କଟକ ସହରରେ- ସ୍କୁଲ ଶିକ୍ଷା ସମାପ୍ତ କରିଥିଲେ କଟକ କଲେଜିଏଟ ସ୍କୁଲରୁ । ଏ ଜାତିର ବୀରତ୍ୱ ଓ ସ୍ୱାଭିମାନର ପ୍ରତୀକ ନେତାଜୀଙ୍କ ବିଷୟ ସ୍ମୃତିଚାରଣ କରି ବିଶ୍ୱମ୍ଭର ବାବୁ ଆମକୁ ଗୋଟିଏ ଗପ କହିଥିଲେ । ସେ କଲେଜିଏଟ ସ୍କୁଲର ଜଣେ ଶିକ୍ଷକ ଥିବାବେଳେ ତାଙ୍କ ସ୍କୁଲର ଷଷ୍ଠ ଶ୍ରେଣୀରେ ପଢୁଥିଲା ସରକାରୀ ଓକିଲ ଜାନକୀବାବୁଙ୍କର ସେଇ ପୁଅ- ସୁଭାଷ । ଦିନେ ସେ ଭୁଲରେ ଶ୍ରେଣୀକୁ ଇଂରାଜୀ ରଚନା ଖାତା ଆଣିନଥିଲା । ଇଂରାଜୀ ରଚନା ପଢ଼ାଉଥିବା ଶିକ୍ଷକ ପିଲାଟିକୁ 'ଡିଟେନ୍' କରି କୁକୁର ବିଷୟରେ ଇଂରାଜୀରେ ଗୋଟିଏ ରଚନା ଲେଖିବା ପାଇଁ ଦଣ୍ଡାଦେଶ ଦେଲେ । ସୁଭାଷ ପକେଟରୁ ଗୋଟିଏ ଅଣି ବାହାର କରି ସାର୍‌ଙ୍କୁ ଗୋଟିଏ ଚାରିନମ୍ବର ଏକସରସାଇଜ୍ ଖାତା ମଗାଇ ଦେବାକୁ କହିଥିଲା । (ଚାରି ପଇସାରେ ଅଣାଏ ହେଉଥିଲା । ଗୋଟିଏ ଅଣିର ବର୍ତ୍ତମାନ ମୁଦ୍ରାସହ ବିନିମୟ ମୂଲ୍ୟ ହେଉଛି ଛ' ନୂଆ ପଇସା ।)

ସ୍କୁଲ ଛୁଟି ପରେ ଡିଟେନ ହୋଇ ସେହି ପିଲା ରଚନା ଲେଖିବାକୁ ବସିଲା । ଏକାଗ୍ର ଭାବେ ସେ ଲେଖି ଚାଲିଥାଏ ତାର ରଚନା । ସେ ରଚନାର ଆଉ ଶେଷ ନାହିଁ । ମାଷ୍ଟ୍ରେ ଭାବିଥିଲେ ପିଲାଟା 'ଆଇ ହ୍ୟାଭ୍ ଏ ପ୍ୟାଟ୍ ଡ଼ଗ୍ । ହିଜ୍ ନେମ୍ ଇଜ୍ ଟମି ଇତ୍ୟାଦି ଲେଖି ଦଶବାର ଧାଡ଼ିରେ ରଚନା ଶେଷ କରିଦେବ । ସ୍କୁଲ ଛୁଟିପରେ ତାଙ୍କର ଶୀଘ୍ର ଘରକୁ ଫେରିଯିବା ପାଇଁ ତାଗିଦା ଥିଲା । ଦଶ ମିନିଟ୍ ପରେ ମାଷ୍ଟ୍ରେ ପଚାରିଲେ, ଲେଖା ସରିଲା ସୁଭାଷ ? ସୁଭାଷ କହିଲା, ଆଉ ଟିକିଏ ଅପେକ୍ଷା କରନ୍ତୁ ସାର୍ । ଏମିତି ଅପେକ୍ଷା କରୁ କରୁ ଘଣ୍ଟାଏ ବିତିଗଲା । ଶ୍ରେଣୀରେ ଚାବି ପକାଇବ ବୋଲି ଚୌକିଦାର ଆସି ପିଣ୍ଡାରେ ବସି ଦେଖୁଥାଏ ସ୍କୁଲ ଛୁଟିର ଘଣ୍ଟାଏ ପରେ ବି ଦଣ୍ଡ ପାଇଥିବା ପିଲାଟା ଡେସ୍କ ଉପରେ ମୁହଁ ମାଡ଼ି ଏକା ଲୟରେ ଲେଖି ଚାଲିଚି । ସୁଭାଷର ଲେଖାଶେଷ ହେବାବେଳକୁ ଚାରି ନମ୍ବର ଖାତାଟି ବି ଶେଷ ହୋଇଯାଇଥାଏ । ଷଷ୍ଠ ଶ୍ରେଣୀ ପିଲାଟା କୁକୁର ବିଷୟରେ କଣ ଏତେ ଲେଖିଲା ? ସେଦିନ ସେକଥା ଦେଖିବା ପାଇଁ ମାଷ୍ଟରଙ୍କର ସମୟ ନଥିଲା । ତାପରଦିନ ସେ ସ୍କୁଲକୁ ଆସି ଖାତାଟି ଖୋଲିଲେ । କିଛି ବୁଝି ପାରିଲେ ନାହିଁ ସେ । ମାଟ୍ରିକ୍ ଶ୍ରେଣୀର ଇଂରାଜୀ ଶିକ୍ଷକ ବିଶ୍ୱମ୍ଭର ବାବୁଙ୍କୁ ଖାତାଟି ଦେଖାଇ ସେ କହିଲେ, ସାର୍ କାଲି ଡିଟେନ୍ ରହି ଜାନକୀ ବାବୁଙ୍କ ପୁଅ ସୁଭାଷ ଏଇ ରଚନାଟି ଲେଖିଚି । ମୁଁ କିଛି ବୁଝି ପାରୁନାହିଁ, ଆପଣ ଟିକିଏ ଏଟାକୁ ଦେଖି ଦିଅନ୍ତୁ । ବିଶ୍ୱମ୍ଭର ବାବୁ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ସୁଭାଷର ରଚନା କୁକୁର ବିଷୟରେ ଗୋଟିଏ ସାରଗର୍ଭକ ଗବେଷଣାତ୍ମକ ନିବନ୍ଧ । ବଣ୍ୟ କୁକୁର ଆଦି ମାନବର ସାଥି ହୋଇ ଗୃହପାଳିତ ହେବା ଦିନଠାରୁ ଆଜିଯାଏ ତାର ସବୁ ଇତିବୃତ୍ତି ଓ ବିବର୍ତ୍ତନର କାହାଣୀ ରହିଚି ସେଥିରେ । ପୃଥିବୀରେ କେତେ ପ୍ରଜାତିର ଶ୍ୱାନ ଅଛନ୍ତି, କେଉଁ ପ୍ରଜାତି କେଉଁ ଦେଶରେ ମିଳନ୍ତି; ସେମାନଙ୍କ ରୂପ ଓ ଗୁଣର ବିଶେଷତ୍ୱ କଣ, ସବୁ କଥା ଅତି ନିଖୁଣ ଭାବେ, ଅତି ସୁନ୍ଦର ଭାଷାରେ ଷଷ୍ଠ ଶ୍ରେଣୀର ପିଲାଟା ଲେଖିଚି । ବିଶ୍ୱମ୍ଭର ବାବୁ ମଧ ସେହି ନିବନ୍ଧରେ ସନ୍ନିବେଶିତ ସବୁକଥା ଜାଣିନଥିଲେ । ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା ପଢ଼ି, କୁକୁର ବିଷୟରେ ଭଲ ଭାବେ ଜ୍ଞାନ ଆହରଣ କରିବା ପରେ ସେ ସୁଭାଷଙ୍କ ରଚନାଟିକୁ ପଢ଼ି, ବୁଝି ପାରିଥିଲେ ।

ସେ କହିଥିଲେ ଯେ ସୁଭାଷଙ୍କ ମହତ୍ତ୍ୱ ଅତି ବାଲ୍ୟକାଳରୁ ପରିସ୍ଫୁଟ ହୋଇଥିଲା । ଦିନେ ଦିନେ ସୁଭାଷ ଖାଲି ଭିତରେ ପିନ୍ଧା ଗେଞ୍ଜିଟି ପିନ୍ଧି

ସ୍କୁଲରେ ପହଞ୍ଚି ଯାଉଥିଲେ । ଶିକ୍ଷକ ସାର୍ଟ ନପିନ୍ଧିବାର କାରଣ ପଚାରିଲେ କହୁଥିଲେ, 'ବାଟରେ ଜଣେ ଗରିବ ଲୋକ ଖାଲି ଦେହରେ ଶୀତ ସହ୍ୟ କରି ପାରୁ ନଥିବାର ଦେଖି ତାକୁ ସାର୍ଟଟା ଦେଇଦେଲି ସାର୍ ।' ବିଶ୍ୱମ୍ଭର ବାବୁ ତାଙ୍କର ପ୍ରାକ୍ତନ ଛାତ୍ର ମହାନ୍ ବିପ୍ଳବୀ ନେତାଜୀଙ୍କ ବିଷୟରେ ଆହୁରି ଅନେକ କଥା କହି ତାଙ୍କ ପ୍ରିୟ ପ୍ରାକ୍ତନ ଛାତ୍ର-ସୁଭାଷଙ୍କ ପ୍ରତି ଅନେକ ଶ୍ରଦ୍ଧା ଜ୍ଞାପନ କରିଥିଲେ ।

ବିଶ୍ୱମ୍ଭର ବାବୁ ସରକାରୀ ଚାକିରିରୁ ଅବସର ନେବାପରେ ବାରିପଦା ସ୍କୁଲରେ ଚାକିରି କରିବା ପାଇଁ ପାଞ୍ଚବର୍ଷ ପାଇଁ କଣ୍ଟ୍ରାକ୍ଟ କରି ଆସିଥିଲେ । ଚୁକ୍ତିକାଳ ସରିଯିବା ପରେ ସେ ପଦତ୍ୟାଗ କରି ଅବସର ଜୀବନ କଟାଇବା ପାଇଁ କଟକ ଫେରିଯାଇଥିଲେ । ମୟୂରଭଞ୍ଜ ଷ୍ଟେଟର ଦ୍ୱିତୀୟ ହାଇସ୍କୁଲ ରାଇରଙ୍ଗପୁର ହାଇସ୍କୁଲର ହେଡ଼ମାଷ୍ଟର ପଦରୁ ବଦଳି ହୋଇ ଦୈତ୍ୟାରୀ ବାରିକ ଆମ ସ୍କୁଲର ହେଡ଼ମାଷ୍ଟର ହୋଇ ଆସିଥିଲେ । ବାରିପଦା ହାଇସ୍କୁଲର ସହକାରୀ ପ୍ରଧାନ ଶିକ୍ଷକ ଶଚ୍ଚିଦାନନ୍ଦ କାନୁନ୍‌ଗୋ ପଦୋନ୍ନତି ପାଇ ରାଇରଙ୍ଗପୁର ସ୍କୁଲର ହେଡ଼ମାଷ୍ଟର ହୋଇ ବଦଳି ହୋଇଗଲେ । ଦୈତ୍ୟାରୀ ବାବୁ ମଧ୍ୟ ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ଜଣେ ଶୃଙ୍ଖଳା ପ୍ରେମୀ ପ୍ରଧାନ ଶିକ୍ଷକ ଭାବେ ସେ ସବୁ ସହକାରୀ ଶିକ୍ଷକ ଓ ଛାତ୍ରମାନଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ହୋଇ ପାରିଥିଲେ । ଇଂରାଜୀ ଭାଷା ଓ ସାହିତ୍ୟରେ ତାଙ୍କର ଅଗାଧ ଦକ୍ଷତା ଥିଲା ଓ ତାଙ୍କର ଶିକ୍ଷାଦାନର ପ୍ରଣାଳୀ ମଧ୍ୟ ଥିଲା ଭାରି ସରସ । ସେ ତାଙ୍କ ଶ୍ରେଣୀର ଛାତ୍ରମାନଙ୍କୁ ମନ୍ତ୍ରମୁଗ୍ଧ କରି ରଖୁଥିଲେ । ଇଂରାଜୀ ବ୍ୟାକରଣ ପରି ନୀରସ ବିଷୟଟିକୁ ମଧ୍ୟ ସେ ଚିତ୍ତାକର୍ଷକ କରି ନିତାନ୍ତ ଅମନଯୋଗୀ ଛାତ୍ରକୁ ଇଂରାଜୀ ବ୍ୟାକରଣ ପଢ଼ିବା ପାଇଁ ଆଗ୍ରହୀ କରିଦେଉଥିଲେ । ଦୈତ୍ୟାରୀ ବାବୁ କୌଣସି ଛାତ୍ରର ଦୋଷ ଦେଖିଲେ ତାକୁ ଶାରୀରିକ ଦଣ୍ଡ ଦେଉନଥିଲେ, ଜୋରିମନା କରୁନଥିଲେ କିନ୍ତୁ କଠୋର ଭାବେ ଭର୍ତ୍ସନା କରୁଥିଲେ । କୌଣସି ତ୍ରୁଟିପାଇଁ ତାଙ୍କ ବିଦ୍ରୂପାତ୍ମକ ବ୍ୟଙ୍ଗ ଭର୍ତ୍ସନା ଶୁଣିବା ପରେ କୌଣସି ଛାତ୍ର ସେହି ତ୍ରୁଟିର ପୁନରାବୃତ୍ତି କରିବାକୁ ସାହସ କରୁନଥିଲେ । ଶ୍ରେଣୀରେ ପାଠପଢ଼ା ଚାଲିଥିବାବେଳେ କୌଣସି ଛାତ୍ର ବସି ଗୋଡ଼ ହଲାଇବାର ଦେଖିଲେ ସାର୍ କହୁଥିଲେ 'ଆରେ ତା ଗୋଡ଼ତଳେ ଗୋଟିଏ ସିଙ୍ଗର ସିଲାଇ କଳ ରଖିଦେଲେ ଅନେକ କପଡ଼ା ସିଲାଇ ହୋଇ ଯାଇପାରନ୍ତା । ପାଠ ପଢ଼ା ସହିତ କପଡ଼ା ସିଲାଇ କରି ବିଚରା ବେଶ ଦୁଇ ପଇସା ରୋଜଗାର କରି ପାରନ୍ତା ।' କୌଣସି ପିଲାକୁ

ପାନ ଚୋବାଉଥିବାର ଦେଖିଲେ, ସେ ତତ୍‌କ୍ଷଣାତ୍ ତାଙ୍କ ପାନ ବଟାଟି ଖୋଲି କହୁଥିଲେ, 'ବାପା ମୋ ବଟାରୁ ଖଣ୍ଡିଏ ପାନ ନେଇ ପାଟିରେ ପକା । ଭଲ ମସଲା ଦିଆ ଗୁଣ୍ଡି ଆଉ ଜର୍ଦ୍ଦା ପଡ଼ିଚି ଏ ପାନରେ ।' ସେ କଥା ଶୁଣିବାପରେ ଦୋଷୀ ଛାତ୍ରଟିର ମୁଣ୍ଡ ତଳକୁ ହୋଇ ଯାଉଥିଲା । ତାଙ୍କ ପ୍ରଶ୍ନର କେହି ଅପ୍ରାସଙ୍ଗିକ ଉତ୍ତର ଦେଲେ ସେ ହସିଦେଇ ମନ୍ତବ୍ୟ କହୁଥିଲେ- 'ତୃଷାର୍ତ୍ତ ହୋଇଥା ଆମି ମାଗିଲାମ ଜଲ୍ । ତାଡ଼ା ତାଡ଼ି ଏନେ ଦିଲୋ ଆଧ ଖାନା ବେଲ୍ ।' ତା ଅର୍ଥ ତୃଷାର୍ତ୍ତ ହୋଇ ମୁଁ ପାଣି ମାଗିଲି ସେ ତରବର ହୋଇ ମୋତେ ଅଧେ ବେଲ ଧରାଇ ଦେଲା ।

ଦୈତ୍ୟାରୀ ବାବୁଙ୍କ କୌତୂକ ରସବୋଧ ଅତି ପ୍ରଖର ଥିଲା । ଭାରି ହସଖୁସି ମେଜାଜର ମଣିଷ ଥିଲେ ସେ । ବିରାଟ ପରିବାରରେ ଅନେକ ଆତ୍ମୀୟ ସ୍ୱଜନଙ୍କୁ ପ୍ରତିପୋଷଣ କରୁଥିଲେ ସେ । ନିଜର ଅଭାବ ଓ ଅସୁବିଧାକୁ ସେ କେବେ ଭ୍ରୁକ୍ଷେପ କରୁନଥିଲେ । ମୋତେ ଥରେ ସେ କହିଥିଲେ, 'ଜାଣୁ, ମୋ ଜେଜେବାପା ହସୁ ହସୁ ହାର୍ଟଫେଲ ହୋଇ ମରିଥିଲେ । ମୋ ବାପା ବି ସେମିତି ସଜ୍ଞାନରେ କଥା କହୁ କହୁ ଆଖି ବୁଜିଦେଇଥିଲେ । ଦେଖିବୁ ମୁଁ ବି ଘାଣ୍ଟି ହେବିନାହିଁ । ହସି ହସି ଚାଲିଯିବି ।' ପରିଣତ ବୟସରେ ସାର୍ ପଡ଼ିଯାଇ ଅଣ୍ଟାରେ ଆଘାତ ପାଇଥିଲେ । ତାପରେ ସେ ଅଜ୍ଞାନ ହୋଇଗଲେ- ତିନିଦିନ 'କୋମା'ରେ ରହି ସେ ଚାଲିଗଲେ । ତାଙ୍କ ମୃତ୍ୟୁ ଖବର ପାଇ ମୁଁ କାନ୍ଦି ପକାଇଥିଲି । ମୁଁ କେବେ ବି ମେଧାବୀ ଛାତ୍ର ନଥିଲି । ମୋର ଛାତ୍ରଜୀବନ ଉଜ୍ଜ୍ୱଳ ନଥିଲା । ତଥାପି ସାର୍ ମୋତେ ଭଲ ପାଉଥିଲେ । ମୁଁ ତାଙ୍କ ବଡ଼ପୁଅ ରବିର ସହପାଠୀ ଥିଲି । ଆମ ଦୁଇ ପରିବାର ଭିତରେ ସୁସଂପର୍କ ଥିଲା । ତେଣୁ ଅନେକ ସମୟରେ ମୁଁ ତାଙ୍କ ଘରକୁ ଯାଉଥିଲି । ମୁଁ ଚାକିରି କରିବା ପରେ ଅଳ୍ପଦିନ ପାଇଁ ବାରିପଦାରେ ମୋର ପୋଷ୍ଟିଂ ହୋଇଥିଲା । ସେତେବେଳକୁ ଦୈତ୍ୟାରୀବାବୁ ଚାକରିରୁ ଅବସର ନେଇ ସାରିଥିଲେ । ସେ ସମୟରେ ତାଙ୍କ ସହିତ ଦେଖା ହେଲେ ସେ ଅନେକ ଗପ କରୁଥିଲେ ।

ଦୈତ୍ୟାରୀ ବାବୁ ନିଜକୁ ନେଇ ବ୍ୟଙ୍ଗ କରିବା ପାଇଁ ପଛାଉ ନଥିଲେ । ସେ ଥରେ ମୋତେ କହିଥିଲେ ଯେ, ବି.ଏ ପାଶ୍ କରିବା ପରେ ସେ ତାଙ୍କ ଗାଁ ମାଇନର ସ୍କୁଲର ହେଡ଼ମାଷ୍ଟର ହୋଇଥାନ୍ତି । ସେ ତାଙ୍କ ଅଞ୍ଚଳର ପ୍ରଥମ ଗ୍ରାଜୁଏଟ୍ ଓ ସେହି ଅଞ୍ଚଳର ଏକମାତ୍ର ଶିକ୍ଷାୟତନର ପ୍ରଧାନ ଶିକ୍ଷକ ହୋଇଥିବାରୁ ଲୋକମାନେ ତାଙ୍କୁ ଭାରି ସମୀହ କରୁଥାନ୍ତି । ସେହି ସମୟରେ

ତାଙ୍କ ଗାଁର ଜଣେ ପିଲାର ପାଖ ଗାଁର ଗୋଟିଏ ଝିଅ ସହିତ ବାହାଘର ସ୍ଥିର ହୋଇଥାଏ । ଉଭୟ ବର ଓ କନ୍ୟା ଘରେ ତାଙ୍କ ବାପାଙ୍କ କ୍ଷୌର ସେବା ଥିଲା । ସେ ଉଭୟଙ୍କ ଘରେ ବିବାହ କାର୍ଯ୍ୟ ତୁଲାଇବା ପାଇଁ ଖବର ପାଇବା ପରେ, ଦୈତ୍ୟାରୀ ବାବୁଙ୍କୁ କହିଲେ, ବରଘରଟା ଆମ ଗାଁରେ ସେମାନଙ୍କ ସହିତ ଆମର ସମ୍ପର୍କ ବେଶି । ତେଣୁ ମୁଁ ସେଠାକୁ ଯାଇ ବାହାଘର କାମ କରିଦେବି । ତୁ କନ୍ୟାଘରକୁ ଚାଲି ଯା । ଦୈତ୍ୟାରୀ ବାବୁ ବୁଝି ପାରିଲେ ବାପା ତାଙ୍କୁ କନ୍ୟାଘରର ଭଣ୍ଡାରି କାମ କରିବା କଥା କହୁଛନ୍ତି । ନିଜେ ବର ଓ କନ୍ୟାର ଦୁଇଜଣ ବଡ଼ ଭାଇ ଦୈତ୍ୟାରୀ ବାବୁଙ୍କ ଛାତ୍ର ହୋଇଥିବାରୁ ଓ ସେ ନିଜେ ଜଣେ ମାଇନର ସ୍କୁଲର ଗ୍ରାଜୁଏଟ ହେଡ଼ମାଷ୍ଟର ହୋଇଥିବା ଦୃଷ୍ଟିରୁ ଏହି ବିଭାଘରରେ ଭଣ୍ଡାରି କାମ କରିବା ତାଙ୍କ ପକ୍ଷେ ସମ୍ଭବ ନୁହେଁ । ଏ କଥା ବାପା ବୁଝିପାରୁ ନଥିବା ଦେଖି, ଦୈତ୍ୟାରୀ ବାବୁ ଆଶ୍ଚର୍ଯ୍ୟ ହୋଇଥିଲେ । ସେ ବାପାଙ୍କୁ ପଚାରିଲେ, 'ମୁଁ ସେ ଝିଅଘରକୁ ଯାଇ କ'ଣ କରିବି ?' ସେ କଥା ଶୁଣି ତାଙ୍କ ବାପା ରାଗିଯାଇ କହିଲେ, 'ବୋକାଟା କିରେ, କଲେଜରେ ପାଠ ପଢ଼ି ସାରିବି ଏତିକି କଥା ବୁଝି ପାରୁନୁ ? ବରଘର କନ୍ୟାଘର ଦୁଇଜଣ ଆମ ଜଜମାନ । ଦୁଇଘର ନିମିତ୍ୟ ମୁଁ ଏକା କେମିତି କରିବି ? ମୁଁ ବରଘର ସମ୍ଭାଳୁଚି, ତୁ ଯାଇ କନ୍ୟାଘର କାମ ତୁଲାଇ ଦେ ।' ଦୈତ୍ୟାରୀ ବାବୁ ଯେତେ ବୁଝାଇଲେ ଯେ ସେ କନ୍ୟାଘର ଭଣ୍ଡାରି କାମ କରିପାରିବେ ନାହିଁ, ସେ କଥା ତାଙ୍କ ବାପା ଶୁଣିଲେ ନାହିଁ । ଓଲଟି ରାଗିଯାଇ କହିଲେ, 'ଯାପ କୁଳାଙ୍ଗାର କୁଳ ବେଉସା କରିବାକୁ ଲାଜମାଡୁଚି ? କ'ଣ ନା ମୁଁ ପାଠ ପଢ଼ିଚି । ମାଷ୍ଟର ହେଇଚି । ଧିକ୍ ତୋ ପାଠପଢ଼ା, ଧିକ୍ ତୋ ମାଷ୍ଟର ପଣିଆ ।' ବାପାଙ୍କ ଠାରୁ ଅଧିକ ଭର୍ତ୍ସନା ନ ଶୁଣିବା ପାଇଁ ଦୈତାରୀ ବାବୁ ବାହାଘର ଦିନ ଧୋତି ପଞ୍ଜାବି ପିନ୍ଧି କନ୍ୟାଘରକୁ ଚାଲିଯାଇଥିଲେ । ଦୈତ୍ୟାରୀ ବାବୁଙ୍କୁ ଦେଖି କନ୍ୟାଘର ଲୋକମାନେ କୃତ୍ୟ କୃତ୍ୟ ହୋଇଗଲେ । କନ୍ୟାର ଦୁଇ ବଡ଼ଭାଇ ତାଙ୍କ ପାଦ ତଳେ ମୁଣ୍ଡିଆ ମାରି ପାଦ ଧୂଳି ନେଇଥିଲେ । କନ୍ୟାପିତା ବିନୟ ବିଗଳିତ ହୋଇ କହିଲେ, 'ଆପଣ ଯେ ମୋ ଦୁଆରେ ପାଦଦେବେ ଏ କଥା ଭାବି ନଥିଲି । ଯାହାହେଉ ଆପଣ ଆସି ଯାଇଛନ୍ତି । ଏଥର ଆମର କିଛି ଚିନ୍ତା ନାହିଁ ।'

ଦୈତ୍ୟାରୀବାବୁ ଗମ୍ଭୀର ଭାବେ କହିଲେ, 'ବାପା ତୁମ ଘରକୁ ନିମିତ୍ୟ କରି ଆସିପାରିବେ ନାହିଁ । ତେଣୁ ମୋତେ ପଠାଇଛନ୍ତି ।'

କନ୍ୟାପିତା କହିଲେ, 'ସେ କଥା ଆମେ ଜାଣିଥିଲୁ । ସେ ତ ବରଘର କାମ କରିବେ, ଏଠାକୁ କେମିତି ଆସିଥାନ୍ତେ ? ତେଣୁ ଆମେ ଆଉ ଜଣେ ଭଣ୍ଡାରି ଯୋଗାଡ଼ କରି ସାରିଛୁ ।'

କନ୍ୟାଘର ଲୋକମାନଙ୍କ ସନିର୍ବନ୍ଧ ଅନୁରୋଧ ଯୋଗୁଁ ଦୈତ୍ୟାରୀ ବାବୁ କନ୍ୟାଘରେ ନିମନ୍ତ୍ରିତ ଅତିଥିଙ୍କ ଗହଣରେ ଭୂରି ଭୋଜନ କରି ବର ଆଗମନକୁ ଅପେକ୍ଷା କରି ରହିଲେ । ବର ଆସିଲା, କନ୍ୟାଘର ଭଣ୍ଡାରି ଯାଇ ବରଯାତ୍ରୀମାନଙ୍କ ଗୋଡ଼ ଧୋଇଦେଲା । ଦୈତ୍ୟାରୀ ବାବୁଙ୍କ ବାପା ଦେଖିଲେ, ସେ କନ୍ୟାଘରକୁ ବାହା ନିମିତ୍ୟ ତୁଳାଇବା ପାଇଁ ପଠାଇଥିବା ତାଙ୍କ ପୁଅ ମହା ଅଯେସରେ ଗୋଟିଏ ଚୌକିରେ ବସି ପାନ ଚୋବାଉଛନ୍ତି, ଆଉ ଦୁଇଜଣ ଝିଅ ତାଙ୍କ ପାଖରେ ଛିଡ଼ା ହୋଇ ତାଳପତ୍ର ପଙ୍ଖାରେ ତାଙ୍କୁ ବିଞ୍ଚୁଛନ୍ତି । ସେ ସେଦିନ ଆଉ କିଛି କହିଲେ ନାହିଁ । ତାପରଦିନ ଘରେ ଦୈତ୍ୟାରୀ ବାବୁଙ୍କୁ କହିଲେ, 'ତୋ ବାବୁଆନି ଯୋଗୁଁ କନ୍ୟାଘର ପାଉଣାଟା ବୁଡ଼ିଲା ।' ଦୈତ୍ୟାରୀବାବୁ କହିଲେ, 'ପାଉଣା କାହିଁକି ବୁଡ଼ିବ ବାପା ? କନ୍ୟାଘର ମୋତେ ଶାନ୍ତିପୁରୀ ଧୋତି ଯୋଡ଼, ହାଣ୍ଡିଏ ମିଠାଇ, ଆଉ ପାଞ୍ଚଟଙ୍କା ଗୁରୁ ଦକ୍ଷିଣା ଦେଇ ବିଦାୟ କରିଛନ୍ତି । ସେ ସବୁ ମୁଁ ମା'କୁ ଦେଇ ଦେଇଚି ।'

ଦୈତ୍ୟାରୀବାବୁ ଯେଉଁଦିନ ବାରିପଦା ହାଇସ୍କୁଲର ସହକାରୀ ପ୍ରଧାନ ଶିକ୍ଷକ ପଦରୁ ପଦୋନ୍ନତି ପାଇ ରାଇରଙ୍ଗପୁର ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ ବଦଳି ହେଲେ, ସେ ଉପଲକ୍ଷ୍ୟରେ ବାରିପଦା ସ୍କୁଲରେ ଗୋଟିଏ ବିଦାୟ ସମ୍ବର୍ଦ୍ଧନା ଅନୁଷ୍ଠିତ ହୋଇଥିଲା । ସେହି ଉତ୍ସବରେ ଛାତ୍ରମାନେ ତାଙ୍କ ବିଦାୟ-ଉପଢ଼ୌକନ ହିସାବରେ ଧୋତି, ମଠା ପଞ୍ଜାବୀ, ପଶମ ସାଲ, ରୂପା ପାନବଟା, ରୂପାବେଣ୍ଟ ଥିବା ୱାକିଂ ଷ୍ଟିକ୍ ସହ ସେଫିଲଡ଼ ନିର୍ମିତ ଗୋଟିଏ 'ଇଗଲ୍' ମାର୍କା କ୍ଷୁର ଉପହାର ଦେଇଥିଲେ । ସେତେବେଳେ ସେଫ୍ଟି ରେଜର ଚାଲୁହୋଇନଥିଲା । ଅଧିକାଂଶ ଲୋକମାନେ କ୍ଷୁରରେ ଦାଢ଼ି କ୍ଷିଅର ହେଉଥିଲେ । ତେବେ ସ୍କୁଲ ପିଲାଏ ସାର୍ ଜାତିରେ ଭଣ୍ଡାରି ବୋଲି ମଜା କରିବା ଉଦ୍ଦେଶ୍ୟରେ କ୍ଷୁରଟି ଦେଇଥିଲେ । ବିଦାୟ ସମ୍ବର୍ଦ୍ଧନାର ଉତ୍ତର ଦେବାକୁ ଯାଇ ଦୈତ୍ୟାରୀବାବୁ କହିଲେ ଯେ ପିଲାଏ ଦେଇଥିବା ସବୁ ଉପଢ଼ୌକନ ଭିତରେ କ୍ଷୁରଟି ପାଇ ସେ ଅତିଶୟ ଆନନ୍ଦିତ । ସେ ଉଚ୍ଚଶିକ୍ଷା ପାଇ ଶିକ୍ଷକ ହେବା ପରେ ତାଙ୍କ କୌଳିକ ବୃତ୍ତି କଥା ଭୁଲି ଯାଉଥିଲେ । ଯାହାହେଉ

ଛାତ୍ରମାନେ ଆଜି ତାଙ୍କୁ ସେ କଥା ସ୍ମରଣ କରାଇ ଦେଇଛନ୍ତି । ଏହା ପରେ ସେ କୌଳିକ ବୃତ୍ତି ଓ ଶ୍ରମ ମର୍ଯ୍ୟାଦା ବିଷୟରେ ନାତିଦୀର୍ଘ ଭାଷଣ ଦେଇଥିଲେ । ସେ ତାଙ୍କ ଅନ୍ତିମ ଉପଦେଶ ଛଳରେ କହିଥିଲେ, ଛାତ୍ରମାନଙ୍କର ଏକମାତ୍ର ବୃତ୍ତିହେଉଚି ଅଧ୍ୟୟନ । ତାକୁ ନିଷ୍ଠାପର ଭାବେ ପାଳନ କରିବା ପ୍ରତ୍ୟେକ ଛାତ୍ରର କର୍ତ୍ତବ୍ୟ ।

ଦୈତ୍ୟାରୀବାବୁ ଥିଲେ ସମସ୍ତଙ୍କର ସମ୍ମାନସ୍ପଦ, ପ୍ରିୟ ଜଣେ ଅଜାତଶତ୍ରୁ ମଣିଷ । ସେ ଯେଉଁବର୍ଷ ଚାକିରିରୁ ଅବସର ନେବା କଥା ସେହିବର୍ଷ ନୀହାର ରଞ୍ଜନ ହୋତା ଓ ଯୋଗେଶ ଚନ୍ଦ୍ର ପତି ବୋଲି ବାରିପଦା ଏମ୍.କେ.ସି ହାଇସ୍କୁଲର ଦୁଇଜଣ ଛାତ୍ର ବିଶ୍ୱ ବିଦ୍ୟାଳୟରେ ଯଥାକ୍ରମେ ପ୍ରଥମ ଓ ଚତୁର୍ଥ ସ୍ଥାନ ଅଧିକାର କରି ଥିବାରୁ ସେ ଭାରି ଆନନ୍ଦିତ ହୋଇଥିଲେ । କୌଣସି କାର୍ଯ୍ୟୋପଲକ୍ଷେ ମୁଁ ତାଙ୍କ ପାଖକୁ ଯାଇଥିବା ଉପଲକ୍ଷେ ସେ ମୋତେ କହିଥିଲେ, ପିଲା ଦୁଇଟା ମୋର ଦୁଇବର୍ଷ ଚାକିରି କାଳ ବଢ଼ାଇ ଦେଲେ, ମୁଁ ଭାରି ଖୁସି ।

ସରକାରୀ ଚାକିରିରୁ ଅବସର ଗ୍ରହଣ ପରେ ସେ ବାରିପଦା ପୌରପାଳିକା ଦ୍ୱାରା ସଦ୍ୟ ପ୍ରତିଷ୍ଠିତ ଶରତଚନ୍ଦ୍ର ବିଦ୍ୟାପୀଠ ହାଇସ୍କୁଲର ଦାୟିତ୍ୱ ଗ୍ରହଣ କରିଥିଲେ । ସେ ଏହି ସ୍କୁଲଟିକୁ ସଙ୍ଗଠିତ କରି ଗୋଟିଏ ମର୍ଯ୍ୟାଦାପୂର୍ଣ୍ଣ ସ୍କୁଲରେ ପରିଣତ କରି ଦେଇଥିଲେ । ସେଠାରୁ ଅବ୍ୟାହତି ନେବାପରେ ପରିଣତ ବୟସରେ ସେ ଭଞ୍ଜପୁର ହାଇସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକ ହୋଇଥିଲେ । ଜୀବନର ଅନ୍ତିମ ଦିବସ ପର୍ଯ୍ୟନ୍ତ ସେ ଶିକ୍ଷକତା କରି ଯାଇଥିଲେ । ତାଙ୍କ ଶେଷ ଜୀବନରେ ସେ ତାଙ୍କ ନାତି ନାତୁଣୀ ବୟସର ଛାତ୍ରଛାତ୍ରୀମାନଙ୍କୁ ନିଜ ଘରେ ଟିଉସନ ପଢ଼ାଉ ଥିଲେ । ଅଧିକାଂଶ ପିଲାଙ୍କୁ ସେ ମାଗଣାରେ ପାଠ ପଢ଼ାଉଥିଲେ । ସେମାନଙ୍କୁ କୋଳରେ ବସାଇ ଜଳଖିଆ ଖାଇବାକୁ ଦେଇ ଅତି ସ୍ନେହରେ ପାଠ ପଢ଼ାଉଥିଲେ ସେ । ଦୈତ୍ୟାରୀ ବାବୁଙ୍କ ପରି ଜଣେ ଉତ୍ସର୍ଗୀକୃତ ଛାତ୍ର ବତ୍ସଳ ଶିକ୍ଷକ ବିଷୟରେ ଆଜି କଳ୍ପନା ମଧ୍ୟ କରିହେଉନାହିଁ ।

ବାରିପଦା ହାଇସ୍କୁଲର ସ୍କାଉଟ ଶିକ୍ଷକ ଥିଲେ କାଶୀନାଥ ମିଶ୍ର । କାଶୀନାଥ ବାବୁ ପୁରୀ ଜିଲ୍ଲା ସାକ୍ଷୀଗୋପାଳ ଅଞ୍ଚଳର ଲୋକ ଓ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର ଥିଲେ । ସତ୍ୟବାଦୀର ପଞ୍ଚସଖାଙ୍କ ଘନିଷ୍ଠ ସମ୍ପର୍କରେ ସେ ଆସିଥିଲେ ଓ ସେମାନଙ୍କ ଦ୍ୱାରା ମାନବ ସେବା

କାମରେ ସେ ଦୀକ୍ଷିତ ହୋଇଥିଲେ । ସେ ବାରିପଦା ହାଇସ୍କୁଲର ଛାତ୍ରମାନଙ୍କ ଭିତରେ ମାନବ ସେବାର ବୀଜ ବପନ କରିଦେଇଥିଲେ । ତାଙ୍କ ତତ୍ତ୍ୱାବଧାନରେ ବାରିପଦା ସ୍କୁଲର ସ୍କାଉଟ ଆନ୍ଦୋଳନ ବେଶ ବଳିଷ୍ଠ ହୋଇପାରିଥିଲା । ସେ ନିୟମିତ ଭାବେ ଆମକୁ ସ୍କାଉଟିଂ ବିଷୟରେ ତାଲିମ ଦେଉଥିଲେ । ପ୍ରତିବର୍ଷ ଦୁଇ ତିନିଥର ସ୍କାଉଟ ର୍ୟାଲି ବା ବାଲଚର ମେଳା ହେଉଥିଲା । ଅନେକ ମଜା ହେଉଥିଲା ସେ ସବୁ ର୍ୟାଲି ମାନଙ୍କରେ । ଘର ପୋଡ଼ି ବା ବନ୍ୟା ବିପ୍ଳାତ ହେଲେ କାଶୀନାଥ ବାବୁଙ୍କ ନେତୃତ୍ୱରେ ସ୍କାଉଟ ବାହିନୀ ନିଆଁଲିଭା ବା ବନ୍ୟାଞ୍ଚଳରେ ତ୍ରାଣ କାର୍ଯ୍ୟ ପାଇଁ ପହଞ୍ଚି ଯାଉଥିଲେ । ତାଙ୍କଦ୍ୱାରା ପ୍ରଶିକ୍ଷିତ ଆମ ସ୍କୁଲର ଶରତଚନ୍ଦ୍ର ବିଦ୍ଧାଣୀ ପ୍ୟାରିସ୍ ଠାରେ ହୋଇଥିବା ଆନ୍ତର୍ଜାତିକ ସ୍କାଉଟ ଜାମ୍ବୋରିରେ ଯୋଗଦେବା ପାଇଁ ଭାରତୀୟ ପ୍ରତିନିଧି ଦଳରେ ଯାଇଥିଲେ ।

ବିରାଟ ବାରିପଦା ହାଇସ୍କୁଲର ଖେଳ ଶିକ୍ଷକ ଥିଲେ ବ୍ରଜସୁନ୍ଦର ଦାଶ- ସଂକ୍ଷେପରେ ବ୍ରଜବାବୁ । ସେହି ସ୍କୁଲର ଚାଳିଶ ଜଣ ଶିକ୍ଷକଙ୍କ ଭିତରେ ସେ ଥିଲେ ଏକମାତ୍ର ନନ୍-ମେଟ୍ରିକ୍ ଶିକ୍ଷକ । କିନ୍ତୁ 'ସାର୍' କହିଲେ ପିଲାମାନେ ଅନ୍ୟ କୌଣସି ଶିକ୍ଷକଙ୍କୁ ନବୁଝି ତାଙ୍କୁଇ ବୁଝୁଥିଲେ । ବ୍ରଜବାବୁ ସ୍କୁଲରେ ପାଠ ପଢ଼ାଉ ନଥିଲେ କିମ୍ବା ଶିକ୍ଷାଦାନ ସହିତ ତାଙ୍କର କୌଣସି ସମ୍ପର୍କ ନଥିଲା । ତାଙ୍କ କାମ ଥିଲା ସପ୍ତାହରେ ଦିନେ, ଶନିବାର ଦିନ ସକାଳୁଆ ସ୍କୁଲର ପ୍ରଥମ ପିରିୟଡ଼ରେ ସ୍କୁଲର ସବୁ ପିଲାଙ୍କୁ ସ୍କୁଲ ଖେଳପଡ଼ିଆରେ ଠୁଳ କରି ମାସ୍ ଡ୍ରିଲ କରାଇବା । ଅନ୍ୟ ଦିନମାନଙ୍କରେ ସପ୍ତାହରେ ଦିନେ ପ୍ରତିଶ୍ରେଣୀର ଗୋଟିଏ ଖେଳ ପିରିୟଡ଼ ରହେ । ସେହି ପିରିୟଡ଼ରେ ଆମେ ଧାଡ଼ି ହୋଇଯାଇ ଫ୍ରି-ହଷ୍ଟେଲ ଆଗରେ ଥିବା ପଡ଼ିଆରେ ଠୁଳ ହେଉ । ସାର୍ ଆମକୁ ବହୁଚୋରି ଖେଳିବା ପାଇଁ ବରାଦ କରିଦେଇ ଗୋଟିଏ ଓସ୍ତ ଗଛ ମୂଳରେ ଚେୟାରଟିଏ ଉପରେ ବସି ହାତରେ ଧରିଥିବା ନଭେଲ୍‌ରେ ମନୋନିବେଶ କରନ୍ତି । ଅସମ୍ଭବ ଥିଲା ତାଙ୍କ ଉପନ୍ୟାସ ପଢ଼ିବା ନିଶା । ସେ ଟିକିଏ ଅବସର ପାଇଲେ ଇଂରାଜୀ ବଙ୍ଗଳା ଓଡ଼ିଆ ହିନ୍ଦୀ ଯେକୌଣସି ଭାଷାର ଉପନ୍ୟାସଟିଏ ଯୋଗାଡ଼ କରି ପଢୁଥିଲେ । ସେହି ବ୍ରଜବାବୁଙ୍କୁ ସବୁ ପିଲା ଭାରି ଭୟ ଓ ଭକ୍ତି କରୁଥିଲେ । ପ୍ରଚଣ୍ଡ ଥିଲା ତାଙ୍କ ବ୍ୟକ୍ତିତ୍ୱ । ତାଙ୍କ କଥା ଅମାନ୍ୟ କରିବାକୁ କେହି ସାହସ କରୁନଥିଲେ । ସେ ସବୁବେଳେ ଧୋତି ଆଉ ଧଳା ହାଫ୍‌ସାର୍ଟ ପିନ୍ଧୁଥିଲେ । ପାଦରେ ଜୋତା ବା ଚପଲ

ବ୍ୟବହାର କରୁନଥିଲେ । ସବୁବେଳେ ଖାଲିପାଦରେ ଯିବା ଆସିବା କରୁଥିଲେ । ସଦା ରହୁଥିଲା ତାଙ୍କ ସୁଗଠିତ ଶରୀର ।

ବ୍ରଜବାବୁଙ୍କ ବଡ଼ବାପା ପଣ୍ଡିତ ବୈଷ୍ଣବ ଚରଣ ବିଦ୍ୟାସାଗରଙ୍କୁ ମହାରାଜା ଶ୍ରୀରାମଚନ୍ଦ୍ର ପାରଳା ଖେମୁଣ୍ଡିରୁ ଅଣାଇ ତାଙ୍କ ଦରବାରର ସଭାପଣ୍ଡିତ କରିଥିଲେ । ତାଙ୍କ ବିଦ୍‌ବତା ପାଇଁ ସମସ୍ତେ ତାଙ୍କୁ ସମୀହ କରୁଥିଲେ । ତାଙ୍କ ସାନଭାଇ ପଣ୍ଡିତ ବୃନ୍ଦିନାଥ ଦାଶ ବାରିପଦାରେ ବଡ଼ ଭାଇଙ୍କ ନିକଟରେ ରହି ସଂସ୍କୃତ ଶିକ୍ଷା ଲାଭ କରିବା ପରେ ବାରାଣସୀରେ ସଂସ୍କୃତ ଅଧ୍ୟୟନ କରି କଲିକତା ବିଶ୍ୱବିଦ୍ୟାଳୟରୁ କାବ୍ୟ-ସାଖ୍ୟ ତୀର୍ଥ ଉପାଧି ହାସଲ କରିଥିଲେ ଓ ବାରିପଦା ସଂସ୍କୃତ ଟୋଲର ପ୍ରଧାନ ଆଚାର୍ଯ୍ୟ ପଦବୀ ଅଳଙ୍କୃତ କରିଥିଲେ । ଏପରି ଏକ ପଣ୍ଡିତ ପରିବାରରେ ଜନ୍ମଗ୍ରହଣ କରିଥିଲେ ମଧ ବ୍ରଜବାବୁ ସଂସ୍କୃତ ବିଦ୍ୟା ତ ଦୂରର କଥା ବିଦ୍ୟା ଅଧ୍ୟୟନ ପ୍ରତି ସାମାନ୍ୟ ଆଗ୍ରହ ପ୍ରକାଶ କରିନଥିଲେ । ଆବାଲ୍ୟରୁ ସେ ଥିଲେ ଖେଳପ୍ରେମୀ । ସେ ଥିଲେ ଜଣେ ନିଛକ ପ୍ରତିଭା ସମ୍ପନ୍ନ ଖେଳୁଆଡ଼ । ଦୌଡ଼କୁଦ ଠାରୁ ଆରମ୍ଭ କରି ଫୁଟବଲ, ହକି, କ୍ରିକେଟ, ଟେନିସ୍, ଭଲିବଲ, ବ୍ୟାଡ଼ମିଣ୍ଟନ ପ୍ରଭୃତି ସବୁଖେଳରେ ସେ ଧୁରନ୍ଧର ଥିଲେ । ସ୍କୁଲ ପାଠ୍ୟକ୍ରମ ଶେଷ କରିବା ପୂର୍ବରୁ ସେ ଭାରତବର୍ଷର ବିଭିନ୍ନ ସହରରେ ହେଉଥିବା ସ୍ପୋର୍ଟସ ପ୍ରତିଯୋଗିତାରେ ଭାଗନେଇ ଚମ୍ପିୟନ ହେଉଥିଲେ । ପରେ ସେ ମାନ୍ଦ୍ରାଜ ଠାରେ ୱାଇ.ଏମ.ସି.ଏ ଦ୍ୱାରା ପରିଚାଳିତ 'ଫିଜିକାଲ ଟ୍ରେନିଂ ଇନିଷ୍ଟ୍ରକ୍ଟର' ହେବା ପାଇଁ ତାଲିମ ନେଉଥିବା ଅବସରରେ ୧୯୨୮ ମସିହାରେ ବିହାର-ଓଡ଼ିଶା ଅଲମ୍ପିକ ଓ ପରେ ଲେବାର ଅଲମ୍ପିକରେ ଭାଗନେଇ ଅନେକ ଗୁଡ଼ିଏ ବିଷୟରେ ସ୍ୱର୍ଣ୍ଣପଦକ ହାସଲ କରିଥିଲେ ଓ ହପ୍-ଷ୍ଟେପ୍-ଏଣ୍ଡ ଜମ୍ପରେ ସର୍ବଭାରତୀୟ ରେକର୍ଡ ସ୍ଥାପନ କରିବାକୁ ସମର୍ଥ ହୋଇଥିଲେ ।

ଦୌଡ଼କୁଦ ପ୍ରତି ଆଗ୍ରହ ଥିବା ସତ୍ତ୍ୱେ ସେ ଫୁଟବଲ ଖେଳରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ ଓ ବହୁଦିନ ପର୍ଯ୍ୟନ୍ତ ଫୁଟବଲ ଖେଳିଥିଲେ । ସେତେବେଳେ ଫୁଟବଲ ଥିଲା ଭାରତବର୍ଷର ସବୁଠାରୁ ଜନପ୍ରିୟ ଖେଳ । କଲିକତାର ଆଇ.ଏଫ୍.ଏ ସିଲଡ୍ ଓ ଲିଗ୍ ପ୍ରତିଯୋଗିତା ଥିଲା ସମଗ୍ର ଭାରତବର୍ଷର ସବୁଠାରୁ ମର୍ଯ୍ୟାଦାପୂର୍ଣ୍ଣ କ୍ରୀଡ଼ା ପ୍ରତିଯୋଗିତା । ମାତ୍ର ଷୋହଳବର୍ଷ ବୟସରେ ସେ କଲିକତାର ଆଇ.ଏଫ.ଏ ଦ୍ୱାରା ପରିଚାଳିତ ଲିଗ୍‌ର 'ଏ' ଡିଭିଜନରେ ଖେଳୁଥିବା ଭବାନୀପୁର ଟିମ୍ ଓ ପରେ ଏରିୟାନ୍ସ

ଟିମ୍‌ରେ ଲେଫଟ୍-ଆଉଟ ଭାବେ ଖେଳି ପ୍ରଭୂତ ସୁନାମ ଅର୍ଜନ କରିଥିଲେ । ସେ ଏରିଆନ୍ସ ଦଳରେ ଖେଳୁଥିବାବେଳେ ଷ୍ଟେଟସ୍‌ମ୍ୟାନ, ଅମୃତବଜାର ପତ୍ରିକା ପ୍ରଭୃତି ଇଂରାଜୀ ଖବର କାଗଜମାନେ ତାଙ୍କୁ ଡେଞ୍ଜାରସ୍ ଲେଫଟ୍ ଆଉଟ ବି.ଏସ. ଦାଶ କିମ୍ବା ଇନ୍‌ଭିଜିବଲ୍ ଲେଫଟ ଆଉଟ ବି.ଏସ୍. ଦାଶ ବୋଲି ଅଭିହିତ କରୁଥିଲେ । ସେ ଖେଳୁଥିବା ଏରିୟାନ୍ସ ଦଳ ପ୍ରତି ଅତି ଅନୁରକ୍ତ ଥିଲେ । ତାଙ୍କୁ ମୋହନ ବାଗାନ ପରି ମର୍ଯ୍ୟାଦାବନ୍ତ ଦଳ ନିଜ ଦଳରେ ସାମିଲ କରିବା ପାଇଁ ଆଗ୍ରହ ପ୍ରକାଶ କରିବାରୁ ସେ ତାହା ବିନୟର ସହ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

ଖେଳକୁଦ ପ୍ରତି ବ୍ରଜବାବୁଙ୍କ ଅତ୍ୟଧିକ ଆଗ୍ରହ ଓ ଅନୁରକ୍ତି ତାଙ୍କ ପାଠ ପଢ଼ାରେ ଅନ୍ତରାୟ ସୃଷ୍ଟି କରିଥିଲା । ସେ ମାଟ୍ରିକ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ପାରିନଥିଲେ । କିନ୍ତୁ ମାନ୍ଦ୍ରାଜ ଠାରେ ୱାଇ.ଏମ.ସି.ଏ ପରିଚାଳିତ ଶାରୀରିକ ପ୍ରଶିକ୍ଷଣ ତାଲିମ ନେଇ ସ୍କୁଲ କଲେଜରେ ଖେଳ-ଶିକ୍ଷକ ହେବା ଯୋଗ୍ୟତା ଅର୍ଜନ କରିଥିଲେ । ଏହାପରେ ସେ ପାଟନା ସାଇନ୍ସ କଲେଜ ପରି ଗୋଟିଏ ବିଖ୍ୟାତ କଲେଜରେ ଇନ୍ସପେକ୍ଟର ଅଫ୍ ଗେମସ୍ ଚାକିରି ପାଇଯାଇଥିଲେ । ସେତେବେଳେ ତାଙ୍କ ଦରମା ଥିଲା ମାସିକ ଦୁଇଶହ ଟଙ୍କା । କିନ୍ତୁ ବ୍ରଜବାବୁ ତାଙ୍କ ଜନ୍ମଭୂମି ବାରିପଦା ଛାଡ଼ି ବେଶିଦିନ ପାଟନାରେ ରହିପାରି ନଥିଲେ । ବାରିପଦା ଫେରି ଆସିବା ପାଇଁ ସେ ଅସ୍ଥିର ହୋଇ ପଡ଼ିଥିଲେ । ତାଙ୍କୁ ବାରିପଦାରେ କୌଣସି ଗୋଟିଏ ଚାକିରି ଦେବାପାଇଁ ଆବେଦନ କରିବାରୁ ମହାରାଜା ତାଙ୍କୁ ମାସିକ ଟ୧୦୦.୦୦ଙ୍କା ଦରମାରେ ବାରିପଦା ହାଇସ୍କୁଲର ଖେଳ ଶିକ୍ଷକ ଭାବେ ନିଯୁକ୍ତି ଦେଇଥିଲେ । ୧୯୩୧ ମସିହାରେ ସେ ବାରିପଦା ଫେରିଆସିଥିଲେ । ସେତେବେଳେ ଟ୍ରେଣ୍ଡ-ଗ୍ରାଜୁଏଟ ଶିକ୍ଷକମାନଙ୍କ ଦରମା ମାସିକ ଟ୬୦.୦୦ଙ୍କା ଥିବାବେଳେ ବ୍ରଜବାବୁଙ୍କ ଦରମା ନିଶ୍ଚିତ ଭାବେ ମର୍ଯ୍ୟାଦାବନ୍ତ ଥିଲା । କିନ୍ତୁ ଏହା ତାଙ୍କ ଯୋଗ୍ୟତାର ପରିମାପକ ନୁହେଁ । ତାଙ୍କ ଯୋଗ୍ୟତାର ଆକଳନ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ସେ କେବଳ ଜଣେ ଦକ୍ଷ ଖେଳାଳୀ ନଥିଲେ, ସେ ଥିଲେ ଜଣେ ପାରଙ୍ଗମ ପ୍ରଶିକ୍ଷକ । ତାଙ୍କ ନିଷ୍ଠାପର ପ୍ରଶିକ୍ଷଣ ଯୋଗୁଁ ବାରିପଦା ଫୁଟବଲ ଦଳ ଗଢ଼ି ଉଠିଥିଲା । ଦୁର୍ଦ୍ଧର୍ଷ ଓ ଅଜେୟ ଥିଲା ସେହି ଫୁଟବଲ ଦଳ । ପରବର୍ତ୍ତୀ କାଳରେ ବ୍ରଜବାବୁଙ୍କ ଦ୍ୱାରା ପ୍ରଶିକ୍ଷିତ ବାରିପଦା ଫୁଟବଲ ଦଳର ଜଗନ୍ନାଥ ବେହେରା, ଆଦିକନ୍ଦ ଦ୍ୱାରି, ବିନୁ ବାନାର୍ଜି, ଜଗନ୍ନାଥ

ମିସ୍ତ୍ରୀ, ପଦ୍ମଲୋଚନ ପତି, ଗଣେଶ ବୋଷ, ଗଣେଶ ମହାନ୍ତି, ପରେଶ ଦାସ ଓ ରବିନାରାୟଣ ଦାଶ(କାନି) ପ୍ରଭୃତି ଖେଳାଳୀମାନେ ବିଶେଷ ସୁଖ୍ୟାତି ଅର୍ଜନ କରିଥିଲେ ଓ ସେମାନଙ୍କ ମଧ୍ୟରୁ କେତେକ ଓଡ଼ିଶା ରାଜ୍ୟ ଦଳ କିମ୍ବା କଟକ-କମ୍ବାଇଣ୍ଡ ପ୍ରଭୃତି ରାଜ୍ୟସ୍ତରୀୟ ଦଳରେ ଖେଳିଥିଲେ ।

ବାରିପଦାର ଆବାଳ ବୃଦ୍ଧ ବନୀତା ଫୁଟବଲ ଖେଳପ୍ରେମୀ ହୋଇ ଯାଇଥିଲେ । ଯେଉଁଦିନ ଟୁର୍ଣ୍ଣାମେଣ୍ଟରେ ବାରିପଦା ଦଳର ଖେଳ ହେଉଥିଲା ସେଦିନ ସ୍କୁଲମାନଙ୍କୁ ଟିକିଏ ଆଗରୁ ଛୁଟି କରି ଦିଆଯାଉଥିଲା, ଦୈନିକ ବଜାର ବନ୍ଦ ହୋଇ ଯାଉଥିଲା । ଭୂଷାମାଲ, ଲୁଗା କପଡ଼ା, ମନୋହରୀ ଦୋକାନୀ ଏମିତିକି ମାଛ ମାଂସ ପରିବା ଦୋକାନୀମାନେ ମଧ୍ୟ ସେମାନଙ୍କ ପ୍ରିୟ ବାରିପଦା ଦଳର ଖେଳ ଦେଖିବା ପାଇଁ ଖେଳପଡ଼ିଆକୁ ଛୁଟି ଯାଉଥିଲେ । ବାରିପଦା ଦଳ ଜିତିଲେ ସମସ୍ତେ ବିଜୟୋଲ୍ଲାସରେ ମାତି ଉଠୁଥିଲେ । ହାରିଗଲେ ସମସ୍ତଙ୍କ ମନ ବିଷର୍ଣ୍ଣ ହୋଇଯାଉଥିଲା । ବାରିପଦା ଫୁଟବଲ ଦଳ ବାରିପଦା ବାହାରେ ବାଲେଶ୍ୱର, କଟକ, ପୁରୀ, ବ୍ରହ୍ମପୁର ବା ଟାଟାନଗର ପ୍ରଭୃତି ଜାଗାକୁ ଫୁଟବଲ ଖେଳିବା ପାଇଁ ଗଲେ ବାରିପଦାର ବହୁଲୋକ ନିଜ ଖର୍ଚ୍ଚରେ ଖେଳ ଦେଖିବା ପାଇଁ ସେ ସବୁଜାଗାକୁ ଯାଉଥିଲେ ।

ସେତେବେଳେ ବାରିପଦାରେ ଷ୍ଟାଡ଼ିୟମ ହୋଇ ନଥିଲା । ଫୁଟବଲ ଖେଳ ହେଉଥିଲା ପୋଲିସ୍ ଲାଇନ ପଡ଼ିଆରେ । ସେହି ପଡ଼ିଆକୁ ବାଉଁଶ ଚାଅଁଡ଼ାରେ ନିବୁଜ ଭାବେ ବେଢ଼ା ଯାଇ ଆବଦ୍ଧ କରାଯାଉଥିଲା । ଫୁଟବଲ ଖେଳ ଦେଖି ଯିବା ପାଇଁ ଟିକଟ କାଟିବାକୁ ପଡୁଥିଲା । ପଡ଼ିଆ ଭିତରେ ଟେଣ୍ଟ ସାମିଆନା ଟଣାଯାଇ ବିଶିଷ୍ଟ ଅତିଥିମାନଙ୍କର ବସିବା ପାଇଁ ବନ୍ଦୋବସ୍ତ କରାଯାଉଥିଲା । ମହିଳାମାନେ ଖେଳ ଦେଖିବା ପାଇଁ ସ୍ୱତନ୍ତ୍ର ତମ୍ବୁ ଟଣାଯାଇ ତା ଆଗରେ ବାଉଁଶ ଚିକ୍ ଝୁଲାଇ ଦିଆଯାଉଥିଲା । ଖେଳାଳୀମାନଙ୍କ ଡ୍ରେସିଂରୁମ ଓ ଟୟଲେଟ ପାଇଁ ମଧ୍ୟ ସ୍ୱତନ୍ତ୍ର ତମ୍ବୁ ଟଣାଯାଉଥିଲା । ସାଧାରଣ ଦର୍ଶକମାନଙ୍କ ପାଇଁ ପଡ଼ିଆର ଗୋଟିଏ କୋଣରେ ଅଳ୍ପ କେତୋଟି କାଠ ଗ୍ୟାଲେରି ପକାଯାଇଥିଲା । ଗୋଟିଏ ପାଖରେ କେତୋଟି ଲଙ୍ଗ୍‌ବେଞ୍ଚ ମଧ୍ୟ ପକାଯାଉଥିଲା । କିନ୍ତୁ ଅଧିକାଂଶ ଦର୍ଶକ ଖେଳପଡ଼ିଆ ଧାରରେ ଛିଡ଼ାହୋଇ ଖେଳ ଦେଖୁଥିଲେ । ଖେଳ ଚାଲୁଥିଲାବେଳେ ସେ କି ଉତ୍ତେଜନା ଆଉ ପାଟି ? ଅଧିକାଂଶ ଦେଖଣାହାରୀ ସମର୍ଥନ କରୁଥିବା ଦଳ ବିପକ୍ଷ ଉପରେ ଗୋଟିଏ ଗୋଲ୍ କରିଦେଲେ ସମ୍ମିଳିତ ଉଲ୍ଲାସ ଧ୍ୱନୀରେ ଗଗନ ପବନ

ମୁଖରିତ ହୋଇ ଉଠୁଥିଲା- ଆଉ ଯଦି ସେମାନଙ୍କ ଗୋଲ ଦେବାର ସୁଯୋଗ ବ୍ୟର୍ଥ ହୋଇଯାଉଥିଲା, ଦର୍ଶକମାନେ ସମସ୍ୱରରେ ହତାଶା ସୂଚକ ଇସ୍ ଆହା ଚୁ.... ଚୁ.... କରି ଉଠୁଥିଲେ । ଫୁଟବଲ୍ ଟୁର୍ଣ୍ଣାମେଣ୍ଟ ପ୍ରାରମ୍ଭରେ ଖେଳର 'ଟାଇ' ବା ଖେଳସୂଚୀ ଛାପା ହୋଇ ବିକ୍ରି ହେଉଥିଲା । ସେଥିରୁ କେଉଁ ତାରିଖରେ କେଉଁ ଦଳରେ ଖେଳ ହେବ ତାହା ଜାଣି ହେଉଥିଲା । ତାଛଡ଼ା ପ୍ରତିଦିନ ପୂର୍ବାହ୍ଣରେ ସେଦିନ ଅପରାହ୍ଣରେ ହେବାକୁ ଥିବା ଖେଳ ବିଷୟରେ ଢେଙ୍ଗୁରା ବାଡ଼େଇ ସହରର ପ୍ରଧାନ ରାଜପଥ ମାନଙ୍କରେ ଘୋଷଣା କରି ଯାଉଥିଲା ଅଭି ହାଡ଼ି । ସେ ସମୟରେ ମାଇକ୍ରୋଫୋନ୍ ନଥିଲା କିମ୍ବା ପ୍ରଚାରର ଅନ୍ୟ ବନ୍ଦୋବସ୍ତ ନଥିଲା । ଢେଙ୍ଗୁରା ବାଡ଼େଇ ବଡ଼ପାଟିରେ ଅଭି ହାଡ଼ି ଖେଳସୂଚୀ ଘୋଷଣା କରି ଯାଉଥିଲା । ଅଭି ହାଡ଼ି ଜଣେ ଭଲ ଘୋଷକ ଥିଲା । ନିଜ କଳ୍ପନା ଶକ୍ତି ଓ ବାକ୍ ଚାତୁରୀ ଦ୍ୱାରା ସେ ତା ଘୋଷଣାକୁ ସରସ ଓ ଆକର୍ଷଣୀୟ କରି ପାରୁଥିଲା । ସେ ତା ବେକରୁ ଝୁଲୁଥିବା ଢେଙ୍ଗୁରାରେ ହାତରେ ଧରିଥିବା ବାଡ଼ିରେ କେତେଥର ବାଡ଼େଇ ସାରିବା ପରେ ବଡ଼ପାଟିରେ କହୁଥିଲା- 'ବାବୁମାନେ, ଶୁଣ ଶୁଣ ଶୁଣ.... ଆଜି ଖେଳ ହେବ ବାରିପଦା ଟାଉନ କ୍ଲବ ଆଉ ବାଲେଶ୍ୱର ଟାଉନ.... ପୁଲିସ ଲାଇନ ପଡ଼ିଆରେ ଆଜି ଝଡ଼ ଉଠିବ... ଧୂଳି ଉଠିବ.... ଆଉ ଉଡ଼ିଯିବେ ବାଲେଶ୍ୱରର ମେଲେରିଆ ମଶାମାନେ ।

ବାରିପଦା ଓ ବାଲେଶ୍ୱର ଦୁଇଟି ପଡ଼ୋଶୀ ସହର ଓ ଉଭୟେ ଉଭୟଙ୍କର ପାରମ୍ପରିକ ପ୍ରତିଦ୍ୱନ୍ଦୀ ଥିଲେ । ସେ ସମୟରେ ବାଲେଶ୍ୱର ସହରରେ ପ୍ରବଳ ଭାବେ ମ୍ୟାଲେରିଆ ଜ୍ୱର ହେଉଥିବାରୁ ବାରିପଦା ଦର୍ଶକମାନେ ବାଲେଶ୍ୱର ଖେଳାଳୀମାନଙ୍କୁ ମ୍ୟାଲେରିଆ ମଶା ବୋଲି ଚିଡ଼ାଉ ଥିଲେ । ବାଲେଶ୍ୱର ଲୋକେ ବାରିପଦା ଖେଳାଳୀଙ୍କୁ ପାହାଡ଼ିଆ ମୂଷା ବୋଲି କହୁଥିଲେ ।

ବାରିପଦାର କେତେଜଣ ପ୍ରାକ୍ତନ ଖେଳାଳୀ ଭେଟେରନ୍ସ୍ ସ୍ପୋର୍ଟିଂ କ୍ଲବ ନାମରେ ଗୋଟିଏ ଫୁଟବଲ ଦଳ ଗଢ଼ିଥିଲେ । ସେମାନେ ଚାକୁଣ୍ଡା ପଦା ନାମରେ ପରିଚିତ ଗୋଟିଏ ପଡ଼ିଆରେ ଖେଳ ଅଭ୍ୟାସ କରୁଥିବାରୁ ଲୋକେ ସେ ଦଳକୁ ଚାକୁଣ୍ଡା ପଦା ଟିମ୍ ବୋଲି କହୁଥିଲେ । ସେହି ଦଳର ବ୍ୟାକ୍ ଖେଳୁଥିବା ଖେଳାଳୀଙ୍କ ନାମ ପୂର୍ଣ୍ଣ ନନା- ମୋଟା ସୋଟା ମଧ୍ୟ ବୟସ୍କ ଭଦ୍ରଲୋକ, ମୁଣ୍ଡଟା ଚନ୍ଦା । ପୂର୍ଣ୍ଣନନା ଭଲି ମାରିବାରେ ପାରଙ୍ଗମ ଥିଲେ ।

ଅପରପଟୁ ପବନରେ ଭାସି ଆସୁଥିବା ବଲ ଭୂଇଁରେ ପଡ଼ିବା ଆଗରୁ ପୂର୍ଣ୍ଣନନା ତାକୁ ପୁଣି ଉଚ୍ଚକୁ ମାରି ଦେଉଥିଲେ । ଲୋକେ କହୁଥିଲେ ପୂର୍ଣ୍ଣନନାର ଡବଲ କିକ୍ । ବାରିପଦାରେ ବହୁତ ଗୁଡ଼ିଏ ଛୋଟ ଛୋଟ ବିଡ଼ି ତିଆରି ସଂସ୍ଥା ଥିଲା । ବାରିପଦା ସହର ଉପକଣ୍ଠରେ ଥିବା ହରିଜନ ସାହିର ବହୁତ ନାବାଳକ ଓ ସାବାଳକ ପିଲା ବିଡ଼ିମୋଡ଼ା କାମରେ ନିଯୁକ୍ତ ଥିଲେ । ସେହି ବିଡ଼ିମୋଡ଼ା ପିଲାମାନେ ଗୋଟିଏ ଫୁଟବଲ ଦଳ ଗଢ଼ି ତା ନାମ ଦେଇଥିଲେ ଜୁଭେନାଇଲ କ୍ଲବ । ଚାକୁଣ୍ଡା ପଦା ଓ ଜୁଭେନାଇଲ ପରସ୍ପରର ପ୍ରତିଦ୍ୱନ୍ଦୀ ଥିଲେ । ସେହି ଦୁଇଦଳର ଖେଳଦିନ ଅଭି ଡେଙ୍ଗୁରା ବାଡ଼େଇ ଘୋଷଣା କରୁଥିଲା- 'ଆଜି ଖେଳହେବ ଜୁଭେନାଇଲ ଆଉ ଚାକୁଣ୍ଡା ପଦା- ପୁଲିସ ଲାଇନ ପଡ଼ିଆର ସବୁ ଚାକୁଣ୍ଡା ଗଛ ଆଜି ପଦା ହୋଇଯିବ- ଗଲେ, ବାବୁମାନେ ଦେଖିବେ ପୂର୍ଣ୍ଣନନାର ଡବଲ କିକ୍ ।'

ଅଭିରାମ ମୁଖିକୁ ସମସ୍ତେ ଅଭିହାଡ଼ି ବୋଲି ଡାକୁଥିଲେ । ଆଜିକାଲି ଏମିତି ଡାକିଲେ, ହରିଜନ ନିର୍ଯ୍ୟାତନା ଆଇନ ଅନୁସାରେ ମକଦ୍ଦମା ହୋଇଯିବ । କିନ୍ତୁ ସେତେବେଳେ ଅଭିକୁ ଅଭିହାଡ଼ି ବୋଲି କେହି ଡାକିଦେଲେ ସେ ଅପମାନ ବୋଧ କରୁନଥିଲା । ଶିଶୁ ସୁଲଭ ନିଷ୍ପାପ ହସରେ ମୁହଁ ଉଜ୍ଜ୍ୱଳ କରି କହୁଥିଲା 'ଜୁହାର ହଜୁର ।' ବେଳେ ବେଳେ ଅଭି ସର୍କସ ଜୋକରଙ୍କ ପରି ମୁଣ୍ଡରେ ଗୋଟିଏ ଲମ୍ବା ଟୋପି ପିନ୍ଧୁଥିଲା । ଆଉ ଗୋଟିଏ ଛୋଟ ବାଉଁଶ ତାଟି ଉପରେ ମଇଦା ଅଠାରେ ଚିଟା ଯାଇଥିବା ଖବର କାଗଜ ଉପରେ ପୋଷ୍ଟର କାଳିରେ ଲେଖା ଯାଇଥିବା ଫୁଟବଲ ଖେଳ ବିଜ୍ଞାପନଟିକୁ ପିଠିପଟେ ଝୁଲାଇ ରଖୁଥିଲା । ଫୁଟବଲ ଖେଳ ବ୍ୟତୀତ ଅଭି ଏହି ପ୍ରକ୍ରିୟାରେ ସିନେମାର ମଧ ପ୍ରଚାର କରୁଥିଲା ।

ଅଭିର ଆଉ ଗୋଟିଏ କାମ ଥିଲା ତାହା ହେଉଚି କୁକୁର ମାରିବା । ସେ ଗୋଟିଏ ଶକ୍ତ କାଠ ଠେଙ୍ଗୁଣୀର ସରୁପଟିରେ ଫିତା ବାନ୍ଧି ତାକୁ କାନ୍ଧରୁ ଝୁଲାଇ ରଖୁଥିଲା । ବୁଲା କୁକୁରଟିଏ ଦେଖିଲେ ଛପି ଛପି ଯାଇ ମୁଣ୍ଡରେ ଗୋଟିଏ ଶକ୍ତ ପାହାର ମାରି କୁକୁରଟିକୁ ମାରିଦେଉଥିଲା । ସେ ଏପରି ଦୁଇ ତିନିଟା କୁକୁର ମାରି ସେଗୁଡ଼ାକୁ ଘୋଷାଡ଼ି ନେଇ ଯାଉଥିଲା ବାଘ ଘର ପାଖକୁ । ସେହି ମରା କୁକୁର ଗୁଡ଼ିକୁ ଛାଲି କୁକୁର ମାଂସ ବାଘ ଘରେ ରହୁଥିବା କଲରା ପତରିଆ ବାଘମାନଙ୍କୁ ଖାଇବାକୁ ଦିଆଯାଉଥିଲା । ବାଘ ଘର ଅନ୍ୟ ଦୁଇ ସମ୍ଭ୍ରାନ୍ତ ଅତିଥି ଯଥା ମହାବଳ ବାଘ ଓ ସିଂହୀ ଛେଳି ମାଂସ

ଖାଉଥିଲେ । ବାରିପଦାରେ ଗୋହତ୍ୟା ନିଷିଦ୍ଧ ଥିଲା । ତେଣୁ ବାଘ ଘରର ପୋଷା ମହାବଳ ବାଘ ଓ ସିଂହମାନଙ୍କୁ ଶସ୍ତା ଗୋ ମାଂସ ଖାଇବାକୁ ଦେବାଛଡ଼ା ଉପାୟ ନଥିଲା । ବାରିପଦାକୁ ସର୍କସ ଦଳ ଆସିଲେ ସର୍କସ ମାଲିକ ବାଲେଶ୍ୱର କଂସାଇଖାନାରୁ ସର୍କସ ବାଘ ସିଂହଙ୍କ ପାଇଁ ଗୋ ମାଂସ ମଗାଉଥିଲେ । ବାଘ ଘରକୁ କୁକୁର ମାଂସ ଯୋଗାଇ ଅଭି କିଛି ଉପୁରି ଉପାର୍ଜନ କରୁଥିଲା । ତାଛଡ଼ା ତା ସ୍ତ୍ରୀ ଅହଲ୍ୟା ଡାକ୍ତରଖାନାର ଧାଈ ଥିଲା । ବାରିପଦାର ଅନେକ ପିଲାଙ୍କୁ ପୃଥିବୀର ପ୍ରଥମ ଆଲୋକ ଦେଖାଇବା ପାଇଁ ସାହାଯ୍ୟ କରୁଥିଲା ଅହଲ୍ୟା ।

ବାରିପଦାରେ ଅନୁଷ୍ଠିତ ଫୁଟବଲ ଖେଳ ମାନଙ୍କରେ ରେଫରି ହେଉଥିଲେ ନରୋତ୍ତମ ମହାନ୍ତି । ପୂର୍ବରୁ ଫୁଟବଲ ଟୁର୍ଣ୍ଣାମେଣ୍ଟର ମ୍ୟାଚ୍‌ଗୁଡ଼ିକ ପରିଚାଳନା କରିବାପାଇଁ କଲିକତା କିମ୍ବା ଖଡ୍ଗପୁରରୁ ଆଇ.ଏଫ୍.ଏ ଦ୍ୱାରା ସ୍ୱୀକୃତ ରେଫରି ଅଣାଯାଉଥିଲା । ନରୋତ୍ତମ ବାବୁ ବାରିପଦାର ସ୍ଥାୟୀ ବାସିନ୍ଦା । ବାରିପଦା ହାଇସ୍କୁଲରୁ ମାଟ୍ରିକ ପାଶ୍ କରି ସେ ଷ୍ଟେଟ୍‌ର ଜୁଡ଼ିସିଆଲ କୋର୍ଟରେ ପେସ୍କାର କାମ କରୁଥିଲେ । ସେ ନିଜେ ଫୁଟବଲ ଖେଳୁନଥିଲେ କିନ୍ତୁ ଫୁଟବଲ ଖେଳ ପ୍ରତି ପ୍ରବଳ ଆଗ୍ରହ ଥିଲା ତାଙ୍କର । ସେ ବାରିପଦା ଫୁଟବଲ ଦଳର ଅଭ୍ୟାସ ଖେଳ ଚାଲୁଥିବାବେଳେ ପ୍ରତିଦିନ ଖେଳ ପଡ଼ିଆରେ ଉପସ୍ଥିତ ରହି ନିବିଷ୍ଟ ଭାବେ ଖେଳଗୁଡ଼ିକୁ ଅନୁଧ୍ୟାନ କରୁଥିଲେ ଓ ଖେଳାଳୀମାନଙ୍କ ଦୋଷତ୍ରୁଟି ପ୍ରତିଲକ୍ଷ୍ୟ ରଖୁଥିଲେ । ବ୍ରଜବାବୁଙ୍କ ନିର୍ଦ୍ଦେଶରେ ସେ ଅଭ୍ୟାସ ଖେଳ ଗୁଡ଼ିକରେ ରେଫରି ହେବାକୁ ଲାଗିଲେ । ତାଙ୍କର ଏ ଆଗ୍ରହ ଦେଖି ମହାରାଜା ତାଙ୍କୁ କଲିକତାରେ ତାଲିମ ନେବା ପାଇଁ ପଠାଇଥିଲେ । କଲିକତାର ଆଇ.ଏଫ୍.ଏ ଦ୍ୱାରା ପରିଚାଳିତ ପରୀକ୍ଷାରେ କୃତିତ୍ୱ ହାସଲ କରି ସେ ସର୍ବଭାରତୀୟ ସ୍ତରରେ ଫୁଟବଲ ଖେଳ ପରିଚାଳନା କରିବା ପାଇଁ ରେଫରି ହେବାର ଯୋଗ୍ୟତା ହାସଲ କରିଥିଲେ । ସେ ଫୁଟବଲ ଖେଳର ଜଣେ ଦକ୍ଷ ପରିଚାଳକ ଥିଲେ ଓ କଲିକତାର ଆଇ.ଏଫ୍.ଏ ଲିଗ୍ ଓ ସିଲ୍ଡ ଟୁର୍ଣ୍ଣାମେଣ୍ଟରେ ଖେଳ ପରିଚାଳନା କରିବା ପାଇଁ ଆମନ୍ତ୍ରିତ ହେଉଥିଲେ ।

ବାରିପଦା ପିଲାଏ ତାଙ୍କ ନାମ ଦେଇଥିଲେ 'ଡବା' । କ୍ରମେ ଲୋକମାନେ ନରୋତ୍ତମ ବାବୁଙ୍କ ଅସଲ ନାମ ଭୁଲିଯାଇ ତାଙ୍କୁ ଡବା ବୋଲି ଡାକିବା ଆରମ୍ଭ କରିଦେଲେ— ଅବଶ୍ୟ ତାଙ୍କ ପଛରେ । ତାଙ୍କ ଆଗରେ

କେହି ଡବା କହିଦେଲେ ସେ ଭାରି ରାଗିଯାଉଥିଲେ । ସେତେବେଳେ ତାଙ୍କର ଏପରି ନାମକରଣ ସମ୍ପର୍କରେ ଗୋଟିଏ ମଜାର ଗପ ଶୁଣାଯାଉଥିଲା । ସେ ଗପରେ ସତ୍ୟତା ଥାଉ-ବା ନ ଥାଉ ନରୋତ୍ତମ ବାବୁଙ୍କ ଡବା ନାମଟି ସ୍ଥାୟୀ ହୋଇ ରହିଗଲା । ନରୋତ୍ତମ ବାବୁ କିନ୍ତୁ ଥିଲେ ବାରିପଦାର ଫୁଟବଲ ପ୍ରେମୀ ଜନସାଧାରଣଙ୍କର ଅନ୍ୟତମ ପ୍ରିୟ ବ୍ୟକ୍ତି । ତାଙ୍କର ଫୁଟବଲ ଖେଳ ପରିଚାଳନା କରିବାରେ ଦକ୍ଷତା, ଖେଳାଳୀମାନଙ୍କ ଦୋଷତ୍ରୁଟି ନିର୍ଦ୍ଧାରଣ କରିବାର କ୍ଷମତା, ଖେଳରେ ଶୃଙ୍ଖଳା ରକ୍ଷା ଓ ନିରପେକ୍ଷତା ଉପରେ ବାରିପଦା ବାସୀଙ୍କର ଅଗାଧ ବିଶ୍ୱାସ ଥିଲା । ନରୋତ୍ତମ ବାବୁ ଖେଳ ପରିଚାଳନା ନକଲେ ସେ ଖେଳ ଦେଖିବା ପାଇଁ ଲୋକଙ୍କର ଆଗ୍ରହ ରହୁ ନଥିଲା । ଯେତେ ଭଲ ଦଳଙ୍କ ଭିତରେ ପ୍ରତିଦ୍ୱନ୍ଦ୍ୱିତା ହେଉଥାଉନା କାହିଁକି ସେ ଖେଳ ପାଣିଚିଆ ଲାଗୁଥିଲା ।

ମୟୂରଭଞ୍ଜ ମହାରାଜାଙ୍କ ପୃଷ୍ଠପୋଷକତା ଯୋଗୁଁ ବାରିପଦାରେ ଫୁଟବଲ ଖେଳ ଉତ୍କର୍ଷତା ଲାଭ କରିଥିଲା । ଏହି ଖେଳ ପରିଚାଳନା କରିବା ପାଇଁ ୧୯୧୯ରେ ମୟୂରଭଞ୍ଜ ଆଥେଲେଟିକ ଆସୋସିଏସନ ପ୍ରତିଷ୍ଠିତ ହୋଇ କଲିକତାର ଆଇ.ଏଫ.ଏ ସହ ଅନୁବନ୍ଧିତ ହୋଇଥିଲା । ଏହାଥିଲା ଓଡ଼ିଶାର ଏକମାତ୍ର ସ୍ପୋର୍ଟସ ଆସୋସିଏସନ । ମିଶ୍ରଣ ପରେ କାମିନୀକାନ୍ତ ପଟ୍ଟନାୟକ ଓ ବିଭୂତି ଭୂଷଣ ଦାଶ ମୟୂରଭଞ୍ଜ ଆଥେଲେଟିକ ଆସୋସିଏସନର ଦକ୍ଷ ପରିଚାଳନା କରି ବାରିପଦାର ଫୁଟବଲ ଖେଳର ଉତ୍କର୍ଷତା ବଜାଏ ରଖିପାରିଥିଲେ । ସେମାନେ କଟକ ଚାଲି ଆସିବା ପରେ ସୁପରିଚାଳନା ଅଭାବରୁ ବାରିପଦାରୁ ଫୁଟବଲ ଖେଳ ଲୋପ ପାଇଗଲା ।

ଏହା ଆଗରୁ ମୁଁ ବାରିପଦା ହାଇସ୍କୁଲ କଥା କହୁଥିଲି । ସେହି ଐତିହ୍ୟ ସମ୍ପନ୍ନ ବିଶାଳ ସ୍କୁଲଟି ଥିଲା ମୟୂରଭଞ୍ଜ ରାଜ୍ୟର ଏକମାତ୍ର ହାଇସ୍କୁଲ । ଊନବିଂଶ ଶତାବ୍ଦୀର ଶେଷ ଦଶକରେ ବାରିପଦାର ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପିତ ହେବାର ପ୍ରାୟ ପଚାଶ ବର୍ଷ ପରେ ମୟୂରଭଞ୍ଜ ଷ୍ଟେଟର ଦ୍ୱିତୀୟ ହାଇସ୍କୁଲଟି ରାଇରଙ୍ଗପୁରରେ ସ୍ଥାପିତ ହୋଇଥିଲା । ଏହାଛଡ଼ା ଅନ୍ୟକୌଣସି ସ୍ଥାନରେ, ଏପରିକି କରଞ୍ଜିଆ, ଉଦଳା ପ୍ରଭୃତି ଉପଖଣ୍ଡ ଗୁଡ଼ିକର ସଦର ମହକୁମାରେ ମଧ୍ୟ ହାଇସ୍କୁଲ ନଥିଲା । ସମଗ୍ର ମୟୂରଭଞ୍ଜ ଷ୍ଟେଟର ଆଗ୍ରହୀ ପିଲାମାନେ ଆସି ବାରିପଦା ହାଇସ୍କୁଲରେ ପାଠ ପଢୁଥିଲେ । ବହିରାଗତ ପିଲାଙ୍କ ରହିବା ସୁବିଧା ପାଇଁ ସ୍କୁଲ ପରିସରରେ ଦୁଇଟି ଛାତ୍ରାବାସ ଥିଲା ।

ଗୋଟିକର ନାମ ଥିଲା ପ୍ରେଜାର ହଷ୍ଟେଲ ଅନ୍ୟଟି ନିଉ ହଷ୍ଟେଲ । ଏତଦ୍‌ବ୍ୟତୀତ ଦରିଦ୍ର ପିଲାଙ୍କ ପାଇଁ ଥିଲା ଫ୍ରି-ହଷ୍ଟେଲ । ପ୍ରଥମେ ପଚାଶ ଜଣ ଅନାଥ ପିଲାଙ୍କୁ ରଖି ପାଠ ପଢ଼ାଇବା ପାଇଁ ଏହା ଗୋଟିଏ ଅରଫେନେଜ୍ ବା ଅନାଥାଶ୍ରମ ଭାବେ ଆରମ୍ଭ ହୋଇଥିଲା । ଅନାଥ ହୋଇନଥିବା ଦରିଦ୍ର ଓ ମେଧାବୀ ଛାତ୍ରମାନଙ୍କ ଉଚ୍ଚଶିକ୍ଷା ସୁବିଧା ପାଇଁ ଅନାଥାଶ୍ରମଟିକୁ ଫ୍ରି-ହଷ୍ଟେଲ କରିଦିଆଯାଇଥିଲା । ଏହି ଅନାଥାଶ୍ରମରେ ରହି ପାଠ ପଢ଼ି ବହୁପିଲା ପରେ ନିଜକୁ ସମାଜରେ ସୁପ୍ରତିଷ୍ଠିତ କରିପାରିଥିଲେ । ସେମାନଙ୍କ ଭିତରୁ ଶ୍ରୀ ଚନ୍ଦ୍ରମୋହନ ସିଂହ ଅନ୍ୟତମ । ଚନ୍ଦ୍ରମୋହନ ବାବୁ ସ୍କୁଲପାଠ ଶେଷ କରି ଜଣେ ପୋଲିସ ସବ୍‌ଇନ୍ସପେକ୍ଟର ଭାବେ ଜୀବନ ଆରମ୍ଭ କରିଥିଲେ । ପରେ ସେ ଇନ୍ସପେକ୍ଟର ପଦବୀକୁ ପଦୋନ୍ନତି ପାଇଥିଲେ । ଜଣେ ସଚ୍ଚୋଟ ଓ ଶୃଙ୍ଖଳା ପ୍ରିୟ ପୋଲିସ ଅଫିସର ଭାବେ ତାଙ୍କର ସୁନାମ ଥିଲା । ପରେ ସେ ଚାକିରି ଛାଡ଼ି ଦେଇ ଶ୍ରମିକ ରାଜନୀତିରେ ନିଜକୁ ନିୟୋଜିତ କରିଥିଲେ । ପ୍ରତ୍ୟକ୍ଷ ରାଜନୀତିକୁ ଆସିବା ପରେ ସେ ଓଡ଼ିଶାର ମନ୍ତ୍ରୀ ଓ ପରବର୍ତ୍ତୀ ସମୟରେ ଲୋକ ସଭା ସଦସ୍ୟ ହୋଇଥିଲେ । ପରେ ଛାତ୍ରାବାସମାନଙ୍କରେ ସ୍ଥାନ ନିଅଣ୍ଟ ହେବାରୁ ସ୍କୁଲଠାରୁ ଟିକିଏ ଦୂରରେ ବାଘଡ଼ାରୋଡ଼ରେ ଦୁଇଟି ନୂଆ ଛାତ୍ରାବାସ ନିର୍ମାଣ କରାଯାଇଥିଲା । ସେଗୁଡ଼ିକର ନାମ ରାଜପୁତ୍ରଙ୍କ ନାମ ଅନୁଯାୟୀ ପ୍ରଦୀପ ନିବାସ ଓ ସ୍ୱରୂପ ନିବାସ ରଖାଯାଇଥିଲା ।

ବାରିପଦାରେ କଲେଜ ନଥିଲା କିମ୍ବା ବାଳିକାମାନଙ୍କ ଉଚ୍ଚଶିକ୍ଷା ପାଇଁ ବାଳିକା ହାଇସ୍କୁଲ ନଥିଲା । ବାରିପଦାରେ ଥିବା ରାଜ୍ୟର ଏକମାତ୍ର ବାଳିକା ସ୍କୁଲଟିରେ ମାଇନର ପର୍ଯ୍ୟନ୍ତ ଶିକ୍ଷାଦାନର ବ୍ୟବସ୍ଥା ଥିଲା । ବାରିପଦା ହାଇସ୍କୁଲରେ ସହଶିକ୍ଷାର ବ୍ୟବସ୍ଥା ନଥିଲା । ତେଣୁ ବାରିପଦା ଝିଅମାନେ ଉଚ୍ଚଶିକ୍ଷା ପାଇଁ କଟକ ରେଭେନ୍ସା ଗାର୍ଲସ୍ ସ୍କୁଲରେ ପଢ଼ିବା ପାଇଁ ଯାଉଥିଲେ । ମାଟ୍ରିକ୍ ପାଶ୍ କରିବା ପରେ କଲେଜ ଶିକ୍ଷା ପାଇଁ ପିଲାମାନେ କଟକ ରେଭେନ୍ସା କଲେଜ ଯିବାକୁ ବାଧ ହେଉଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବାପରେ ବାଲେଶ୍ୱରରେ ଗୋଟିଏ କଳା ବିଭାଗର ଡିଗ୍ରୀ କଲେଜ ଖୋଲାଯାଇଥିଲା । କିନ୍ତୁ ବିଜ୍ଞାନ ପଢ଼ିବା ପାଇଁ ରେଭେନ୍ସା କଲେଜ ହିଁ ଏକମାତ୍ର କଲେଜ ଥିଲା । ଓଡ଼ିଶା ଭିତରେ ଓ ଓଡ଼ିଶା ବାହାରେ ଉଚ୍ଚଶିକ୍ଷା ବିସ୍ତାର ପାଇଁ ମୟୂରଭଞ୍ଜ ରାଜ ପରିବାରର ଅନେକ ଯୋଗଦାନ ଥିଲା । ମୟୂରଭଞ୍ଜ ମହାରାଜା କଟକରେ ଶ୍ରୀରାମଚନ୍ଦ୍ର

ଭଞ୍ଜ ମେଡ଼ିକାଲ କଲେଜ ସ୍ଥାପନ ପାଇଁ ଓ ରେଭେନ୍ସା କଲେଜରେ ମୟୂରଭଞ୍ଜ ଚେୟାର ଅଫ୍ ଫିଜିକ୍ସ ପ୍ରତିଷ୍ଠା ପାଇଁ ଅନେକ ଅର୍ଥ ଦାନ ଦେଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟକୁ ଗୋଟିଏ ପ୍ରିଣ୍ଟିଂପ୍ରେସ ଓ ଆର୍ଥିକ ଅନୁଦାନ ମଧ୍ୟ ଦେଇଥିଲେ । ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜ ଏହି ବିଶ୍ୱବିଦ୍ୟାଳୟର ପ୍ରୋ ଚାନସେଲର ଥିଲେ । ସେ ମଧ୍ୟ ସଂସ୍କୃତ ଶିକ୍ଷା ପାଇଁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟକୁ ଆର୍ଥିକ ଅନୁଦାନ ଦେଇଥିଲେ । କିନ୍ତୁ ନିଜ ଷ୍ଟେଟ୍‌ରେ ଉଚ୍ଚଶିକ୍ଷା ବିସ୍ତାର ପାଇଁ କୌଣସି କାମ କରିନଥିଲେ ସେ । ସମଗ୍ର ଷ୍ଟେଟ୍‌ରେ ମାତ୍ର ଦୁଇଟି ଉଚ୍ଚ ଇଂରାଜୀ ବିଦ୍ୟାଳୟ ଥିଲା । ତା ଛଡ଼ା ଥିଲା ଅଳ୍ପ କେତୋଟି ମାଇନର ସ୍କୁଲ ଓ ସ୍ତ୍ରୀ ଶିକ୍ଷା ପାଇଁ ବାରିପଦା ସହରରେ ଏକମାତ୍ର ମାଇନର ବାଳିକା ସ୍କୁଲ । ୧୯୪୭ ମସିହା ଡିସେମ୍ବର ମାସରେ ଶରତ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ଲୋକପ୍ରିୟ ସରକାର ଗଠିତ ହେବା ପରେ ବାରିପଦାରେ ଏମ.ପି.ସି. କଲେଜ ଓ ଏମ.ପି.କେ ଗାର୍ଲସ ହାଇସ୍କୁଲ ପ୍ରତିଷ୍ଠିତ ହୋଇଥିଲା । ଏହାଛଡ଼ା କରଞ୍ଜିଆ ଉଦଳା ଓ ନେତନଟୀ ମାରେ ହାଇସ୍କୁଲ ପ୍ରତିଷ୍ଠିତ ହୋଇଥିଲା । ବାରିପଦାରେ ଅନେକ ଦିନୁ ଗୋଟିଏ ଏଲିମେଣ୍ଟାରି ଟ୍ରେନିଂ ସ୍କୁଲ ପ୍ରତିଷ୍ଠିତ ହୋଇଥିଲା । ଏହି ସ୍କୁଲରେ ପ୍ରାଥମିକ ସ୍କୁଲରେ ଶିକ୍ଷକ ହେବାପାଇଁ ଗୁରୁଛାତ୍ରମାନଙ୍କୁ ତାଲିମ ଦିଆଯାଉଥିଲା । ଏହା ସହିତ ଗୋଟିଏ ପ୍ରାକଟିସିଂ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସଂଯୁକ୍ତ ଥିଲା । ଅକ୍ଷୟ ବାବୁ ଥିଲେ ଗୁରୁଟ୍ରେନିଂ ସ୍କୁଲର ହେଡ଼ମାଷ୍ଟର । କିନ୍ତୁ ପ୍ରାକ୍‌ଟିସିଂ ଉଚ୍ଚ ପ୍ରାଥମିକ ବିଦ୍ୟାଳୟଟିର ହେଡ୍ ପଣ୍ଡିତ ଥିଲେ ଭାସ୍କର ସାର୍ । ଭାସ୍କର ସାର୍ ଜଣେ ଖାଲି ଶିକ୍ଷକ ନଥିଲେ । ଦୀର୍ଘ ଚାଳିଶ ବର୍ଷ ଗୋଟିଏ ସ୍କୁଲରେ ନିରବଚ୍ଛିନ୍ନ ଶିକ୍ଷକତା କରି ସେ ନିଜେ ଗୋଟିଏ ଅନୁଷ୍ଠାନ ପାଲଟି ଯାଇଥିଲେ । ପର ଜୀବନରେ ସୁପ୍ରତିଷ୍ଠିତ ହୋଇଥିବା ବହୁ କୃତି ଛାତ୍ରଙ୍କର ସେ ଆଦ୍ୟଗୁରୁ ଥିଲେ । ଏହି ସଦା ବିନୀତ ଶାନ୍ତ ଶିକ୍ଷକ ଜଣକ ଶେଷ ଜୀବନରେ ରାଷ୍ଟ୍ରପତି ପୁରସ୍କାର ଦ୍ୱାରା ସମ୍ମାନୀତ ହୋଇଥିଲେ ।

ମୟୂରଭଞ୍ଜ ମହାରାଜାଙ୍କର ମତ ଥିଲାଯେ ସ୍କୁଲ କଲେଜରେ ପାଠ ପଢ଼ିଲେ ପିଲାମାନେ ଚାଷବାସ ପ୍ରଭୃତି ଶାରୀରିକ ଶ୍ରମ ଆବଶ୍ୟକ ହେଉଥିବା କାମ ପ୍ରତି ବିତସ୍ପୃହ ହୋଇ ଧୋତି ପଞ୍ଜାବି ପିନ୍ଧି ବାବୁଆନି ଚାକିରି ପଛରେ ଗୋଡ଼ାଇବେ ତେଣୁ ସେ ପ୍ରଜାମାନଙ୍କୁ ଉଚ୍ଚଶିକ୍ଷା ପାଇଁ ଉତ୍ସାହିତ କରୁ ନଥିଲେ । ସେ ସ୍କୁଲ କଲେଜରେ ଦିଆଯାଉଥିବା ଔପଚାରିକ ଶିକ୍ଷାଠାରୁ ବୈଷୟିକ ଶିକ୍ଷା ଉପରେ ବେଶି ଗୁରୁତ୍ୱ ଦେଉଥିଲେ । ତେଣୁ ବାରିପଦାରେ ଗୋଟିଏ

ଶିଳ୍ପ ତାଲିମ କେନ୍ଦ୍ର ପ୍ରତିଷ୍ଠା କରାଯାଇ ସେଠାରେ ବୟନ ଶିଳ୍ପ, କାଠକାମ ଇତ୍ୟାଦି ଶିକ୍ଷା ଦିଆଯାଉଥିଲା । ଏହି ପ୍ରତିଷ୍ଠାନର ଶିକ୍ଷା ନବୀସମାନେ ସରକାରୀ ବୃତ୍ତି ପାଉଥିଲେ । କୁଟୀର ଶିଳ୍ପର ପ୍ରସାର କରିବା ପାଇଁ ମହାରାଜା ଥଇଙ୍ଗା କଣ୍ଟେଇର ଉଦ୍ଭାବକ ଭିକାରି ଚରଣ ପଟ୍ଟନାୟକଙ୍କୁ ମୟୂରଭଞ୍ଜର କୁଟୀର ଶିଳ୍ପ ନିର୍ଦ୍ଦେଶକ ଭାବେ ନିଯୁକ୍ତି ଦେଇ ବାରିପଦା ନେଇଯାଇଥିଲେ । ଭିକାରି ବାବୁ ବାରିପଦାରେ ଗୋଟିଏ ଥଇଙ୍ଗା କଣ୍ଟେଇ କାରଖାନା ପ୍ରତିଷ୍ଠା କରି ସେଠାରେ ଶିକ୍ଷାର୍ଥୀମାନଙ୍କୁ ତାଲିମ ଦେବା ବ୍ୟବସ୍ଥା କରିଥିଲେ । ତାଙ୍କର ଏହି କାର୍ଯ୍ୟକ୍ରମ ଲୋକପ୍ରିୟ ହୋଇପାରିନଥିଲା କିମ୍ବା କୁଟୀର ଶିଳ୍ପର ପ୍ରସାର ପାଇଁ ସେ କୌଣସି ଯୋଜନା ଫଳପ୍ରଦ ଭାବେ କାର୍ଯ୍ୟକାରୀ କରିପାରିନଥିଲେ । ତେଣୁ ଅଳ୍ପଦିନ ପରେ ମହାରାଜା ଭିକାରିବାବୁଙ୍କୁ ତାଙ୍କ କାର୍ଯ୍ୟରୁ ଅବ୍ୟାହତି ଦେଇ ଦେଇଥିଲେ । ସର୍ଟହ୍ୟାଣ୍ଡ, ଟାଇପ୍‌ରାଇଟିଂ, ବୁକ୍ କିପିଙ୍ଗ ଇତ୍ୟାଦି ଶିକ୍ଷା ଦେବାପାଇଁ ବାରିପଦାରେ ଗୋଟିଏ କମର୍ସିଆଲ ସ୍କୁଲ ସ୍ଥାପିତ ହୋଇଥିଲା । ପୂର୍ବେ ଏହି ଶିକ୍ଷା ପାଇଁ ଆଗ୍ରହୀ ଛାତ୍ରମାନଙ୍କୁ କଲିକତା ଯିବାକୁ ପଡୁଥିଲା ।

ବାରିପଦାରେ ଆଉ ଗୋଟିଏ ଦୃଷ୍ଟି ଆକର୍ଷଣକାରୀ ଅନୁଷ୍ଠାନ ଥିଲା, ତାହା ହେଉଛି ମୟୂରଭଞ୍ଜ କେନ୍ଦ୍ର ଜେଲ । ୧୮୮୫ ମସିହାରେ ବାରିପଦା ଜେଲ୍‌ଖାନା ସହରର କେନ୍ଦ୍ରସ୍ଥଳରେ ପ୍ରତିଷ୍ଠିତ ହୋଇଥିଲା । ୧୯୦୮ ମସିହାରେ ଏହି ଜେଲଖାନାକୁ ସହର ଉପକଣ୍ଠରେ ନିର୍ମିତ ଜେଲ୍‌ଖାନାକୁ ଉଠାଇ ନିଆଯାଇଥିଲା । ପ୍ରାୟ ୪୫ ଏକର ପରିମିତ ଜମି ଉପରେ ପ୍ରତିଷ୍ଠିତ ହୋଇଥିଲା ଏହି ନୂତନ କାରାଗାର । ସହର କେନ୍ଦ୍ରସ୍ଥଳରେ ଥିବା ପୁରୁଣା କାରାଗାରଟିକୁ ଗୁଜୁରି ବଜାର ବା ଦୈନିକ ବଜାରରେ ପରିଣତ କରିଦିଆଗଲା ।

ବାରିପଦା କେନ୍ଦ୍ର କାରାଗାର ଗୋଟିଏ ଆଦର୍ଶ କାରାଗାର ଥିଲା । ମୟୂରଭଞ୍ଜ ଷ୍ଟେଟ୍‌ର ମୁଖ୍ୟ ଚିକିତ୍ସକ ଥିଲେ ଏହାର ଅଧିକ୍ଷକ । ଏହି କାରାଗାରରେ ବନ୍ଦୀମାନଙ୍କୁ ଗତାନୁଗତିକ ଘଣାପେଲା, ଚକିପେଷା କିମ୍ବା ପଥର ଭଙ୍ଗା କାମରେ ଲଗାନଯାଇ ସେମାନଙ୍କୁ ବିଭିନ୍ନ ପ୍ରକାର ଔଦ୍ୟୋଗିକ କାମରେ ତାଲିମ ଦିଆଯାଇ କାମରେ ଲଗାଯାଉଥିଲା । ଏହାଦ୍ୱାରା ବନ୍ଦୀମାନେ ଜେଲ୍‌ରେ ଥିବାବେଳେ ଉପାର୍ଜନ କରିପାରୁଥିଲେ ଓ ମୁକ୍ତ ହେବାପରେ ସହଜରେ ଜୀବିକା ପାଇ ଯାଉଥିଲେ । ବାରିପଦା ଜେଲ୍ କାରଖାନାରେ

ସୋରିଷ ତେଲ ପେଡ଼ା ଯାଉଥିଲା । କିନ୍ତୁ କଇଦୀମାନେ ଘଣା ପେଲୁନଥିଲେ । ଜେଲ୍‌ଖାନାର ବଡ଼ ବଡ଼ ବଳଦମାନେ ଘଣା ଟାଣୁଥିଲେ, କଇଦୀମାନେ ତେଲ ଉତ୍ପାଦନ କରୁଥିଲେ । ବାରିପଦା ଜେଲ୍ ପରିସରରେ ଗୋଟିଏ ଡାଏରି ଫାର୍ମ, ପୋଲଟ୍ରି ଫାର୍ମ ଓ ବେକାରି ଚାଲୁ ଥିଲା । ଜେଲଖାନା ଗୋଶାଳାରେ ଅନେକ ଗୁଡ଼ିଏ ଉତ୍କୃଷ୍ଟ ଜାତିର ମୁଲାତାନି, ହରିୟାନୀ, ଲାଲସିନ୍ଧି ଗାଈ ଓ ଷଣ୍ଢ ଥିଲେ । ବାରିପଦା ସହରର ଲୋକମାନଙ୍କର ଦେଶୀ ଗାଈଗୁଡ଼ିକୁ ଏହି ଷଣ୍ଢମାନଙ୍କ ସହିତ ପ୍ରଜନନ କରାଇ ସଙ୍କର ବାଛୁରୀ ଉତ୍ପାଦନ କରାଯାଇ ପାରୁଥିଲା । ଗୋଶାଳାରେ ଉତ୍ପାଦିତ ଦୁଧ ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ଇନ୍‌ଡୋର୍ ରୋଗୀମାନଙ୍କ ପାଇଁ ଯୋଗାଇ ଦିଆଯାଉଥିଲା । ପୋଲଟ୍ରି ଫାର୍ମରେ ଥିଲେ ଧଳା ଲେଗ ହର୍ଣ୍ଣ ଓ ନାଲି ଆର୍.ଆଇ.ଆର କୁକୁଡ଼ା । ଦେଶୀ କୁକୁଡ଼ା ତୁଳନାରେ ଖୁବ୍ ବଡ଼ ଥିଲେ ସେ କୁକୁଡ଼ା ଓ ସେମାନେ କୁଡୁକି ନବସି ନିରବଚ୍ଛିନ୍ନ ଭାବେ ଅଣ୍ଡା ଦେଉଥିଲେ । ଦେଶୀ ଅଣ୍ଡା ତୁଳନାରେ ଖୁବ୍ ବଡ଼ ବଡ଼ ଥିଲା ସେ ଅଣ୍ଡା । କିନ୍ତୁ ବାରିପଦା ଲୋକମାନେ ମାଂସ ପାଇଁ ଦେଶୀ କୁକୁଡ଼ା ଓ ଲଢ଼େଇ ପାଇଁ ହାଁସୁଲି କୁକୁଡ଼ା ପାଳୁଥିଲେ । ଲମ୍ବା ଗୋଡ଼ଥିବା ଲଢ଼େଇ ପାଇଁ ଉପଯୁକ୍ତ ହାଁସୁଲି କୁକୁଡ଼ାଗୁଡ଼ିକ ମୂଲ୍ୟବାନ ଥିଲା । ବାରିପଦା ଜେଲ୍‌ଖାନାର ବେକାରି ବା ପାଉଁରୁଟି କାରଖାନାରେ ଅତି ଉତ୍କୃଷ୍ଟ ପାଉଁରୁଟି, କେକ୍ ଓ ବିସ୍କୁଟ ପ୍ରସ୍ତୁତ ହେଉଥିଲା । ଜେଲ୍‌ଖାନାରେ ପ୍ରସ୍ତୁତ ଖାଣ୍ଟି ସୋରିଷ ତେଲ, ପାଉଁରୁଟି, ବିସ୍କୁଟ, ଇତ୍ୟାଦି ଜନସାଧାରଣଙ୍କୁ ବିକ୍ରି କରାଯାଉଥିଲା । ଜେଲ୍‌ଖାନାର ଦଶ ଏକର ପରିମିତ ବଗିଚାରେ ବହୁପ୍ରକାର ପନିପରିବା ଉତ୍ପାଦିତ ହେଉଥିଲା । ଜେଲଖାନା ବଗିଚାରେ ଉତ୍ପାଦିତ ବିରାଟକାୟ ଅମୃତଭଣ୍ଡା ଗୁଡ଼ିକ ଦର୍ଶନୀୟ ହେଉଥିଲା । ଜେଲ୍ ବଗିଚାରେ ପ୍ରଚୁର ମଲ୍ଲି ଓ ଯୁଇ ଫୁଲ ଫୁଟୁଥିଲା । ଏହି ଫୁଲର ମାଳ ବାରିପଦା ବଜାରରେ ବିକ୍ରି ହେଉଥିଲା । ଏହାଛଡ଼ା ଜେଲଖାନାରେ ଦରୀ, କମ୍ବା ଲୁଗା, ଗାମୁଛା ଇତ୍ୟାଦି ବୁଣାଯାଉଥିଲା । ବେତର ଚେୟାର, ଟେବୁଲ, ସବାଇ ଘାସ ଦଉଡ଼ିରୁ ସୋଫାସେଟ ଇତ୍ୟାଦି ତିଆରି କରାଯାଇ ସର୍ବସାଧାରଣଙ୍କୁ ବିକ୍ରି କରାଯାଉଥିଲା । ମୟୂରଭଞ୍ଜ ଷ୍ଟେଟ୍‌ର ଓଡ଼ିଶାରେ ମିଶ୍ରଣ ହେବାପରେ ବାରିପଦା ଜେଲଖାନାର କେନ୍ଦ୍ର ଜେଲ ପାହ୍ୟା କମାଇ ଦେଇ ଏହାକୁ ଗୋଟିଏ ବି କ୍ଲାସ୍ ଜିଲ୍ଲା କାରାଗାର କରିଦିଆଯାଇଥିଲା । ଜେଲ୍‌ଖାନା ସହିତ ସଂଯୁକ୍ତ ଗୋଶାଳା, କୁକୁଡ଼ା ଫାର୍ମ, ପାଉଁରୁଟି କାରଖାନା

ଇତ୍ୟାଦି ଉଠାଇ ଦିଆଯାଇଥିଲା । ତାପରେ ବାରିପଦା ଜେଲ୍‌ଖାନାର ଆଉ କିଛି ବିଶେଷତ୍ୱ ରହି ନଥିଲା ।

ବାରିପଦା ସହରରେ ଗୋଟିଏ ଡିଗ୍ରୀ କଲେଜ ପରି ଉଚ୍ଚ ଶିକ୍ଷାନୁଷ୍ଠାନ ନଥିଲା ସତ କିନ୍ତୁ ଗୋଟିଏ ସୁସଂଗଠିତ ପାଠାଗାର ଥିଲା । ଏହାର ନାମ ଥିଲା ଜୁବୁଲି ଲାଇବ୍ରେରି । ମହାରାଣୀ ଭିକ୍ଟୋରିଆଙ୍କ ହୀରକ ଜୁବୁଲି ଉପଲକ୍ଷେ ୧୮୯୯ ମସିହାରେ ଏହି ସର୍ବସାଧାରଣ ପାଠାଗାରଟି ସ୍ଥାପିତ ହୋଇଥିଲା । ଏହି ପାଠାଗାରରେ ହଜାର ହଜାର ମୂଲ୍ୟବାନ ତଥା ଦୁଷ୍ପ୍ରାପ୍ୟ ପୁସ୍ତକ ଗଚ୍ଛିତ ଥିଲା । ଇଂରାଜୀ ଓଡ଼ିଆ ଓ ବଙ୍ଗଳା ଭାଷାରେ ପ୍ରକାଶିତ ସବୁ ସମ୍ବାଦ ପତ୍ର ଓ ସାମୟିକ ପତ୍ର ପତ୍ରିକା ଆସୁଥିଲା ଏହି ପାଠାଗାରକୁ । ଏଠାକୁ ଆସୁଥିବା ମାସିକ ପତ୍ରିକାଗୁଡ଼ିକୁ ଅତି ଯତ୍ନରେ ଚମଡ଼ା ବନ୍ଧାଇ କରି ରଖାଯାଉଥିଲା । ବାରିପଦାର ଅଧିକାଂଶ ଶିକ୍ଷିତ ଅଧିବାସୀ ଜୁବୁଲି ଲାଇବ୍ରେରିରେ ନିୟମିତ ପଢ଼ାଶୁଣା କରି ସେମାନଙ୍କ ଜ୍ଞାନର ପରିସର ବଢ଼ାଇବାକୁ ସମର୍ଥ ହୋଇଥିଲେ । ସବୁ ଶିକ୍ଷିତ ପରିବାରର ଗୃହିଣୀମାନେ ଏହି ପାଠାଗାରରୁ ବହି ନେଇ ସେମାନଙ୍କ ଅବସର ସମୟକୁ ବହି ପଢ଼ାରେ ବିନିଯୋଗ କରି ଆନନ୍ଦ ଲାଭ କରୁଥିଲେ । ଓଡ଼ିଶାରେ ଅନ୍ୟ କେଉଁଠି ଏପରି ସମୃଦ୍ଧ ଓ ସୁସଙ୍ଗଠିତ ଲାଇବ୍ରେରି ନଥିଲା । ମୟୂରଭଞ୍ଜ ଷ୍ଟେଟର ଓଡ଼ିଶା ସହିତ ମିଶ୍ରଣ ହେବାପରେ ଏମି.ପି.ସି କଲେଜକୁ ବଦଳି ହୋଇ ଆସିଥିବା କେତେଜଣ ଜ୍ଞାନ ପିପାସୁ, ଗବେଷକ ଅଧ୍ୟାପକ, ପଠନ ସ୍ପୃହା ଥିବା କେତେକ ବରିଷ୍ଠ ପ୍ରଶାସନିକ ଅଫିସର ଓ କେତେଜଣ ରାଜନୈତିକ ବ୍ୟକ୍ତି ଏହି ପାଠାଗାରର ଅଧିକାଂଶ ମୂଲ୍ୟବାନ ବହି ଓ ସଯତ୍ନରେ ସାଇତା ହୋଇଥିବା ପତ୍ର ପତ୍ରିକା ଆତ୍ମସାତ କରିବାକୁ କୁଣ୍ଠାବୋଧ କରି ନଥିଲେ । ଅଳ୍ପଦିନ ଭିତରେ ଅନ୍ତଃସାର ଶୂନ୍ୟ ହୋଇଗଲା ବାରିପଦାର ବିଖ୍ୟାତ ଜୁବୁଲି ଲାଇବ୍ରେରି ଯାହାର ପରବର୍ତ୍ତୀ ସମୟରେ ନାମକରଣ କରାଯାଇ ଥିଲା ଶ୍ରୀରାମଚନ୍ଦ୍ର ଭଞ୍ଜ ମେମୋରିଆଲ ଲାଇବ୍ରେରି ।

୧୯୯୭ ଜୁନ୍ ମାସରେ ଜୁବୁଲି ଲାଇବ୍ରେରି ଯାଇଥିଲି । ବିଶାଳ ହତା ଭିତରେ ଶହେ ବର୍ଷ ତଳେ ତିଆରି ହୋଇଥିବା ଲାଇବ୍ରେରି କୋଠା ଏବେ ବି ସେହିପରି ଠିଆହୋଇଛି । ଲାଇବ୍ରେରି ଆଗ ପଡ଼ିଆଟା ପାଚେରି କରାଯାଇ ଗୋଟିଏ ଶିଶୁ ଉଦ୍ୟାନ କରାଯାଇଚି । ପୂର୍ବେ ଏହି କୋଠାଟା ଉପରେ ପବନର ଦିଗ ନିର୍ଣ୍ଣୟ କରୁଥିବା ଗୋଟିଏ ଧାତବ ୱେଦାର-କକ୍ ଥିଲା,

ଲାଇବ୍ରେରି ବାରଣ୍ଡାରେ ମହାରାଣୀ ଭିକ୍ଟୋରିଆଙ୍କ ଆବକ୍ଷ ବ୍ରୋଞ୍ଜ ପ୍ରତିମୂର୍ତ୍ତି ଥିଲା । ସେ ସବୁ ଏବେ ଆଉ ନାହିଁ ।

ସଞ୍ଜ ହୋଇଯାଇଥିଲା । ପୋର୍ଟିକରେ ଗୋଟିଏ ଅଳ୍ପ ପାୱାରର ବଲ୍‌ବ ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା । କେହି କୁଆଡ଼େ ନଥିଲେ, ସବୁ ଶୂନ୍‌ଶାନ୍ । ଭୂତକୋଠି ପରି ଖାଁ ଖାଁ କରୁଥିଲା ଜୁବୁଲି ଲାଇବ୍ରେରି । ଲାଇବ୍ରେରିର ଏ ଦୁର୍ଦ୍ଦଶା ଦେଖି ମୁଁ ବିମୂଢ଼ ଭାବେ ଛିଡ଼ା ହୋଇ ରହିଥିଲି । ଏହି ସମୟରେ ଅନ୍ଧାର ଭିତରୁ ଜଣେ ଲୋକ ଛାୟାମୂର୍ତ୍ତି ପରି ବାହାରି ଆସି ମୋତେ ପଚାରିଲା, 'କ'ଣ ଦରକାର ?'

ମୁଁ ଚମକି ପଡ଼ିଥିଲି । ତା ପରେ ଆଗନ୍ତୁକକୁ ଚାହିଁ ପଚାରିଲି, 'ଆପଣ ?'

ସେ ନିଜକୁ ସେହି ପାଠାଗାରର ଲାଇବ୍ରେରିଆନ ବୋଲି ପରିଚୟ ଦେବାରୁ ମୁଁ କହିଲି, 'ଏ ଲାଇବ୍ରେରିରେ ବନ୍ଧା ହୋଇ ପୁରୁଣା ପତ୍ର ପତ୍ରିକା ରହୁଥିଲା । ମୁଁ ପୁରୁଣା ଭଞ୍ଜ ପ୍ରଦୀପ ଗୁଡ଼ା ଦେଖିବାକୁ ଚାହୁଁଚି ।'

ଲୋକଟି ବିମର୍ଷ ଭାବେ କହିଲା, 'ଏ ଲାଇବ୍ରେରିରେ କିଛି ପତ୍ର ପତ୍ରିକା କିଛି ବହିପତ୍ର ନାହିଁ ସାର୍ । ଏ ଲାଇବ୍ରେରିକୁ ଖଣ୍ଡିଏ ବି ଦୈନିକ ଖବର କାଗଜ ବା ପତ୍ର ପତ୍ରିକା ଆସେ ନାହିଁ । କିମ୍ବା କୌଣସି ପାଠକ ବି ଏଠାକୁ ଆସନ୍ତି ନାହିଁ ।'

ମୁଁ ପଚାରିଲି 'ଏ ଲାଇବ୍ରେରି କ'ଣ କିଛି ସରକାରୀ ଅନୁଦାନ ପାଏ ନାହିଁ ?'

ଲାଇବ୍ରେରି ଦାୟିତ୍ୱରେ ଥିବା ଲୋକଟି କହିଲା, 'ପୂର୍ବେ ସରକାର ଲାଇବ୍ରେରି ପାଇଁ ବାର୍ଷିକ ତିନିହଜାର ଟଙ୍କା ଅନୁଦାନ ଦେଉଥିଲେ । ଅନେକଦିନ ହେବ ତାହା ବନ୍ଦ ହୋଇଯାଇଚି ।'

ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ପ୍ରତିବର୍ଷ ଲାଇବ୍ରେରିମାନଙ୍କ ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରୁଥିବାବେଳେ ଓ ଅନେକ ଅନାମଧେୟ ସାଂସ୍କୃତିକ ଅନୁଷ୍ଠାନ ମାନଙ୍କୁ ଲକ୍ଷ ଲକ୍ଷ ଟଙ୍କା ଅନୁଦାନ ଦେଉଥିବା ବେଳେ ଜୁବୁଲି ଲାଇବ୍ରେରି ପରି ଗୋଟିଏ ପ୍ରାଚୀନ ଓ ପ୍ରତିଷ୍ଠିତ ପାଠାଗାରକୁ କାହିଁକି ଅବହେଳା କରୁଛନ୍ତି ମୁଁ ବୁଝିପାରୁନଥିଲି । ମୁଁ ବିଷର୍ଣ୍ଣ ଭାବେ ସେଦିନ ଫେରିଆସିଥିଲି ।

ଏହି ଜୁବୁଲି ଲାଇବ୍ରେରି ସହିତ ଗୋଟିଏ ଯାଦୁଘର ସଂଲଗ୍ନ ରହିଥିଲା ।

୧୯୨୩ ମସିହାରେ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଯାଦୁଘରଟି ପ୍ରତିଷ୍ଠା କରିଥିଲେ । ତାଙ୍କ ରାଜତ୍ୱ ସମୟରେ ଖିଚିଂରେ ପ୍ରତ୍ନତାତ୍ତ୍ୱିକ ଖନନ କରାଯାଇ ଗୋଟିଏ ଅତି ସୁନ୍ଦର କାରୁ-କାର୍ଯ୍ୟ ଖଚିତ ମନ୍ଦିରର ପୁନରୁଦ୍ଧାର କରାଯାଇଥିଲା । ଭାରତର ବିଶିଷ୍ଟ ପ୍ରତ୍ନତତ୍ତ୍ୱବିଦ୍ ରାମ ପ୍ରସାଦ ଚାନ୍ଦଙ୍କ ତତ୍ତ୍ୱାବଧାନରେ ଏହି କାର୍ଯ୍ୟ ସମ୍ପାଦିତ ହୋଇଥିଲା । ସେହି ସମୟରେ ମୟୂରଭଞ୍ଜ ଷ୍ଟେଟରେ ପ୍ରତ୍ନତତ୍ତ୍ୱ ବିଭାଗ ପ୍ରତିଷ୍ଠିତ ହୋଇ ପରମାନନ୍ଦ ଆଚାର୍ଯ୍ୟଙ୍କୁ ଏହାର ମୁଖ୍ୟ ଭାବେ ନିଯୁକ୍ତ କରାଯାଇଥିଲା । ପରମାନନ୍ଦ ବାବୁ ଇତିହାସର ଛାତ୍ର ନଥିଲେ । ସେ ଥିଲେ ଜଣେ ବିଜ୍ଞାନର ସ୍ନାତକ । ଜାପାନରେ କୃଷି ବିଜ୍ଞାନରେ ଉଚ୍ଚତର ଶିକ୍ଷାଲାଭ କରିବା ପାଇଁ ମହାରାଜା ତାଙ୍କୁ ନିର୍ବାଚିତ କରି ବୃତ୍ତି ମଞ୍ଜୁର କରି ସାରିଥିଲେ । କିନ୍ତୁ ଭାଗ୍ୟ ତାଙ୍କୁ ସମ୍ପୂର୍ଣ୍ଣ ବିପରୀତ ଗୋଟିଏ ବିଦ୍ୟାପ୍ରତି ଆକୃଷ୍ଟ କରିଥିଲା । ଜାପାନ ଯାତ୍ରା କରିବା ପାଇଁ ବିଳମ୍ବ ଥିବାରୁ ପରମାନନ୍ଦ ବାବୁ ଖିଚିଂ ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟରେ ରାମପ୍ରସାଦ ଚାନ୍ଦଙ୍କୁ ସାହାଯ୍ୟ କରିବା ପାଇଁ ନିଯୁକ୍ତ ହୋଇଥିଲେ । ସେହି ଅବସରରେ ସେ ଇତିହାସ ପ୍ରତି ଆକୃଷ୍ଟ ହୋଇ ସେ ବିଷୟରେ ପଢ଼ାଶୁଣା ଆରମ୍ଭ କରିଦେଇଥିଲେ । ଇତିହାସ ପାଠରେ ମଜ୍ଜିଯାଇ ବିଜ୍ଞାନ ଠାରୁ ଦୂରେଇ ଯାଇଥିଲେ ସେ । ମହାରାଜା ତାଙ୍କୁ ଷ୍ଟେଟର ପ୍ରତ୍ନତାତ୍ତ୍ୱିକ ବିଭାଗର ଅଧ୍ୟକ୍ଷ କରିଦେଇଥିଲେ । ପରମାନନ୍ଦ ବାବୁ ଖିଚିଂ ମନ୍ଦିରର ପୁର୍ନ ନିର୍ମାଣ କରିଥିଲେ । ବାରିପଦା ଓ ଖିଚିଂ ଠାରେ ଯାଦୁଘର ପ୍ରତିଷ୍ଠା କରିଥିଲେ । ଓଡ଼ିଶା ସହ ମୟୂରଭଞ୍ଜ ଷ୍ଟେଟର ମିଶ୍ରଣ ହେବା ପରେ ସେ ଭୁବନେଶ୍ୱର ଠାରେ ରାଜ୍ୟ ସଂଗ୍ରହାଳୟର ଅଧ୍ୟକ୍ଷ ଭାବେ ଏହାର ପ୍ରତିଷ୍ଠା କରିଥିଲେ । ବହୁ ଗବେଷଣା ମୂଳକ ଐତିହାସିକ ପ୍ରବନ୍ଧର ସେ ସ୍ରଷ୍ଟା ଥିଲେ । ଓଡ଼ିଶା ପ୍ରତ୍ନତତ୍ତ୍ୱର ପିତା ହିସାବରେ ସେ ଆଜି ପରିଗଣିତ । ପରମାନନ୍ଦ ଅଚାର୍ଯ୍ୟଙ୍କ ସାଧନା ସରକାରଙ୍କ ସ୍ୱୀକୃତି ଲାଭ କରିଥିଲା । ସେ ପଦ୍ମଶ୍ରୀ ଉପାଧିରେ ବିଭୂଷିତ ହୋଇଥିଲେ । ବାରିପଦାରେ ତାଙ୍କର ସୁଯୋଗ୍ୟ ସହକାରୀ ଥିଲେ ବୀରବଲ ବୋଷ । ମୟୂରଭଞ୍ଜର ପ୍ରତ୍ନତତ୍ତ୍ୱ ଓ ଇତିହାସରେ ଅଗାଧ ପାଣ୍ଡିତ୍ୟ ଥିଲା ତାଙ୍କର ।

ଜୁବୁଲି ଲାଇବ୍ରେରି କୋଠାରେ ଥିଲା ବାରିପଦା ସଂଗ୍ରହାଳୟ । ଏଥିରେ ଗଚ୍ଛିତ ହୋଇ ରହିଥିଲା ପୁରାତନ ଓ ନୂତନ ପ୍ରସ୍ତର ଯୁଗର ହାତ ହତିଆର, ତାମ୍ର ଯୁଗର ତମ୍ବା ନିର୍ମିତ କୁରାଢ଼ୀ । ହିନ୍ଦୁ ବୌଦ୍ଧ, ଜୈନ, ଗାଣପତ୍ୟ, ସୌର ଦେବ ଦେବୀମାନଙ୍କ ମୂର୍ତ୍ତି, ବହୁ ପୁରାତନ ମୁଦ୍ରା, ତାମ୍ର ଫଳକ,

ଶିଳା-ଲେଖ ଇତ୍ୟାଦି । ଏହି ସଂଗ୍ରହାଳୟରେ ସଂରକ୍ଷିତ ଚାମୁଣ୍ଡା ମୂର୍ତ୍ତିଗୁଡ଼ିକ ଭୟଙ୍କର ଦର୍ଶନା ଥିଲେ । ଅତୀନ୍ଦ୍ରିୟ ରହସ୍ୟରେ ଘେରା ସେହି ମୂର୍ତ୍ତିଗୁଡ଼ିକ ଆମମାନଙ୍କ ଶିଶୁପ୍ରାଣରେ ଭୟ ସଞ୍ଚାର କରୁଥିଲା । ଜୁବୁଲି ଲାଇବ୍ରେରି ପାଖରେ ରହୁଥିବା ଆମ ସାଙ୍ଗମାନେ କହୁଥିଲେ ଯେ ସଂଗ୍ରହାଳୟରେ ରଖାଯାଇଥିବା ଚାମୁଣ୍ଡା ମୂର୍ତ୍ତିଗୁଡ଼ିକ ରାତିରେ ଜୀବନ୍ୟାସ ପାଇ ନିଜ ନିଜ ଭିତରେ ଆଲୋଚନା- ସଭା ବସାଉଥିଲେ । ଗଳ୍ପ ସଳ୍ପ ହେଉଥିଲେ ଆଉ ଲାଇବ୍ରେରି ପଡ଼ିଆରେ ଧାଁ ଦଉଡ଼ ହୋଇ ଲୁଚକାଳି ଖେଳୁଥିଲେ । ରାତିର ନିସ୍ତବ୍ଧତାକୁ ଭାଙ୍ଗି ଦେଉଥିଲା ସେମାନଙ୍କ ପାଦ ନୂପୁରର ରୁଣୁଝୁଣୁ ଧ୍ୱନୀ । ତେଣୁ ସନ୍ଧ୍ୟାବେଳେ ବଜାରରୁ ଘରକୁ ଫେରିବାବେଳେ ଲାଇବ୍ରେରି ହତା ଭିତରେ ପଶି ଚାଲିଗଲେ ସଳଖ ବାଟ ପଡୁଥିଲେ ସୁଦ୍ଧା ଭୟରେ ଆମେ ସେ ବାଟେ ଯାଉନଥିଲୁ । ତେବେ ରାତିରେ ଚାମୁଣ୍ଡା ମୂର୍ତ୍ତିମାନେ ଜୀବନ୍ୟାସ ପାଇ ଲାଇବ୍ରେରି ପଡ଼ିଆରେ ଲୁଚକାଳି ଖେଳନ୍ତୁ ବା ନଖେଳନ୍ତୁ ସେହି ସାହିର ପ୍ରକ୍ ପିଲ୍ଲା ଝିଅମାନେ କିନ୍ତୁ ଅପରାହ୍ଣରେ ବହୁଚୋରୀ କିମ୍ୱା ଲୁଚକାଳି ଖେଳି ସମସ୍ତ ଲାଇବ୍ରେରି ହତାଟାକୁ ସେମାନଙ୍କ କଳହାସ୍ୟରେ ମୁଖରିତ କରି ଦେଉଥିଲେ ।

ଲାଇବ୍ରେରି କୋଠାର ପ୍ରଶସ୍ତ ବାରଣ୍ଡାରେ ଗୋଟିଏ ପ୍ରାଥମିକ ସ୍କୁଲ ଚାଲୁ ଥିଲା- ତା ନାମ ଥିଲା ଲାଇବ୍ରେରି ସ୍କୁଲ । ଅନେକ ଦିନ ପରେ ଲାଇବ୍ରେରି ନିକଟରେ ରହୁଥିବା ଜଣେ ନିସନ୍ତାନ ମହିଳାଙ୍କ ଦାନରେ ବାରିପଦା ମ୍ୟୁନିସିପାଲିଟି ସେହି ସ୍କୁଲ ପାଇଁ ସ୍ଥାୟୀ କୋଠାଘର ତୋଳି ସେହି ସ୍କୁଲର ନାମକରଣ କରିଛନ୍ତି ରାଧାଦେବୀ ଉ.ପ୍ରା. ସ୍କୁଲ ।

ବାରିପଦାର ଆଉ ଗୋଟିଏ ଅନୁଷ୍ଠାନ କଥା ଆଜି ମନେପଡୁଚି । ତାହା ହେଉଚି ବାରିପଦା ହାଟ । ଗୁରୁବାର ଓ ରବିବାର ଏଇ ଦୁଇପାଳି ହାଟ ବସୁଥିଲା । ତା ଭିତରୁ ଗୁରୁବାର ଥିଲା ବଡ଼ପାଳି । ଷ୍ଟେସନ ନିକଟରେ ବିସ୍ତୀର୍ଣ୍ଣ ହାଟ ପଡ଼ିଆରେ ଅପରାହ୍ଣରେ ହାଟ ବସୁଥିଲା । ପ୍ରତି ହାଟ ପାଳି ଦିନ ହାଟରେ ପ୍ରବଳ ଜନ ସମାଗମ ହେଉଥିଲା ପ୍ରଚୁର ପଣ୍ୟ-ସମ୍ଭାରରେ ଭରି ଯାଉଥିଲା ହାଟ ପଦା । ବାରିପଦାରେ ଗୋଟିଏ ସମୃଦ୍ଧ ଦୈନିକ ବଜାର ଥିବା ସତ୍ତ୍ୱେ ସାପ୍ତାହିକ ହାଟର ଗୋଟିଏ ଭିନ୍ନ ଗୁରୁତ୍ୱ ଥିଲା । ବାରିପଦା ସହରର ଆଖ ପାଖର ଆଦିବାସୀ ଗ୍ରାମଗୁଡ଼ିକର ଏହାଥିଲା ମୁଖ୍ୟ ବିପଣୀ । ହାଟର ଅଧିକାଂଶ କ୍ରେତା ଓ ବିକ୍ରେତା ଥିଲେ ଗ୍ରାମାଞ୍ଚଳରୁ ଆସୁଥିବା

ଆଦିବାସୀ ରମଣୀମାନେ । ସେମାନେ ବିଲବାଡ଼ିରେ ଚାଷ କରି ଉତ୍ପନ୍ନ କରିଥିବା ଶସ୍ୟ, ପନିପରିବା ଠାରୁ ଆରମ୍ଭ କରି ବଣ ଜଙ୍ଗଲରୁ ସଂଗ୍ରହ କରିଥିବା ବିଭିନ୍ନ ଜଙ୍ଗଲଜାତ ଦ୍ରବ୍ୟ ହାଟକୁ ଆଣି ବିକ୍ରି କରୁଥିଲେ ଓ ହାଟରୁ ସେମାନଙ୍କ ସବୁ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ, ଲୁଗାପଟା କିଣିନେଇ ଯାଉଥିଲେ । ହାଟକୁ ବିକ୍ରି ହେବା ପାଇଁ ଧାନ ଚାଉଳ, ବିରି, ମୁଗ ଓ ପନିପରିବା ଆସୁଥିଲା । ଆଉ ଆସୁଥିଲା ଆଦିବାସୀମାନେ ସଂଗ୍ରହ କରିଥିବା ମହୁଲ ଫୁଲ, ଟୋଲ, କରଞ୍ଜ ମଞ୍ଜି, କୁସୁମ ମଞ୍ଜି, ନିମ୍ବ ମଞ୍ଜି, ତେନ୍ତୁଳି ଇତ୍ୟାଦି । ମହାଜନମାନେ ହାଟ ବାହାରେ କଣ୍ଟା ଲଗାଇ ସେ ସବୁ ଜିନିଷ ସଂଗ୍ରହ କରୁଥିଲେ । ଆଦିବାସୀ ସ୍ତ୍ରୀଲୋକମାନେ ଜଙ୍ଗଲରୁ ସଂଗ୍ରହ କରିଥିବା ପାଚିଲା କେନ୍ଦୁ, ଚାରକୋଳି, ବରକୋଳି, ଭୁରୁଡୁ କୋଳି, ଛତୁ, କାକଡ଼, ବଣ କୁହୁରି ପରି ସୁସ୍ୱାଦୁ ଫଳ ଓ ପନିପରିବା ମଧ୍ୟ ଆଣୁଥିଲେ । ଶୀତଦିନେ ଧାନକଟା ପରେ ହାଟଟା ଗୋଟିଏ ମେଳା ପରି ଲାଗୁଥିଲା । ରଙ୍ଗୀନ ଶାଢ଼ୀ ପିନ୍ଧି, ମୁଣ୍ଡରେ ରଙ୍ଗୀନ ରିବନଫିତା ବାନ୍ଧି, ଫୁଲ ଖୋସି, ସାନ୍ତାଳ ରମଣୀମାନେ ଆଲୋକିତ କରିନେଉଥିଲେ ବାରିପଦା ହାଟକୁ । ସେ ସମୟରେ ହାଟ ପାଖରେ କୁକୁଡ଼ା ଲଢ଼େଇର ବିରାଟ ଆସର ବସୁଥିଲା ହାଟପଦାର ଗୋଟିଏ କୋଣରେ । ଲଢୁଆ ଗଞ୍ଜାଧରି ଆସିଥିବା ଲୋକଟି ତାର ସମକକ୍ଷ ଯୋଡ଼ିକାର ଗଞ୍ଜାଟି ଠାବ କରିବା ପରେ ଲଢ଼େଇ ପାଇଁ ପ୍ରସ୍ତାବ ଦେଉଥିଲା । ଅପରପକ୍ଷ ରାଜି ହେଲେ ଲଢ଼େଇ ଲାଗୁଥିଲା । ଲଢୁଆ କୁକୁଡ଼ା ଗୋଡ଼ରେ ଧାରୁଆ କାତି ବାନ୍ଧି ଦିଆଯାଉଥିଲା । ସେଇ କାତି ଆଘାତରେ ଗୋଟିଏ କୁକୁଡ଼ା ଟଳି ପଡୁଥିଲା । ଲୋକେ ଏ ଲଢ଼େଇ ଦେଖି ତାମସିକ ଆନନ୍ଦ ପାଉଥିଲେ । ଆଉ ଦଳେ ଲୋକ କେଉଁ କୁକୁଡ଼ା ଜିତିବ ତା ଉପରେ ବାଜି ଲଗାଇ ଜୁଆ ଖେଳୁଥିଲେ ।

ହାଟର ଗୋଟିଏ କୋଣରେ ଥିଲା ଠୁରି ଶ୍ୟାମବାବୁଙ୍କ ଜୁଆ ଆଡ୍ଡା । ଠୁରି ଶ୍ୟାମ ଜଣେ ଲାଇସେନ୍ସ ପ୍ରାପ୍ତ ଜୁଆଡ଼ି ଥିଲେ । ବଡ଼ ବଡ଼ ହାଟମାନଙ୍କରେ ମେଳା ମଉଚ୍ଛବରେ ସେ ଜୁଆ ଖେଳ କରୁଥିଲେ । ତାଙ୍କ ଆଡ୍ଡାରେ ଜୁଆ ଖେଳି ବହୁ ନିରୀହ ଆଦିବାସୀ ଯୁବକ ସର୍ବସ୍ୱାନ୍ତ ହୋଇ କାନମୁଣ୍ଡ ଆଉଁସି ଘରକୁ ଫେରି ଯାଉଥିଲେ । ଠୁରି ଶ୍ୟାମବାବୁଙ୍କ ନାମ ଥିଲା ଶ୍ୟାମସୁନ୍ଦର ଦାସ । ଗୋରା ପତଳା ବାଙ୍ଗରା ମଣିଷଟିଏ । ଛାମୁ ଦାନ୍ତ ସୁନାରେ ବନ୍ଧା, ମୁଣ୍ଡ ଚକ ଚକ ଚନ୍ଦା । ସେ ବାଙ୍ଗରା ବୋଲି ତାଙ୍କର ଠୁରିଶ୍ୟାମ ବୋଲି ନାମକରଣ ହୋଇଥିଲା । ବାରିପଦାରେ ଅନେକ ଶ୍ୟାମ ଥିଲେ । ତେଣୁ

ଚିହ୍ନଟ କରିବା ପାଇଁ ଏପରି ନାମକରଣର ଆବଶ୍ୟକତା ଥିଲା । ଠୁରି ଶ୍ୟାମ କହିଲେ ଲୋକେ ଏଇ ଶ୍ୟାମବାବୁଙ୍କୁ ବୁଝୁଥିଲେ । ଟିଙ୍ଗା ଶ୍ୟାମ ଥିଲେ ଆମ ସ୍କୁଲର ଶିକ୍ଷକ ଶ୍ୟାମସୁନ୍ଦର ଷଡଙ୍ଗୀ- ସେ ଟିକିଏ କଥାରେ ଚିଡ଼ି ଉଠୁଥିଲେ । ଖାଲି ଶ୍ୟାମବାବୁ କହିଲେ ଲୋକେ ବିଶିଷ୍ଟ ଜଙ୍ଗଲ ଠିକାଦାର ଶ୍ୟାମ ଚନ୍ଦ୍ର ଦାଶଙ୍କୁ ବୁଝୁଥିଲେ । ଠୁରିଶ୍ୟାମ ଖାଲି ଜଣେ ଜୁଆଡ଼ି ନଥିଲେ, ସେ ଥିଲେ ଜଣେ ମ୍ୟାଜିସିଆନ୍- ହାତ ସଫାଇ ଖେଳ ଦେଖାଇବାରେ ଓସ୍ତାଦ ଥିଲେ । ଷ୍ଟେଜରେ ମ୍ୟାଜିକ ସୋ ବି କରୁଥିଲେ, ଆଉ ସେ ଥିଲେ ଜଣେ ବିଶିଷ୍ଟ ଫୁଟବଲ ଖେଳାଳୀ । ଡ୍ରିବଲିଙ୍ଗ କରିବାରେ ସେ ଧୁରନ୍ଧର ଥିଲେ । ସେ ବଲ ପାଇଲେ ତାଙ୍କଠାରୁ ବଲ କାଢ଼ିବା କଷ୍ଟକର ଥିଲା । ସେ ପ୍ରତିପକ୍ଷ ଖେଳାଳୀଙ୍କୁ ନଚାଇ, କଟେଇ ଗୋଲ ଆଡ଼କୁ ଆଗେଇ ଯାଉଥିଲେ ।

ମୁହଁ ସଞ୍ଜବେଳକୁ ହାଟରେ କିଣାବିକା ଶେଷ କରି ହାଟ ନିକଟରେ ଥିବା ହାଣ୍ଡିଆ ଭାଟିରୁ ଟୋପେ ଟୋପେ ହାଣ୍ଡିଆ ପିଇ ଆଦିବାସୀ ସ୍ତ୍ରୀ ପୁରୁଷମାନେ ଯେ ଯାହା ଗାଁକୁ ଫେରି ଯାଉଥିଲେ । ହାଟ ଫେରନ୍ତି ସାନ୍ତାଳ ଝିଅମାନଙ୍କ ସମ୍ମିଳିତ କଣ୍ଠରେ ଗୀତର ଲହରୀ ଭାସି ଆସୁଥିଲା ।

.... ସୋବୋରନାଖା ଗାଡ଼ା ବାଃ
ଲିଙ୍ଗି ଲିଙ୍ଗିନା
ଲେଗମ ଲେଗମ ଗାଇ ବାଇଡେ ଲିଙ୍ଗିନା
ଗୁଡ଼ି କଳା ତ୍ରିୟାଭଏ ଅରଂ ଗୁପି ଟାଣ୍ଡିରେ
ତ୍ରିୟାଭ ରାହା ତାଆଃ ଚାର୍କ ବୁରୁ ସଂଘାନରେ ଚିକିନ୍ ବେଳାରେ

ତାର ଅର୍ଥ, 'ସୁବର୍ଣ୍ଣରେଖା ନଈର ପାଣି ବହିଯାଏ
ନାଚି ନାଚି ଧୀରେ ଧୀରେ
ଗାଈଆଳ ଟୋକା ବଇଁଶୀ ବଜାଏ ଗୋଠ ପଡ଼ିଆରେ
ଦ୍ୱିପ୍ରହର ବେଳେ
ପାହାଡ଼ ଦେହରେ ବାଜି ବଂଶୀଧ୍ୱନୀର ପ୍ରତିଧ୍ୱନୀ ଫେରିଆସେ ।

ପ୍ରକୃତି କୋଳରେ ଜନ୍ମି ପ୍ରାକୃତିକ ପରିବେଶ ଭିତରେ ବଢ଼ି ଉଠେ ଆଦିବାସୀ ସାନ୍ତାଳ । ତାର ଜୀବନ ଜୀବିକା ଖାଦ୍ୟ ପେୟ ସବୁ ସେ ଆହରଣ କରେ ପ୍ରକୃତିରୁ । ପ୍ରକୃତିକୁ ଘେରି ସବୁ ତାର ଚିନ୍ତା ଭାବନା.... ତେଣୁ

ନଈନାଳ ପାହାଡ଼ ପର୍ବତ ଅରଣ୍ୟ ଓ ପଶୁ ପକ୍ଷୀଙ୍କୁ ନେଇ ସେ ଗୀତ ବାନ୍ଧେ ଗୀତ ଗାଏ । ଖରସ୍ରୋତା ସୁବର୍ଣ୍ଣରେଖା ଜଳ ସ୍ରୋତ ପରି ଉଚ୍ଛଳ ସ୍ୱରରେ ବଂଶୀ ବଜାଏ ସାନ୍ତାଳ ଯୁବା, ଆଉ ଅଣ୍ଟାରେ ହାତ ଛନ୍ଦା ଛନ୍ଦି ହୋଇ ପାଦରେ ପାଦ ମିଳାଇ ଅର୍ଦ୍ଧ ବୃତ୍ତାକାରରେ ନାଚନ୍ତି ଉଚ୍ଛଳ ସ୍ୱାସ୍ଥ୍ୟବତୀ ସଦା ଉତ୍‌ଫୁଲ୍ଲ ହସକୁରୀ ସାନ୍ତାଳ ଝିଅମାନେ, ମାଦଳ କିମ୍ବା ଚାଙ୍ଗୁର ତାଳେ ତାଳେ ।

ବାରିପଦାର ବ୍ୟବସାୟ ବାଣିଜ୍ୟର ମୁଖ୍ୟ ଅଂଶ ମାରୱାଡ଼ି ମାନଙ୍କ ହାତରେ ଥିଲା । ଗୋଟିଏ ଲୋଟା ଓ କମ୍ବଳକୁ ସମ୍ବଳ କରି ସୁଦୂର ରାଜସ୍ଥାନରୁ ଆସି ଏଇ ଛୋଟିଆ ଗଡ଼ଜାତି ସହରଟାରେ ବ୍ୟବସାୟ କରି ଧନୀ ହୋଇଯାଉଥିଲେ ସେମାନେ, ତାପରେ ସ୍ଥାୟୀ ବସବାସ କରି ରହିଯାଉଥିଲେ । ମାରୱାଡ଼ି ବ୍ୟବସାୟୀଙ୍କ ଭିତରେ ମୁଖ୍ୟ ଥିଲେ ଶର୍ମା ମାରୁୱାଡ଼ି । ସେ ଥିଲେ ଲୁଗା ବ୍ୟବସାୟୀ, ଗୁଜୁରିବଜାର ଭିତରେ ତାଙ୍କ ଦୋକାନ ଥିଲା । ସେ ଥିଲେ ଜଣେ ଅତି ସଚ୍ଚୋଟ ବ୍ୟବସାୟୀ । ଗୋଟିଏ ଛୋଟପିଲା ଆସି ତାଙ୍କ ଦୋକାନରୁ କିଛି କିଣାକିଣି କଲେ ତାର ଠକି ଯିବାର ସମ୍ଭାବନା ନଥିଲା । ତାଙ୍କୁ ଛାଡ଼ିଦେଲେ ଚିରଞ୍ଜିଲାଲ, ଯୁଥାଲାଲ, ପ୍ରଭୁଦୟାଲ, ପୁଷର ଲାଲ ପ୍ରଭୃତି ଆହୁରି ଅନେକ ମାରୱାଡ଼ି ବ୍ୟବସାୟୀ ଥିଲେ । କାରାୱାଲଜୀ ବୋଲି ଜଣେ କଚ୍ଛି ଠିକାଦାର ଥିଲେ ବାରିପଦାର ସବୁଠାରୁ ଧନୀ ଠିକାଦାର । ଦେଶ ସ୍ୱାଧୀନ ହେବାପରେ ତାଙ୍କ ପୁଅ ମଗନ ଲାଲ ବ୍ୟବସାୟ ପରିସର ବୃଦ୍ଧି କରିବା ଉଦ୍ଦେଶ୍ୟରେ ବାଲେଶ୍ୱର ଚାଲି ଆସିଥିଲେ । ଆଉ ଜଣେ କଚ୍ଛି ବ୍ୟବସାୟୀ କାରାୱାଲାଜୀଙ୍କ ଅନେକ ପରେ ବାରିପଦା ଆସି ସେଠାରେ ସ୍ଥାୟୀ ହୋଇ ରହିଗଲେ । ତାଙ୍କ ନାମ ଖେମଜୀ ଦୟାଭାଇ । ସେ ଥିଲେ ସ୍ୱର୍ଣ୍ଣକାର, ଲୋକେ ତାଙ୍କୁ କଚ୍ଛି ବଣିଆ ବୋଲି ଡାକୁଥିଲେ । ମିଷ୍ଟଭାଷୀ ଛୋଟିଆ ମଣିଷଟିଏ ଥିଲେ ଖେମଜୀ । ସମ୍ପୂର୍ଣ୍ଣ ଅପରିଚିତ ଜାଗାରେ ଆସି ସୁନା ରୁପା କାରବାର କରି ତିଷ୍ଠିବା ସହଜ କଥା ନଥିଲା । ସେ ବାରିପଦାରେ ଆସି ଦୋକାନ ଖୋଲିବା ପରେ ଘର ଘର ବୁଲି ଅର୍ଡ଼ର ସଂଗ୍ରହ କରୁଥିଲେ । ତାଙ୍କ ବିଷୟରେ କଥା ପଡ଼ିଲେ ବାରିପଦାର ସ୍ଥାୟୀ ସ୍ୱର୍ଣ୍ଣକାରମାନେ ପରିହାସ କରି କହୁଥିଲେ, 'କଚ୍ଛି ବଣିଆ କଥା କହୁଛନ୍ତି ? ବିଦେଶୀ ଲୋକ, ଉଡ଼ା ଚଢ଼େଇ । ସୁନା ରୁପା କଥା ଆଜ୍ଞା- ଏ ଲାଇନରେ ଠକେଇ ଭଣ୍ଡେଇ ବହୁତ । ମାଲ ସମେତ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ କେଉଁଠୁ ଖୋଜି ବାହାର

କରିବେ ? ଆମ ଦେଶ ବହୁତ ବଡ଼ ଆଉ ଗୁଡୁରାଜ୍ଜ କଟକି ରାଜ୍ୟ ଏଠୁ ବହୁତ ଦୂର ।' କିନ୍ତୁ ଖେମଜୀଙ୍କ ପାଖରେ ଲୋକ ଠକି ନଥିଲେ । ସତତା ଥିଲା ତାଙ୍କ ପୁଞ୍ଜି । ସେଇ ପୁଞ୍ଜି ଉପରେ ନିର୍ଭର କରି କଚ୍ଛି ବଣିଆ ଖେମଜୀ ବାବୁଙ୍କ ବାରିପଦା ଗୁଡୁରୀ ବଜାରର ଛୋଟ ଦୋକାନଟା ବଢ଼ି ବଢ଼ି ସାରା ଓଡ଼ିଶାର ସବୁଠାରୁ ନିର୍ଭରଯୋଗ୍ୟ ଅଳଙ୍କାର ନିର୍ମାଣକାରୀ ପ୍ରତିଷ୍ଠାନ ହୋଇଗଲା ଖେମଜୀ ଦୟାଭାଇ ଏଣ୍ଡ ସନ୍ସ । ଖେମଜୀର ବାଇଶ କ୍ୟାରେଟ ସୁନା ମାନେ ବାଇଶ କ୍ୟାରେଟ । ସେଥିରେ ଟିକିଏ ବି ଖାଦ ନାହିଁ । ଅନ୍ୟ କୌଣସି ଅଳଙ୍କାର ବ୍ୟବସାୟୀଙ୍କ ପାଖକୁ କେ.ଡି.ମାର୍କା ସୁନା ଗହଣା ବଦଳ ବା ବିକ୍ରି ପାଇଁ ନେଇଗଲେ, ସେମାନେ ସେ ସୁନା ବିନା ଦ୍ୱିଧାରେ ଗ୍ରହଣ କରନ୍ତି- କଷଟିରେ ଘଷି ସୁନାର ମାନ ନିର୍ଣ୍ଣୟ କରିବାକୁ ଚେଷ୍ଟା କରନ୍ତି ନାହିଁ ।

ବାରିପଦାର ଅବକାରୀ ବ୍ୟବସାୟ ଥିଲା ବିହାରୀ ମଘିଆମାନଙ୍କ ହାତରେ । ରାମବଦାକ ସାହା, ଅଯୋଧ୍ୟା ସାହା ଥିଲେ ବାରିପଦାର ମୁଖ୍ୟ ଅବକାରୀ ବ୍ୟବସାୟୀ । ମଦ ଗଞ୍ଜେଇ, ଅଫିମର ପଟ୍ଟାଦାର ଥିଲେ ସେମାନେ । ରାଇରଙ୍ଗପୁର ବିଶିଷ୍ଟ ଅବକାରୀ ବ୍ୟବସାୟୀ ବଳରାମ ସା ଲାଇନ ବଦଳାଇ ପରିବହନ ବ୍ୟବସାୟ ଆରମ୍ଭ କରିଦେଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସେ ପ୍ରଥମେ ବାରିପଦାରୁ ଅମର୍ଦାରୋଡ଼ ଓ ବାଲେଶ୍ୱରକୁ ବସ ସର୍ଭିସ୍ ଖୋଲି ଆଧୁନିକ ଧରଣର ବସ ଚଳାଇବା ଆରମ୍ଭ କରିଥିଲେ । ଏହା ପୂର୍ବରୁ ବାରିପଦାରୁ ବହିଃଜଗତକୁ ଏକମାତ୍ର ସଂଯୋଗ ଥିଲା ମୟୂରଭଞ୍ଜ ଲାଇଟ୍ ରେଲୱେର ଛୋଟ ରେଳ । ଦିନରେ ଥରେ ସେହି ଟ୍ରେନରେ ବସି ରୂପସା ଯିବାକୁ ପଡୁଥିଲା । ତିରିଶ ମାଇଲ ରାସ୍ତା ପାଞ୍ଚ ଘଣ୍ଟାରେ ଅତିକ୍ରମ କରିବା ପରେ ରୂପସା ଷ୍ଟେସନରେ ଓହ୍ଲାଇ ବ୍ରଡ଼ଗଜ ଲାଇନର ବଡ଼ଗାଡ଼ି ଧରିବାକୁ ପଡୁଥିଲା । ଛୋଟ ଗାଡ଼ିରୁ ଓହ୍ଲାଇ ଅନେକ ସମୟ ବଡ଼ ଗାଡ଼ି ପାଇଁ ଅପେକ୍ଷା କରିବାକୁ ପଡ଼େ । ରୂପସାରେ ପହଞ୍ଚିଯିବା ପରେ ଭାରି ଭଲଗା ଲାଗୁଥିଲା ରୂପସା ରେଳଷ୍ଟେସନ । ପ୍ଲାଟ୍‌ଫର୍ମ ଅଶ୍ୱତ୍ଥ ଗଛରେ ଅନେକ କାଉଙ୍କ ଭିଡ଼ । କୋଇଲା ଚୁଲିର ଧୂଆଁ... ପ୍ଲାଟ୍‌ଫର୍ମରେ ରେଳୱେର ଲାଇସେନ୍ସ ପ୍ରାପ୍ତ କ୍ୟାଟରାର୍ ଈଶ୍ୱର ଦାସ, ବଲ୍ଲଭ ଦାସଙ୍କ ନିରାମୀଷ ଭୋଜନ ଜଳଖିଆ ଦୋକାନରେ ପୁରି-ଆଳୁଦମ କିମ୍ବା ସେକା ରୁଟି ବୋଇତାଳୁ ଘାଣ୍ଟ, ସିଙ୍ଗଡ଼ା, କଚୁରି, ଖାସ୍ତାଗଜା ରସଗୋଲା ଓ ଜିଲିପିର ଘ୍ରାଣ ପେଟର ଭୋକଟାକୁ

ଆହୁରି ବଢ଼ାଇ ଦେଉଥିଲା । ଶେଷରେ ପ୍ରତୀକ୍ଷାର ଅନ୍ତହୁଏ । ଟ୍ରେନ୍ ଇନ୍ କରିବାର ଶେଷ ଘଣ୍ଟି ଶୁଭେ । ଷ୍ଟେସନରେ କୋଳାହଳ ଆରମ୍ଭ ହୋଇଯାଏ । ବିଶାଳକାୟ ଷ୍ଟିମ୍ ଇଞ୍ଜିନ ଲାଗିଥିବା ବଡ଼ ଲାଇନ୍ ଗାଡ଼ି ଆଗରେ ମୟୂରଭଞ୍ଜ ଲାଇଟ ରେଲଓ୍ୱେରେ ଛୋଟ ଇଞ୍ଜିନ୍ ଗାଈ ପାଖରେ ବାଛୁରୀ ପରି ଜଣାଯାଏ । ବିଶ୍ୱଯୁଦ୍ଧ ଶେଷହେବା ପରେ ଭାରତୀୟ ରେଲବାଇ ପୁରୁଣା ବିଲାତି ଇଞ୍ଜିନଗୁଡ଼ିକୁ ବାତିଲ କରିଦେଇ ତା ବଦଳରେ କାନାଡ଼ିଆନ ଇଞ୍ଜିନ୍ ଆଣିଲେ । ଲୋକେ ସେହି ବିଶାଳକାୟ ଇଞ୍ଜିନକୁ ଚାହିଁ ତଟସ୍ଥ ହୋଇଗଲେ । ତାପରେ ଆମ ଦେଶରେ ଚିତ୍ତରଞ୍ଜନ ଲୋକୋମୋଟିଭ ଫାକ୍ଟ୍ରିରେ ରେଳ ଇଞ୍ଜିନ୍ ତିଆରି ହେଲା । ଶେଷରେ ଦିନେ ଷ୍ଟିମ୍ ଇଞ୍ଜିନର ଯୁଗ ଶେଷ ହୋଇଗଲା । ଷ୍ଟିମ୍ ଇଞ୍ଜିନ ବଦଳରେ ଶକ୍ତିଶାଳୀ ଡିଜେଲ ଇଞ୍ଜିନ ଲାଗିଲା ସବୁ ଟ୍ରେନ୍‌ରେ ।

ଦେଖନ୍ତୁ ବାରିପଦା କଥା କହିବାକୁ ବସି ମୁଁ ରେଳ ଇଞ୍ଜିନର ଇତିହାସ ଆଲୋଚନା ଆରମ୍ଭ କରିଦେଇଚି । ନା- ରେଳ ଇଞ୍ଜିନ ବିଷୟରେ ଗପ କହିବା ମୋ ଉଦ୍ଦେଶ୍ୟ ନୁହେଁ। ମୁଁ କହୁଥିଲି ବାରିପଦା-ବାଲେଶ୍ୱର ବସ୍ ସର୍ଭିସ୍ କଥା । ପଇଁତ୍ରିଶ ମାଇଲ ବା ଅଠାବନ କିଲୋମିଟର ବାଟ ଅତିକ୍ରମ କରିବା ପାଇଁ ତିନିଘଣ୍ଟା ସମୟ ଲାଗେ । ବାରିପଦା ସହର ଛାଡ଼ିବା ପରେ ରାସ୍ତାର ଦୁଇ ପାଖର ନିବିଡ଼ ଛାୟାଛନ୍ନ ଶାଳବଣ ଭିତରେ ବସ୍ ଆସି ଷୋହଳ ମାଇଲ୍ ଦୂରର ବେତନଟି ପହଞ୍ଚେ । ସେଠାରେ ଅଧଘଣ୍ଟାଏ ରହଣି । ଡ୍ରାଇଭର କଣ୍ଡକ୍ଟର ଓହ୍ଲାଇ ଯାଇ ଜଳଖିଆ ଦୋକାନ ବେଞ୍ଚରେ ଅଯେସ କରି ବସି ଜଳଖିଆ ଖା'ନ୍ତି - ମଳେଇ ପକା ଚା ପିଅନ୍ତି, ପାନ ଦୋକାନରେ ଅଳସ ଭାବେ ଠିଆହୋଇ ବରାଦ କରି ଜର୍ଦ୍ଦା ପାନ ଭଙ୍ଗାନ୍ତି । ଆଉ ସିଗାରେଟ୍ ଟାଣନ୍ତି । ପୁଣି ବସ୍ ଚାଲେ, ହେଲପର ଲମ୍ବା ଲମ୍ବା ଦୁଇଥର ହୁଇସିଲ୍ ବଜାଏ । କଣ୍ଡକ୍ଟର ତା ସିଟ୍‌ରେ ବସି ଅଳସ ଭାଙ୍ଗି ଘଣ୍ଟି ଦଉଡ଼ିଟାକୁ ଦୁଇଥର ଟାଣି ଟନ୍ ଟନ୍ ଶବ୍ଦ କରି କହେ- ଚାଲ.... । ବର୍ତ୍ତମାନ ବାରିପଦାରୁ ବାଲେଶ୍ୱର ଯିବାକୁ ସର୍ଭିସ ବସ୍‌ରେ ଘଣ୍ଟାଏ ଲାଗୁଚି । ତଥାପି ୧୯୪୫-୪୬ ମସିହାରେ ବାରିପଦାରୁ ବାଲେଶ୍ୱର ବସ୍ ସଂଯୋଗ ହୋଇ ଅନେକ ସୁବିଧା ହୋଇଥିଲା । ଏହାପରେ 'ସ' ମୋଟରେ ସର୍ଭିସ ବସ୍ ବହୁ ଜାଗାକୁ ଚାଲିଥିଲା । ସେହି ପରିବହନ ବ୍ୟବସାୟ ତଦାରଖ କରୁଥିଲେ ବଳରାମ ସଙ୍କ ସାନ ଭାଇ ନୀଳ ରତନ ସ ।

ମୟୂରଭଞ୍ଜ ଷ୍ଟେଟରେ ଅରଣ୍ୟ ସମ୍ପଦ ଭରପୂର ହୋଇ ରହିଥିଲା । କିନ୍ତୁ ବାରିପଦା ଲୋକମାନେ ଜଙ୍ଗଲ ଠିକାଦାରୀ କରୁନଥିଲେ । ସେମାନଙ୍କର ଧାରଣା, ଗଛମାନଙ୍କର ବି ଜୀବନ ଅଛି । ବଡ଼ ଗଛଟିଏ କାଟି ଦେବାପରେ ଗଛଟି ତଳେ ପଡ଼ିବାବେଳେ ଯେଉଁ କେଁ ... କଟ୍..କଟ ଶବ୍ଦ ହୁଏ ତାହା ମରଣୋନ୍ମୁଖ ଗଛଟିର ଆର୍ତ୍ତନାଦ । ସେହି ଆର୍ତ୍ତନାଦ ଗୋଟିଏ ଭୟଙ୍କର ଅଭିଶାପ ପାଲଟି ଯାଇ ଗଛ କଟାଉଥିବା ଲୋକ ଜୀବନରେ ସର୍ବନାଶ ଆମନ୍ତ୍ରଣ କରିଆଣେ- ତାକୁ ନିର୍ବଂଶ କରିବିଏ । ମୟୂରଭଞ୍ଜ ଷ୍ଟେଟର ଏକଚାଟିଆ ଜଙ୍ଗଲ ଠିକାଦାରୀ ବନ୍ଥୁଆ କମ୍ପାନୀ ବୋଲି କଲିକତାର ଗୋଟିଏ ଫାର୍ମ ହାତରେ ଥିଲା । ବାରିପଦାର ଶ୍ୟାମଚନ୍ଦ୍ର ଦାଶ ପ୍ରଥମଥର ପାଇଁ ବଡ଼ଧରଣର ଜଙ୍ଗଲ ଠିକାଦାରୀ କରି ଥିଲେ । ଖୁବ୍ ଅଳ୍ପଦିନ ଭିତରେ ବିରାଟ ଧନୀ ହୋଇଯାଇଥିଲେ ସେ । କିନ୍ତୁ ତାଙ୍କ ଉପାର୍ଜ୍ଜିତ ଐଶ୍ୱର୍ଯ୍ୟ କ୍ଷଣସ୍ଥାୟୀ ହୋଇଥିଲା । ତାଙ୍କ ଜୀବଦ୍ଦଶାରେ ସେ ସର୍ବସ୍ୱାନ୍ତ ହୋଇଯାଇଥିଲେ । ବାର୍ଦ୍ଧକ୍ୟରେ ଦେବାଳିଆ ହୋଇଯାଇଥିବା ନିଃସନ୍ତାନ ଶ୍ୟାମବାବୁ ବହୁ ଅଭାବ ଅନାଟନ ଭିତରେ କାଳାତିପାତ କରିଥିଲେ ।

ବାରିପଦା ବଜାରର ଅଧିକାଂଶ ଖୁଚୁରା ଦୋକାନୀ ଥିଲେ ଯାଜପୁରର ହରିପୁର-ସୁଜନପୁର ଅଞ୍ଚଳରୁ ଆସିଥିବା ପାଟରାମାନେ । ପାଟରାମାନଙ୍କର ମାରୱାଡ଼ି ମାନଙ୍କ ଭଳି କୌଳିକ ବୃତ୍ତି ହେଉଛି ବ୍ୟବସାୟ । ପ୍ରଥମେ ହରିପୁର ଅଞ୍ଚଳରୁ ଜଣେ ପାଟରା ଆସି ବାରିପଦାରେ ଦୋକାନ କରିବା ପରେ ଗାଁରୁ କୌଣସି ଆତ୍ମୀୟ ବା ସମ୍ପର୍କୀୟଙ୍କୁ ଆଣି ନିଜ ଦୋକାନରେ ବିକ୍ରୟକାରୀ କର୍ମଚାରୀ ଭାବେ ରଖନ୍ତି । କିଛିଦିନ ପରେ ବିକ୍ରୟକାରୀ ଭାବେ ଆସିଥିବା ପିଲାଟି ନିଜେ ଦୋକାନ କରେ ଓ ଗାଁରୁ ଆଉ ଗୋଟିଏ ପିଲା ଆଣି ନିଜ ପାଖରେ ବିକ୍ରୟକାରୀ ଭାବେ ରଖେ । ଏପରି ଭାବେ ପାଟରା ମାନଙ୍କ ଦୋକାନର ବିସ୍ତାର ବଢ଼ୁ ବଢ଼ୁ ବର୍ତ୍ତମାନ ବାରିପଦାର ଅଧିକାଂଶ ଖୁଚୁରା ଦୋକାନର ମାଲିକ ହରିପୁର-ସୁଜନପୁର ଅଞ୍ଚଳରୁ ଆଗତ ପାଟରାମାନେ । ସେହି ପାଟରା ବ୍ୟବସାୟୀମାନେ ବାରିପଦାରେ ଘରଦ୍ୱାର କରି ପରିବାର ସହିତ ରହୁଥିଲେ ମଧ୍ୟ ନିଜ ଗ୍ରାମ ସହିତ ସମ୍ପର୍କ ରକ୍ଷା କରୁଥିଲେ । ସେମାନଙ୍କର ସୁବିଧାରେ ସ୍ୱଗ୍ରାମକୁ ଯିବା ଆସିବା କରିବା ପାଇଁ ଷ୍ଟେଟ ଟ୍ରାନ୍ସପୋର୍ଟ କର୍ପୋରେସନ ବାରିପଦାରୁ ସୁଜନପୁରକୁ ଗୋଟିଏ ବସ୍ ସର୍ଭିସ୍ ଚଳାଉଥିଲେ ।

ଆଜିକାଲି ପରି ସେତେବେଳେ ବାରିପଦାରେ ଏତେ ପାନ ଦୋକାନ ନଥିଲା । ବର୍ତ୍ତମାନ ସାମାନ୍ୟ ଜନଗହଳି ହେଉଥିବା ସ୍ଥାନ ଯେପରି ବସ୍‌ଷ୍ଟାଣ୍ଡ, ସିନେମାହଲ୍, କଚେରି ବା ସ୍କୁଲ କଲେଜ ନିକଟରେ ଅସଂଖ୍ୟ ପାନ ଦୋକାନ ଆଖିରେ ପଡ଼େ । ଅବଶ୍ୟ ଏହା ଭିତରେ ଲୋକ ବଢ଼ିଛନ୍ତି, ପାନ ସିଗାରେଟ ଲଜେନ୍‌ସ୍ ଓ ଚକୋଲେଟ୍ ଇତ୍ୟାଦିର ଚାହିଦା ବଢ଼ିଚି, କିନ୍ତୁ ସେ ତୁଳନାରେ ପାନ୍ ଦୋକାନର ଅଭିବୃଦ୍ଧି ବହୁଗୁଣରେ ବଢ଼ିଯାଇଚି । କାରଣ ଶିକ୍ଷିତ ହେଉ, ଅର୍ଦ୍ଧଶିକ୍ଷିତ ହେଉ ବା ଅଶିକ୍ଷିତ ହେଉ ଜଣେ ଲୋକ ଅଳ୍ପ ମୂଳଧନରେ ବ୍ୟବସାୟଟିଏ କରିବାକୁ ଇଚ୍ଛାକଲେ ପାନ ଦୋକାନ କରିବା ଛଡ଼ା ତା ପାଖରେ ଅନ୍ୟ ବିକଳ୍ପ ନାହିଁ । ତେଣୁ ଆଜିକାଲିର ବହୁ ବେକାର ଯୁବକ ପେଟ ପୋଷିବା ପାଇଁ ପାନ ଦୋକାନଟିଏ କରିବା ପାଇଁ ବାଧ ହେଉଛନ୍ତି । ସେ ସମୟରେ କିନ୍ତୁ ବାରିପଦା ସହରରେ ଅଳ୍ପ କେତୋଟି ପାନ ଦୋକାନ ଥିଲା । ତା ଭିତରୁ ଦୁଇଟି ବଡ଼ ପାନ ଦୋକାନ ଥିଲା ଗୁଡ଼ୁରି ବଜାରର ପ୍ରବେଶ ପଥରେ । ଗୋଟିଏ ଥିଲା କୃଷ୍ଣ ଦୋକାନ ଅନ୍ୟଟି ଭରତ ଦୋକାନ । ଉଠା ଘୁମୁଟିରେ ଚାଲୁଥିବା ଭରତ ଦୋକାନ ଗୋଟିଏ ପ୍ରସିଦ୍ଧ ଦୋକାନ ଥିଲା । ଲୋକଙ୍କ ଚାହିଦା ଅନୁଯାୟୀ ମନ ପସନ୍ଦର ଉତ୍କୃଷ୍ଟ ଖିଲି ପାନ ମିଳୁଥିଲା ସେ ଦୋକାନରେ । ସେ ଦୋକାନରେ ପାନ ସିଗାରେଟ୍ ବିଡ଼ି, ଲଜେନ୍ସ ଚକୋଲେଟ୍ ଇତ୍ୟାଦି ମିଳିବା ସହିତ ବହୁ ନିତ୍ୟବ୍ୟବହାର୍ଯ୍ୟ ପ୍ରସାଧନ ସାମଗ୍ରୀ ଓ ମନୋହରୀ ଜିନିଷ ମଧ ମିଳୁଥିଲା । ଦୋକାନର ମାଲିକ ସୌମ୍ୟ ଦର୍ଶନ ଓ ମିଷ୍ଟଭାଷୀ ଭରତବାବୁ ଜଣେ ସଦ୍‌ବଂଶୀୟ ଲୋକ ଥିଲେ । ତାଙ୍କର ଆଦିନିବାସ ବାଲେଶ୍ୱର । ସେ ଅତି ଅଳ୍ପ ବୟସରୁ ଜୀବିକା ଅନ୍ୱେଷଣରେ ବାରିପଦା ଚାଲି ଆସିଥିଲେ । ତାପରେ ସେ ବାରିପଦାରେ ଦୋକାନ କରି ସ୍ଥାୟୀ ଭାବେ ରହିଯାଇଥିଲେ । ଭରତବାବୁଙ୍କ ମୁହଁରେ ସବୁବେଳେ ସ୍ମିତ ହସ ଲାଗି ରହୁଥିଲା । ସେ ଅତ୍ୟନ୍ତ ମେଳାପୀ ଓ ବାକ୍‌ପଟୁ ଥିଲେ । ସବୁବେଳେ ସେ ସସ୍ମିତ ମୁହଁରେ ଧୀର ସ୍ୱରରେ କଥାବାର୍ତ୍ତା କରୁଥିଲେ । ବାରିପଦାର ବହୁ ବିଶିଷ୍ଟ ଲୋକ ପାନ ସିଗାରେଟ୍ କିଣିବା ପାଇଁ ତାଙ୍କ ଦୋକାନକୁ ଯାଉଥିଲେ ଆଉ ଭରତ ବାବୁଙ୍କ କଥାଜାଲରେ ଛନ୍ଦିହୋଇ ସେଠାରେ ଅନେକ ସମୟ ଅଟକି ଯାଉଥିଲେ । ଭାରି ବାରିପଦା ଅନୁରାଗୀ ଲୋକ ଥିଲେ ସେ । ବାରିପଦାକୁ ନ୍ୟୁନ କରି କେହି କଥା କହିଲେ ସେ ସଙ୍ଗେ ସଙ୍ଗେ ତାର ଉଚିତ ଜବାବ ଦେଇ ଦେଉଥିଲେ । ତାଙ୍କ ଆଗରେ ଗାଲୁ-ଗଳ୍ପ ମାରି ମଧ କେହି

ଖସି ଯାଇପାରୁ ନଥିଲେ । ଥରେ କଲିକତାରୁ ବାରିପଦାରେ ଥିବା ବନ୍ଧୁ ଘରକୁ ବୁଲି ଆସିଥିବା ଜଣେ ବଙ୍ଗାଳୀ ଯୁବକ ଭରତ ଦୋକାନରେ ଛିଡ଼ା ହୋଇ ସିଗାରେଟ୍ ଟାଣିବା ଅବସରରେ ଛୋଟ ସହର ବାରିପଦା ଲୋକଙ୍କ ଆଗରେ କଲିକତା ମହାନଗରୀର ବୈଶିଷ୍ଟ୍ୟ ପ୍ରତିପାଦନ କରିବା ପାଇଁ ଗୋଟିଏ ଗାଲୁ ଗପ ଫାନ୍ଦି ବସିଲା । ସେ କହିଲା, ଏବେ କଲିକତାର ପ୍ରସିଦ୍ଧ କେ.ସି. ଦାସ ରସଗୋଲା ଦୋକାନକୁ ଗୋଟିଏ ନୂଆ ମେସିନ ଆସିଛି । ସେଥିରେ ଅଲଗା ଅଲଗା ଖୋପରେ ଚିନି ଓ ଛେନା ଭର୍ତ୍ତି କରି ସୁଇଚ୍ ଟିପି ଦେଲେ ଅଳ୍ପ ସମୟ ଭିତରେ ରସଗୋଲା ପ୍ରସ୍ତୁତ ହୋଇ ବାହାରି ଆସୁଚି ।'

ତା କଥା ଶୁଣି ଭରତ ବାବୁ କହିଲେ, 'ଇଏ ଆଉ ନୂଆ କଥା କଣ ? ଆମ ମହାରାଜା ଅଳ୍ପଦିନ ହେବ ଗୋଟିଏ ମେସିନ୍ ବିଲାତରୁ ଆଣି ରାଜବାଟି ବବୁର୍ଚ୍ଚି ଖାନାରେ ବସାଇଛନ୍ତି । ସେଥିରେ ଗୋଟିଏ ପଟେ ଗୋଟିଏ ଦୁହାଁଳିଆ ଗାଈ ଅନ୍ୟପଟେ କେତେଗୋଛା ଆଖୁ ପୂରାଇ ସୁଇଚ୍ ଟିପିଦେଲେ, ରସଗୋଲା, ପାନତୁଆ, ଖିରିମୋହନ, ରାଜଭୋଗ, ସନ୍ଦେଶ, ଖୁଆପେଡ଼ା, କାଲାକନ୍ଦ ଇତ୍ୟାଦି ଯାବତୀୟ ଦୁଧ ତିଆରି ମିଠା ବାହାରି ଆସୁଛି । ଅବଶ୍ୟ ବିଭିନ୍ନ ପ୍ରକାର ମିଠାପାଇଁ 'ନବ୍' ଘୁରାଇ ଚ୍ୟାନେଲ ବଦଳ କରିବାକୁ ପଡ଼େ ।

ସେ କଥା ଶୁଣି ଅବିଶ୍ୱାସରେ ହସିଦେଇ ବଙ୍ଗାଳୀ ଯୁବକଟି କହିଲା, 'ଏମିତି ମେସିନ ତିଆରି କରିବା ସମ୍ଭବ ନା କଣ ? କାହିଁ, ଏପରି ମେସିନ ଏ ଯାଏ ଉଭାବିତ ହୋଇଛି ବୋଲି ତ ମୁଁ କେବେ ଶୁଣିନାହିଁ ।'

ଭରତବାବୁ କହିଲେ, 'ଆପଣ ସେ କଥା ଶୁଣିବା ପାଇଁ ସୁଯୋଗ କେଉଁଠୁ ପାଇବେ? ମହାରାଜା ସେ ମେସିନର ପେଟେଣ୍ଟ ନେଇ ନେଇଛନ୍ତି । ହଲାଣ୍ଡର ଫିଲିପସ୍ କମ୍ପାନୀ କେବଳ ଗୋଟିଏ ମେସିନ ମହାରାଜାଙ୍କ ବ୍ୟକ୍ତିଗତ ବ୍ୟବହାର ପାଇଁ ତିଆରି କରିଛନ୍ତି ।'

ବଙ୍ଗାଳୀ ଯୁବକଟି ଭରତ ଦୋକାନରେ ଠିଆହୋଇ ଆଉ ଗୁଳି ମାରିବା ପାଇଁ ସାହସ ନକରି ଚୁପ୍‌ଚାପ ଚାଲି ଯାଇଥିଲା ।

ଭରତବାବୁ ଅନବରତ ଧୀର ସ୍ୱରରେ କଥା କହିବା ସହିତ କ୍ଷୀପ୍ର ହାତରେ ପାନ ଭାଙ୍ଗୁଥିଲେ ଆଉ ଖିଲିପାନକୁ କଞ୍ଚା ଶାଳପତ୍ରରେ ମୋଡ଼ି ଗରାଖମାନଙ୍କ ହାତକୁ ବଢ଼ାଇ ଦେଉଥିଲେ । ସେ ପରିଚିତ ଗରାଖମାନଙ୍କୁ କେମିତି ପାନ ବୋଲି ପଚାରୁ ନଥିଲେ । ବାରିପଦାର ସବୁ ନିୟମିତ ଗ୍ରାହକମାନଙ୍କ ପାନ ଫରମାସ୍ ସେ ମନେ ରଖିଥିଲେ । ଭରତବାବୁଙ୍କ ପରି

ସବୁଶ୍ରେଣୀ ଲୋକଙ୍କ ସହିତ ମିଶି ପାରୁଥିବା, ସମସ୍ତଙ୍କ ସୁଖ ଦୁଃଖରେ ଭାଗୀ ହୋଇପାରୁଥିବା ଜଣେ ଲୋକ ମିଳିବା ଆଜିକାଲି ଆଉ ସମ୍ଭବ ନୁହେଁ ।

ଆମ ପିଲାଦିନେ ବାରିପଦା ସହରରେ ବାଳକଟା ସେଲୁନ ନଥିଲା । କଟକ ରେଭେନ୍ସା କଲେଜରେ ପଢୁଥିବା ପିଲାମାନେ କଟକ କଲେଜ ଛକରେ ଥିବା ସେଲୁନ କଥା କହୁଥିଲେ । ସେହି ସେଲୁନରେ ଗଦିଦିଆ ଘୂର୍ଣ୍ଣମାନ ଚେୟାରରେ ବସି ବାଳ କାଟିବା କଥା ଆମେ ସେମାନଙ୍କ ଠାରୁ ଶୁଣୁଥିଲୁ । ଖିଅର ହୋଇ ସାରିଲେ ସେଲୁନ ଭଣ୍ଡାରି ପିଚକାରିରେ ସୁବାସିତ ଗୋଲାପ-ଜଳ ସିଞ୍ଚି ମୁହଁ ଧୋଇ ଦେଉଥିଲା, ମୁହଁରେ ଡେଟଲ, ଆଫଟର-ସେଭ ଲୋସନ ଆଉ ସ୍ନୋ କିମ୍ବା କ୍ରିମ୍ ମାରି ଦେଉଥିଲା- ଟେଲକମ ପାଉଡର ବିଞ୍ଚି ଦେଉଥିଲା । ଆମ ଘରକୁ, ଖୁର ମୁଠିକୁ ଚଟ ବ୍ୟାଗରେ ଗୁଡ଼ାଇ କାଖ ତଳେ ଜାକି ଭଗବାନ ଭଣ୍ଡାରି ଆସୁଥିଲା । ଆମେ ଘର ଆଗରେ ଥିବା ଗୋଟିଏ ଝଙ୍କା ବଉଳ ଗଛ ଛାଇରେ ପିଢ଼ା ପକାଇ ବସୁଥିଲୁ । ଭଗବାନ ବିନା ବାକ୍ୟ ବ୍ୟୟରେ ପେଶାଦାରୀ ଦକ୍ଷତାରେ ଆମ ବାଳ କାଟି ଦେଉଥିଲା । ଭଗବାନ ବାଳ କାଟିବା ପରେ ମୁଣ୍ଡର ଆଗବାଳ ଅଧ ଇଞ୍ଚରୁ ଛୋଟ ହୋଇ ଯାଉଥିଲା, ଖୁଣ୍ଟା ଖୁଣ୍ଟା ତାକୁ ବାଳ ଠିଆ ହୋଇ ରହୁଥିଲା । ଏତେ ଛୋଟ କାହିଁକି କାଟିଲୁ ପଚାରିଲେ ସେ ନିର୍ବିକାର ଭାବେ କହୁଥିଲା, ବାପାଙ୍କ ହୁକୁମ- ତାଠୁ ବଡ଼ ବାଳ ରଖିବା କଥା ହେଲେ ପଚାରି ଆସ । ବାପାଙ୍କୁ ପଚାରିବା ସାହସ ଆମର ନଥିଲା । ତାଛଡ଼ା ଲମ୍ବାବାଳ ରଖିଲେ ସ୍କୁଲରେ ଜଣେ ଜଣେ ଶିକ୍ଷକ ତାକୁ ଧରି ଝିଙ୍କୁଥିଲେ, ତେଣୁ ଆମେ ବି ଲମ୍ବା ବାଳ ରଖି ବ୍ୟାକ୍-ବ୍ରାଶ କରିବା କଥାରେ ବିଶେଷ ଜୋର ଦେଉନଥିଲୁ ।

ବିଶ୍ୱଯୁଦ୍ଧ ଲାଗିଯିବା ପରେ କଲିକତାରେ ବାଳକଟା ଦୋକାନରେ ଚାକିରି କରିଥିବା ଜଗତସିଂହପୁର ଅଞ୍ଚଳର କେତେଜଣ ଭଣ୍ଡାରି ବାରିପଦା ପଳାଇ ଆସି ବଡ଼ ପୋଖରୀର ଦକ୍ଷିଣ ପଟ ହୁଡ଼ା ତଳେ କ୍ୟାବିନ ପକାଇ ବାଳକଟା ସେଲୁନ ଖୋଲିଥିଲେ । କଟକ କଲେଜ ଛକ ସେଲୁନ୍ ଭଳି ଆଧୁନିକ ହେୟାର-କଟିଂ ବ୍ୟବସ୍ଥା ଥିଲା ସେ ସେଲୁନ ମାନଙ୍କରେ । କ୍ରମେ ସେହି ବାଳକଟା ସେଲୁନ ସଂଖ୍ୟା ବଢ଼ିବାରେ ଲାଗିଲା । ବହିରାଗତ ନାପିତ ମାନେ ଛାପାଖାନା ପାଖରେ ଘର ଭଡ଼ା ନେଇ ରହୁଥିଲେ । କ୍ରମେ ଚଟ ବ୍ୟାଗରେ ଖୁରମୁଠି ଗୁଡ଼ାଇ ଘର ଘର ବୁଲି ବାଳ କାଟୁଥିବା ସ୍ଥାନୀୟ ଭଣ୍ଡାରି ମାନଙ୍କ ବ୍ୟବସାୟ ଆଉ ଚଳିଲା ନାହିଁ । ସେମାନେ ବି ସେଲୁନ ଖୋଲିବାକୁ

ବାଧ ହେଲେ । ଯେଉଁମାନେ କ୍ୟାବିନ ପକାଇ ସେଲୁନ୍ ଖୋଲି ପାରୁନଥିଲେ ସେମାନେ ଗୋଟିଏ କାଠ ତିଆରି ହାତ ବାକ୍ସରେ ସେମାନଙ୍କ କ୍ଷୌର-ସରଞ୍ଜାମ ରଖି ବଡ଼ ପୋଖରୀହୁଡ଼ାର କୌଣସି ଗଛମୂଳେ ବସୁଥିଲେ । ସାମ୍ନାରେ ଯୋଡ଼ିଏ ଇଟା ଥୋଇ ତା ଉପରେ ଗରାଖକୁ ବସାଇ ସେମାନେ ଖିଅର କରୁଥିଲେ । ସାଧାରଣତଃ ମୂଲିଆ ଶ୍ରେଣୀର ଲୋକ କିମ୍ୱା ରିକ୍ସାବାଲା ସେମାନଙ୍କ ପାଖରେ ଖିଅର ହେଉଥିଲେ । ଗରାଖମାନଙ୍କୁ ଇଟାରେ ବସାଇ ଖିଅର କରାଯାଉ ଥିବାରୁ ସେହି ଭଣ୍ଡାରିମାନଙ୍କୁ ପରିହାସରେ କୁହାଯାଉଥିଲା ଇଟାଲିଆନ୍ ସେଲୁନ୍ ।

ବାରିପଦା ସହରରେ ମୁସଲମାନ ମାନଙ୍କ ସଂଖ୍ୟା ଅତି ଅଳ୍ପ ଥିଲା । ଏଠାକାର ଅଧିକାଂଶ ମୁସଲମାନ ବାସିନ୍ଦା ଦରଜୀ କାମରେ ନିୟୋଜିତ ଥିଲେ । ଅଳ୍ପ କେତେଜଣ ଛୋଟ ମୋଟ ଚାକିରି କରୁଥିଲେ । ଜଣେ ଦୁଇଜଣ ମୋଟର ମରାମତି ଗ୍ୟାରେଜ କିମ୍ୱା ମାଛ ମାଂସ ବ୍ୟବସାୟ କରୁଥିଲେ । ଆବାସ ଖଲିଫା ଥିଲେ ମୁସଲମାନମାନଙ୍କ ନେତା । ଗୁଡୁରି ବଜାରରେ ବେଶ ବଡ଼ ଦରଜୀ ଦୋକାନ ଥିଲା ତାଙ୍କର । ଗୁଡୁରି ବଜାରରେ ଆଉ ଜଣେ ବଡ଼ ଦରଜୀ ଥିଲେ, ତାଙ୍କ ନାମ ଥିଲା ବାଲେଶ୍ୱର ଖଲିଫା । ବାଲେଶ୍ୱରର ଲୋକ ସେ । ତେଣୁ ତାଙ୍କର ଏପରି ନାମକରଣ ହୋଇଥିଲା । ସେ ହଜ୍ କରିଥିଲେ ବୋଲି ଲୋକେ ତାଙ୍କୁ ହାଜୀ ସାହେବ ବୋଲି ମଧ ଡାକୁଥିଲେ । ଭାରି ନିର୍ଲୋଭ ଓ ସଚ୍ଚୋଟ ମଣିଷ ଥିଲେ ହାଜି ସାହେବ । କୌଣସି ଗରାଖର ଗିରାଏ କପଡ଼ା ବି ସେ ରଖୁନଥିଲେ । ସବୁ ବଳକା କନା ଫେରାଇ ଦେଉଥିଲେ । ଥରେ ମୋ ବାପା ଗୋଟିଏ ମୂଲ୍ୟବାନ ପଶମ କନାର ପଞ୍ଜାବି କରିବା ପାଇଁ ତାଙ୍କ ଦୋକାନରେ ମାପ ଦେଇଥିଲେ । କନାଟା ପ୍ରୟୋଜନ ଠାରୁ ଅଧିକ ଥିଲା । ହାଜୀ ସାହେବ ସବୁ କନା ବିନିଯୋଗ କରି ବାପାଙ୍କ ପଞ୍ଜାବି ତିଆରି କରିଦେଇଥିଲେ । ପଞ୍ଜାବିଟା ବାପାଙ୍କ ମାପଠାରୁ ଏତେ ବଡ଼ ହୋଇଥିଲା ଯେ ସେ ତାହା ବ୍ୟବହାର କରି ପାରିନଥିଲେ । ମୋ ବାପାଙ୍କ ଉଚ୍ଚତା ଥିଲା ପାଞ୍ଚଫୁଟ ଚାରିଇଞ୍ଚି । ତାଙ୍କ ପାଇଁ ତିଆରି ହୋଇଥିବା ପଞ୍ଜାବିଟା ମୋ ବଡ଼ଭାଇ ଯାହାର ଉଚ୍ଚତା ଛ'ଫୁଟରୁ ବେଶିଥିଲା ସିଏ ବଡ଼ ହେବାପରେ ବ୍ୟବହାର କରିଥିଲା । ବାରିପଦାରେ ମୁସଲମାନ ମାନଙ୍କ ସଂଖ୍ୟା ଅଳ୍ପ ହେଲେ ମଧ ସେମାନଙ୍କ ଉପାସନା ପାଇଁ ସ୍ୱତନ୍ତ୍ର ମସ୍‌ଜିଦ୍ ଥିଲା । ବାରିପଦାର ହିନ୍ଦୁ ମୁସଲମାନ ମାନଙ୍କ ଭିତରେ ସବୁଦିନେ ସଦ୍‌ଭାବ ଓ

ଉତ୍ତମ ସମ୍ପର୍କ ରହିଥିଲା । ଦେଶ ବିଭାଜନ ପୂର୍ବରୁ ଯେତେବେଳେ ଦେଶର ବିଭିନ୍ନ ସ୍ଥାନରେ ହିନ୍ଦୁ ମୁସଲମାନ ମାନଙ୍କ ଭିତରେ ପ୍ରଳୟଙ୍କରୀ ଦଙ୍ଗା ଲାଗିଥିଲା ସେତେବେଳେ ବାରିପଦା ସହର ସମ୍ପୂର୍ଣ୍ଣ ଶାନ୍ତ ଥିଲା । ସଂଖ୍ୟାନ୍ୟୁନ ମୁସଲମାନମାନେ ନିର୍ଭୟରେ ବାରିପଦାରେ ରହି ହିନ୍ଦୁମାନଙ୍କ ସହିତ ଭାଇ ଭାଇ ଭାବେ ଚଳୁଥିଲେ । ବାରିପଦାରେ ଯେଉଁସବୁ ପୂଜା ପାର୍ବଣ ହେଉଥିଲା ସେଥିପାଇଁ ମୂର୍ତ୍ତି ଗଢୁଥିଲେ ମଇତାପ ବୋଲି ଜଣେ ମୁସଲମାନ ଯୁବକ । ପୂର୍ବେ କଲିକତାର କୁମାରଟୋଲିରୁ ପାଲବାବୁ ବୋଲି ଜଣେ ମୂର୍ତ୍ତି -ଶିଳ୍ପୀ ଆସି ବାରିପଦାରେ ଦୂର୍ଗାମୂର୍ତ୍ତି ଗଢୁଥିଲେ । ମଇତାପ ମୂର୍ତ୍ତି ଗଢ଼ିବା ପାଇଁ ଜନ୍ମଗତ କଳାର ଅଧିକାର ଥିଲେ ଓ ଆମ ସ୍କୁଲର ଗଣେଶ ସରସ୍ୱତୀ ପୂଜା ଉପଲକ୍ଷେ ମୂର୍ତ୍ତି ଗଢୁଥିଲେ । ସେ ପାଲବାବୁଙ୍କ ସହକାରୀ ଭାବେ କାମ କରି ଦୂର୍ଗାମୂର୍ତ୍ତି ଗଠନର କଳା କୌଶଳ ଆୟତ୍ତ କରିଥିଲେ । ପରେ ବାରିପଦାର ସବୁ ଦୂର୍ଗା ଜଗଦ୍ଧାତ୍ରୀ ବା କାଳୀମୂର୍ତ୍ତି ମଇତାପ ଗଠନ କରୁଥିଲେ । ମଇତାପ ମଧ୍ଯ ବାରିପଦା ଫୁଟବଲ ଦଳର ଗୋଲକିପର ଥିଲେ । ଏହି ମିଷ୍ଟଭାଷୀ ଯୁବକ ଜାତି ଧର୍ମ ନିର୍ବିଶେଷରେ ବାରିପଦାର ସବୁ ଅଧିବାସୀଙ୍କ ପ୍ରିୟପାତ୍ର ଥିଲେ ।

ମୁସଲମାନମାନଙ୍କ ପରି ଖ୍ରୀଷ୍ଟଧର୍ମାବଲମ୍ବୀମାନଙ୍କ ସଂଖ୍ୟା ମଧ୍ଯ ବାରିପଦାରେ ସୀମିତ ଥିଲା । ଅଳ୍ପ କେତେଜଣ ଖ୍ରୀଷ୍ଟିଆନ ଅଧିବାସୀଙ୍କ ପାଇଁ ବାରିପଦା କୋର୍ଟ ପରିସର ସମ୍ମୁଖରେ ଗୋଟିଏ ସୁନ୍ଦର ପ୍ରୋଟେଷ୍ଟାଣ୍ଟ ଗୀର୍ଜା ଘର ଥିଲା । ଏହି ଗୀର୍ଜାର ପାଦ୍ରୀ ଥିଲେ ମିଷ୍ଟାର ଓ ଲେହି ବୋଲି ଜଣେ ଅଷ୍ଟ୍ରେଲିଆନ୍ ନିବାସୀ ଶ୍ୱେତାଙ୍ଗ ଧର୍ମଯାଜକ । ତାଙ୍କର ଗୋଟିଏ ହାତ କହୁଣୀ ଉପରୁ କଟା ଯାଇଥିଲା । ଲୋକେ ତାଙ୍କୁ ହାତକଟା ସାହେବ ବୋଲି କହୁଥିଲେ । ଗୋଟିଏ ହାତରେ ପାଦ୍ରୀ ଲେହି ସାହେବ ବହୁତ କାମ କରିପାରୁଥିଲେ । ସେ ତାଙ୍କ ଫୋର୍ଡ ମୋଟରକାର୍‌ର ବଡ଼ି ନିଜ ହାତରେ ତିଆରି କରିଥିଲେ । ଏହା ନୌକା ଆକାରର ଥିଲା । ଏହି ମିଶ୍‌ନାରୀ ତରଫରୁ ବାରିପଦାର ଗୋଟିଏ କୁଷ୍ଠାଶ୍ରମ ସ୍ଥାପିତ ହୋଇଥିଲା । ଷ୍ଟେଟ-ସରକାର କୁଷ୍ଠାଶ୍ରମ ପାଇଁ ଜଣେ ଡାକ୍ତର ନିଯୁକ୍ତ କରିଥିଲେ କିନ୍ତୁ କୁଷ୍ଠାଶ୍ରମର ପରିଚାଳନା ମିଶନାରୀ ହାତରେ ଥିଲା । ପାଦ୍ରୀ ଲେହି ସାହେବଙ୍କ ପତ୍ନୀ ମିସେସ ଲେହି ଜଣେ ସ୍ନେହୀ ମହିଳା ଥିଲେ । ସେ ଭଲଭାବେ ଓଡ଼ିଆ କହି ପାରୁଥିଲେ ଓ ବାରିପଦାର ଓଡ଼ିଆ ଗୃହିଣୀମାନଙ୍କ ସହିତ ସ୍ୱଚ୍ଛନ୍ଦରେ ମିଳାମିଶା କରୁଥିଲେ ।

ବାରିପଦାଠାରୁ ଅଳ୍ପ ଦୂରରେ ବାଲେଶ୍ୱର ରାସ୍ତାରେ କୃଷ୍ଣଚନ୍ଦ୍ରପୁର ଠାରେ ଗୋଟିଏ ବଡ଼ କ୍ୟାଥଲିକ ଗୀର୍ଜା ଥିଲା । ମୟୂରଭଞ୍ଜ ରାଜ୍ୟରେ ପାଦ୍ରୀମାନେ ଆଦିବାସୀମାନଙ୍କୁ ପ୍ରଲୋଭିତ କରି ଧର୍ମାନ୍ତରୀତ କରିବା ଅଭିଯୋଗ ଶୁଣିବାକୁ ମିଳୁନଥିଲା । ବାରିପଦାର ଖ୍ରୀଷ୍ଟିଆନ ଓ ହିନ୍ଦୁ ଅଧିବାସୀମାନଙ୍କ ଭିତରେ ସଦ୍‌ଭାବ ଥିଲା । ବଡ଼ଦିନ ନୂଆବର୍ଷ ପ୍ରଭୃତି ଖ୍ରୀଷ୍ଟିୟ ପର୍ବ ଉପଲକ୍ଷେ ଗୀର୍ଜାରେ ସାଜସଜ୍ଜା ଓ ବିଶେଷ ପ୍ରାର୍ଥନା ହେଉଥିଲା । ସେ ସମୟରେ ଅଣ ଖ୍ରୀଷ୍ଟିୟାନ ପିଲାମାନେ ଗୀର୍ଜାକୁ ଗଲେ ମିସେସ ଲେହି ଜରିଗୁଡ଼ିଆ ପ୍ୟାକେଟରେ କେକ୍ ଆଉ ଚକୋଲେଟ ଇତ୍ୟାଦି ସେମାନଙ୍କୁ ଦେଉଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ବାରିପଦା ଗୋଟିଏ ଅତି ଶସ୍ତା ସହର ଥିଲା । ସେତେବେଳେ ଅତି ଉତ୍କୃଷ୍ଟ ସରୁ ସୁନାଖାଡ଼ି ଚାଉଳ ମିଳୁଥିଲା ଟଙ୍କାରେ ଷୋହଳ ସେର । ଟଙ୍କାରେ ଚାରିସେର ମିଳୁଥିଲା ଭଜା ମୁଗ ଡାଲି । ବାରିପଦାର ଏଳ- ସିଝା ଉସୁନା ସୁନାଖାଡ଼ି ଚାଉଳର କଇଁଫୁଲ ପରି ଧୋବ ଫର ଫର ଭାତ ଆଉ ସୁନେଲି ରଙ୍ଗର ମୁଗ ଡାଲିର ତୁଳନା ନଥିଲା । ସେହିପରି ପନିପରିବା, ଫଳମୂଳ, ମାଛ ମାଂସ, ଦୁଧ, ଦହି ସବୁ ଥିଲା ସୁଲଭ । ଜୀବିକା ସନ୍ଧାନରେ ଥରେ ଜଣେ ବରିପଦା ଗଲେ ଆଉ ସେ ଫେରୁନଥିଲା । ସେହିଠାରେ ସ୍ଥାୟୀ ହୋଇ ରହିଯାଉଥିଲା । ତାପରେ ଆସିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ । ବିଶ୍ୱଯୁଦ୍ଧରେ ଅକ୍ଷ ଶକ୍ତି ସପକ୍ଷରେ ଜାପାନ ଯୋଗଦେବା ପରେ ଭାରତବର୍ଷ ବିଶ୍ୱଯୁଦ୍ଧ ବଳୟ ଭିତରକୁ ଟାଣି ହୋଇଯାଇଥିଲା । ଅପ୍ରତିରୋଧୀ ଜାପାନୀ ଆକ୍ରମଣ ଆଗରେ ବର୍ମା ସମେତ ସମଗ୍ର ଦକ୍ଷିଣ ପୂର୍ବ ଏସିଆର ପତନ ହୋଇଯାଇ ଭାରତବର୍ଷ ହୋଇଯାଇଥିଲା ଜାପାନୀ ଆକ୍ରମଣର ପରବର୍ତ୍ତୀ ଲକ୍ଷ୍ୟସ୍ଥଳୀ । ଜାପାନ ଆକ୍ରମଣକୁ ପ୍ରତିରୋଧ କରିବା ପାଇଁ ପୂର୍ବ ଭାରତରେ ଅନେକଗୁଡ଼ିଏ ବ୍ରିଟିଶ ଓ ଆମେରିକାନ ସ୍ଥଳବାହିନୀ ଓ ବିମାନ ବାହିନୀ ଘାଟି ସ୍ଥାପିତ ହୋଇଥିଲା । ମୟୂରଭଞ୍ଜର ବାଙ୍ଗିରିପୋଷି ଘାଟୀ ରାସ୍ତା ନିକଟରେ ଘନ ଅରଣ୍ୟ ଭିତରେ ଗୋଟିଏ ବ୍ରିଟିଶ ଓ ଆମେରିକାନ ସ୍ଥଳ ବାହିନୀର ବିଶାଳ ସେନା-ଛାଉଣୀ ପଡ଼ିଥିଲା । ଏହି ଛାଉଣୀକୁ ସବୁବେଳେ ସୈନ୍ୟ ମାନଙ୍କର ଯିବା ଆସିବା ଲାଗି ରହିଥିଲା । ସୈନ୍ୟମାନେ ଆସୁଥିଲେ ବିରାଟ ବିରାଟ କନ୍‌ଭୟମାନଙ୍କରେ । ଧାଡ଼ିହୋଇ ଚାଲିଥିବା ଶହେ ଦେଢ଼ଶ ଟ୍ରୁପ୍ କେରିୟାର୍‌ରେ ସେମାନେ ଆସୁଥିଲେ । ଜୀପ୍‌ରେ

ଯାଉଥିଲେ ଅଫିସରମାନେ । କନ୍‌ଭୟ ଆଗରେ ପଛରେ ମୋଟର-ସାଇକଲରେ ଯାଉଥିଲେ ମିଲିଟାରୀ ପୋଲିସ୍ । ଆମେରିକାନ୍ ସେନାବାହିନୀରେ ଶ୍ୱେତାଙ୍ଗ ଓ କୃଷ୍ଣାଙ୍ଗ ଉଭୟ ସେନା ରହୁଥିଲେ । ବାରିପଦା ସହର ଭିତରେ ମିଲିଟାରୀ କନ୍‌ଭୟ ଯିବାବେଳେ ଆମେ ରାସ୍ତାକଡ଼ରେ ଧାଡ଼ି ହୋଇ ଛିଡ଼ାହୋଇ ଗାଡ଼ି ସଂଖ୍ୟା ଗଣୁଥିଲୁ । ଡାହାଣ ହାତର ବିଶି ଓ ମଝି ଆଙ୍ଗୁଳିକୁ ଫାଙ୍କ କରି ଇଂରାଜୀ 'ଭି' ଅକ୍ଷର ପରି କରି ଟେକି ମିଲିଟାରୀମାନଙ୍କୁ ଦେଖାଉଥିଲୁ । ସେମାନେ ମଧ୍ୟ ପ୍ରତ୍ୟୁତ୍ତରରେ ଭି ଫର ଭିକ୍ଟରି ସଙ୍କେତ ଦେଉଥିଲେ । ବେଳେ ବେଳେ ଆମେରିକାନ ସୋଲଜରମାନେ ପ୍ରୀତି ଓ ବନ୍ଧୁତାର ନିର୍ଦ୍ଦେଶନ ସ୍ୱରୂପ ସେମାନଙ୍କ ହାଭ୍ୟାରସ୍ୟାକ୍‌ରୁ କାଢ଼ି ଚକୋଲେଟ ଓ ବିସ୍କୁଟ ପ୍ୟାକେଟ ପିଲାଙ୍କ ଉପରକୁ ଫୋପାଡୁ ଥିଲେ । ମୟୂରଭଞ୍ଜ ଷ୍ଟେଟର ଉତ୍ତର ସୀମାନ୍ତରେ ଅମର୍ଦ୍ଦାରୋଡ଼ ଠାରେ ଥିଲା ମାର୍କିନ ବିମାନ ବାହିନୀର ଗୋଟିଏ ବିଶାଳ ଘାଟି । ସେଠାରୁ ସମଗ୍ର ପୂର୍ବ ରଣାଙ୍ଗନ ନିୟନ୍ତ୍ରିତ ହେଉଥିଲା । ଶହ ଶହ ସଂଖ୍ୟାରେ ବୋମାରୁ ଓ ଲଢୁଆ ବିମାନ ଥିଲା ସେହି ଘାଟିରେ । ଝାଙ୍କ ଝାଙ୍କ ହୋଇ ସେଠାରୁ ସେହି ବିମାନ ଉଠି ବାରିପଦା ଆକାଶରେ ଉଡ଼ିଯାଉଥିଲେ । ପ୍ରତିଦିନ କେତେଗୁଡ଼ିଏ ବିମାନ ଆସି ବାରିପଦା ଆକାଶରେ ଉଡ଼ାଣ ଅଭ୍ୟାସ କରୁଥିଲେ । ବାରିପଦା ନିକଟରେ ରାଜାବସା ବିମାନ ପଡ଼ିଆ ଥିଲା । ଦରକାର ବେଳେ ସେଠାରେ ବିମାନ ଅବତରଣ କରିବାର ସୁବିଧା ଥିଲା । ସେଥିପାଇଁ ପ୍ରଶିକ୍ଷଣ ପାଇଁ ଅମର୍ଦ୍ଦାରୋଡ଼ ସାମରିକ ଘାଟିର ବିମାନଗୁଡ଼ିକ ବାରିପଦା ଚାଲି ଆସୁଥିଲେ ।

ବାରିପଦା ସହରରେ ବି ଯୁଦ୍ଧର ବାତାବରଣ ଦେଖା ଦେଇଥିଲା । ସ୍ୱେଚ୍ଛାସେବୀମାନଙ୍କୁ ନେଇ ଏ.ଆର.ପି ବାହିନୀ ଗଠିତ ହୋଇଥିଲା । ବିମାନ ଆକ୍ରମଣ ବେଳେ କିପରି ଧନ ଜୀବନର ସୁରକ୍ଷା କରାଯାଇପାରିବ ସେହି ଶିକ୍ଷା ସେମାନଙ୍କୁ ଦିଆଯାଉଥିଲା । ପଡ଼ିଆ କିମ୍ବା ଖୋଲା ଜାଗାମାନଙ୍କରେ ଇଂରାଜୀ ଡବ୍ଲ୍ୟୁ କିମ୍ବା ଜେଡ୍ ଆକୃତିର 'ସେଲଟାର ଟ୍ରେଞ୍ଚ' ଖାତମାନ ଖୋଳା ହୋଇଥିଲା । ରାତିରେ ରାସ୍ତା ଆଲୁଅ ଲିଭାଇ ଦିଆଯାଇ ବ୍ଲାକ୍‌ଆଉଟ କରାଯାଉଥିଲା । ସାଇରେନ୍ ବାଜିବା ମାତ୍ରେ ଘରର ସବୁ ଆଲୁଅ ଲିଭାଇ ଦେବାପାଇଁ ସମସ୍ତଙ୍କୁ ସତର୍କ କରି ଦିଆଯାଇଥିଲା । ମଝିରେ ମଝିରେ ଅଭ୍ୟାସ କରିବା ପାଇଁ ସାଇରେନ ବାଜୁଥିଲା । ସମସ୍ତେ ଘରର ଆଲୁଅ ଲିଭାଇ ଦେଇ ବିମାନ ଆକ୍ରମଣର ପ୍ରତୀକ୍ଷା କରୁଥିଲେ । କେତେ ସମୟ ପରେ 'ଅଲ୍

କ୍ଲିୟାର' ସାଇରେନ ବାଜିଲେ ପୁଣି ଆଲୁଅ ଜାଳୁଥିଲେ । ଯୁଦ୍ଧ ଶେଷହୋଇଯିବା ପରେ, ସେହି ସାଇରେନ୍‌ଟା ସହରବାସୀଙ୍କୁ ସମୟ ସଙ୍କେତ ଦେବା ପାଇଁ ଟେଲିଫୋନ୍ ଏକ୍ସଚେଞ୍ଜରେ, ରଖି ଦିଆଯାଇଥିଲା । ପ୍ରତିଦିନ ଠିକ୍ ସକାଳ ଆଠଟା ଓ ରାତି ନଟାବେଳେ ସାଇରେନ୍ ବାଜି ସମୟ ଘୋଷଣା କରୁଥିଲା । ଏହି ସମୟରେ ପୋଲିସ ଲୋକମାନଙ୍କ ପାଖରୁ ସାଇକେଲ ଗୁଡ଼ିକ ଜବତ କରିନେଇ ଥାନାରେ ଜମା କରିଦେଇଥିଲେ । ଆକ୍ରମଣକାରୀ ଜାପାନୀ ମାନଙ୍କୁ ଯେପରି ସାଇକେଲ ମିଳି ନପାରିବ ସେଥିପାଇଁ ଏହି ହାସ୍ୟକର ପଦକ୍ଷେପ ନିଆଯାଇଥିଲା ।

ଯୁଦ୍ଧ ବଜାରରେ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥର ଅଭାବ ଦେଖା ଦେବାକୁ ଲାଗିଲା । ଯୁଦ୍ଧଯୋଗୁଁ ବିଦେଶରୁ କୌଣସି ଜିନିଷ ଆମଦାନୀ କରାଯାଇପାରୁନଥିଲା । ଦେଶରେ ଉତ୍ପାଦିତ ସବୁଜିନିଷ ସାମରିକ ବାହିନୀର ବ୍ୟବହାର ପାଇଁ ଯୋଗାଇ ଦିଆଯାଉଥିଲା । ବଜାରରୁ ଚା, ଚିନି, କିରାସିନି, ପେଟ୍ରୋଲ, ଦିଆସିଲ ସମେତ ଅନେକ ଜିନିଷ ଅଦୃଶ୍ୟ ହୋଇଯାଇଥିଲା । ତାପରେ ଆରମ୍ଭ ହେଲା କଣ୍ଟ୍ରୋଲ ଯୁଗ; ଯାହା ଏଯାଏ ବଳବତ୍ତର ହୋଇରହିଛି । ସପ୍ଲାଇ ଅଫିସରୁ ପରମିଟ ଯୋଗାଡ଼ କରି ଲମ୍ୱାଧାଡ଼ିରେ ଛିଡାହୋଇ ପଡ଼ିକାର୍ଡ଼ ଦେଖାଇ କଣ୍ଟ୍ରୋଲ ଦୋକାନରୁ ଚିନି, କିରୋସିନି, ଦିଆସିଲି, ଚାହା ପ୍ରଭୃତି ଜିନିଷ ସଂଗ୍ରହ କରିବାକୁ ପଡୁଥିଲା । ଲୁଗାପଟାର ବି ଅଭାବ ଦେଖା ଦେଇଥିଲା । ତାପରେ କଣ୍ଟ୍ରୋଲ ଧୋତି ଶାଢ଼ୀ ଆଉ ମାର୍କିନ କପଡ଼ା ବଜାରକୁ ଆସିଲା । କଣ୍ଟ୍ରୋଲ ଧୋତି ଓ ଶାଢ଼ୀର ଧଡ଼ି ଉପରେ ଗୋଟିଏ ନାଲି ସୂତାର ଗାର ଟଣାଯାଇ ତାହା କଣ୍ଟ୍ରୋଲ କପଡ଼ା ବୋଲି ଚିହ୍ନିତ କରି ଦିଆଯାଉଥିଲା । ସେହି ସମୟରେ ଆରମ୍ଭ ହେଲା କଳାବଜାର । ଲାଞ୍ଚ ଓ ଦୁର୍ନିତୀର ମଧ୍ୟ ପ୍ରସାର ହେଲା ସେହି ସମୟରେ । ଲୋକମାନେ ତାକୁ କିଳା-ପୋତା କହୁଥିଲେ । ବିଶ୍ୱଯୁଦ୍ଧର ଏହି ଅବଦାନଗୁଡ଼ିକ ଆମ ଚରିତ୍ରରେ ସାମିଲ ହୋଇ ଜୀବନର ଅଙ୍ଗ ହୋଇଗଲା । ବିଶ୍ୱଯୁଦ୍ଧ ସାଧାରଣ ମଣିଷଙ୍କ ଅର୍ଥନୈତିକ ମେରୁଦଣ୍ଡକୁ ଦୋହଲାଇ ଦେଇଥିଲା । କିନ୍ତୁ ମିଲିଟାରୀ କଣ୍ଟ୍ରାକ୍ଟର କିମ୍ୱା ସପ୍ଲାଇୟର ହୋଇ ଅଳ୍ପ କେତେଜଣ ଲୋକ ହଠାତ୍ ବଡ଼ଲୋକ ହୋଇଯାଇଥିଲେ ।

ବିଶ୍ୱଯୁଦ୍ଧ ଚାଲିଥିବା ବେଳେ, ୧୯୪୩ ମସିହାରେ ପଡ଼ୋଶୀ ବଙ୍ଗ ପ୍ରଦେଶରେ ଦୁର୍ଭିକ୍ଷ ପଡ଼ିଥିଲା । ଯୁଦ୍ଧ ଓ ପ୍ରତିରକ୍ଷା ପାଇଁ ବ୍ୟସ୍ତ ବ୍ରିଟିଶ

ସରକାର ଦୁର୍ଭିକ୍ଷ ପ୍ରତିକାର ପାଇଁ ଉପଯୁକ୍ତ ଧ୍ୟାନ ଦେଇନଥିଲେ । ଅନାହାରରେ ବହୁଲୋକଙ୍କର ମୃତ୍ୟୁହୋଇ ଯାଇଥିଲା । ସେହି ଦୁର୍ଭିକ୍ଷର ପ୍ରଭାବ ମୟୂରଭଞ୍ଜ ଷ୍ଟେଟ ଉପରେ ମଧ୍ୟ ପଡ଼ିଥିଲା । ବଜାରରୁ ଚାଉଳ ଦୁଷ୍ପ୍ରାପ୍ୟ ହୋଇଯାଇଥିଲା । ମୋଟା ଲାଭ ଆଶାରେ ବେପାରୀମାନେ ସବୁ ଚାଉଳ ବଙ୍ଗ ପ୍ରଦେଶକୁ ଚୋରା ଚାଲାଣ କରିଦେଉଥିଲେ । ମୟୂରଭଞ୍ଜ ରାଜ ସରକାର ଭାରତ ସରକାରଙ୍କ ସହାୟତାରେ ବର୍ମା ଚାଉଳ ଆମଦାନୀ କରି କଣ୍ଟ୍ରୋଲ ବ୍ୟବସ୍ଥା ଜରିଆରେ ଖାଉଟିଙ୍କୁ ଯୋଗାଇ ଦେଉଥିଲେ । ସେହି ଚାଉଳ ଥିଲା ଅଖାଦ୍ୟ-ନାଲି ମୋଟା ଆଉ ଦୁର୍ଗନ୍ଧ ଯୁକ୍ତ । ତଥାପି ଅଳ୍ପ କେତେଜଣ ଭାଗ୍ୟବାନ ଲୋକ ସେହି ଚାଉଳ ଟଙ୍କାରେ ଚାରିସେର ଦରରେ କିଣିବାକୁ ପାଉଥିଲେ । ଖୋଲାବଜାରରେ ମୋଟା ଚାଉଳ ଟଙ୍କାରେ ଦୁଇସେର କରି ମିଳୁଥିଲା । ବାରିପଦାର ଅଧିକାଂଶ ଦରିଦ୍ର ଶ୍ରେଣୀର ଲୋକ ପ୍ରତିଦିନ ଭାତ ଖାଇବା ପାଇଁ ପାଉନଥିଲେ । ସେମାନେ କଣ୍ଟ୍ରୋଲ ଅଟା କିଣି ରୁଟି କରି ଖାଉଥିଲେ କିମ୍ବା ଅନ୍ୟ କିଛି । ସେ ସମୟରେ ମୋର ଜଣେ ସ୍କୁଲ ସାଙ୍ଗ ମୋତେ ପଚାରିଲା, 'ତୁମ ଘରେ ପ୍ରତିଦିନ ଭାତ ରନ୍ଧା ହୁଏ ?' ମୁଁ କହିଲି 'ହଁ- ତୁମ ଘରେ କଣ ପ୍ରତିଦିନ ଭାତ ରନ୍ଧା ଯାଏ ନାହିଁ ?' ସେ କହିଲା- 'ନା ଆମେ ଅଧିକାଂଶ ଦିନ କୁଣ୍ଡାପିଠା ଖାଉ ।' କୁଣ୍ଡା ପିଠା କଣ ବୋଲି ପଚାରିବାରୁ ସେ କହିଲା, 'ମୋ ମା ଚୂଡ଼ା କୁଣ୍ଡାରୁ ଚୂଡ଼ା କଣି ସବୁ ପାଛୁଡ଼ି ତାକୁ ମହୁଲ ସାଙ୍ଗରେ ଟିକିଏ ଗୁଡ଼ ପକାଇ ଚକଟି ପୋଡ଼ ପିଠା କରିଦିଏ । ଆମେ ସବୁ ଭାଇ ଭଉଣୀ ସେଇ ପୋଡ଼ ପିଠାରୁ ଖଣ୍ଡିଏ ଖଣ୍ଡିଏ ଖାଇ ସ୍କୁଲ ଆସୁ ।' ଅଳ୍ପ ଗଣ୍ଡିଏ ଭାତରେ ପାଣି ପୂରାଇ ତାକୁ ପଖାଳ କରି ତା ସହିତ ବେଶି କରି ସଜନା କିମ୍ବା ଅନାବନା ଶାଗ ଖରଡ଼ା ଦେଇ ଗରିବ ଲୋକମାନେ କୌଣସି ପ୍ରକାରେ ଜୀବନ ବଞ୍ଚାଇ ଥିଲେ । ସେ ସମୟରେ ବାରପଦାରେ ପ୍ରବଳ ଭାବେ ଭିକାରି ସମସ୍ୟା ଦେଖା ଦେଇଥିଲା । ବଙ୍ଗ ପ୍ରଦେଶର ମେଦିନୀପୁର ଜିଲ୍ଲାରୁ ଅସଂଖ୍ୟ ଦୁର୍ଭିକ୍ଷ ପ୍ରପିଡ଼ୀତ ଲୋକ ବାରିପଦା ପଳାଇ ଆସି ଭିକ ମାଗିବା ଆରମ୍ଭ କରିଦେଇଥିଲେ । ସେମାନେ ଚାଉଳ କିମ୍ବା ଭାତ ମାଗୁ ନଥିଲେ । ସେମାନେ ମାଗୁଥିଲେ ପେଜ, ବଙ୍ଗଳାରେ କହୁଥିଲେ, 'ମା ଏକଟୁ ଫ୍ୟାନ୍ ଦାଓ ।' ସଙ୍ଗତିସମ୍ପନ୍ନ ଲୋକ, ଯେଉଁମାନଙ୍କ ଘରେ ପ୍ରତିଦିନ ଭାତ ରନ୍ଧା ଯାଉଥିଲା ସେମାନେ ଭାତରୁ ପେଜ ଗାଳିବା ପରେ ତାକୁ ଗୋରୁ ହାଣ୍ଡି କିମ୍ବା ନଳାରେ ଢାଳି ନଦେଇ ସେହି ବୁଭୁକ୍ଷୁ ମାନଙ୍କ ପାଇଁ ଅଲଗା ଗୋଟିଏ ପାତ୍ରରେ ସାଇତି ରଖୁଥିଲେ ।

ନୂଆ ଫସଲ ଅମଳ ହେବା ପରେ ଏହି ଦୁର୍ଭିକ୍ଷ ଅବସ୍ଥାର ଅବସାନ ହୋଇଥିଲା । କିନ୍ତୁ ଦୁର୍ଭିକ୍ଷ ତାର କରାଳ ଦନ୍ତାଘାତର ଚିହ୍ନ ଛାଡ଼ିଦେଇ ଯାଇଥିଲା । ବାରିପଦା ରାସ୍ତାରେ ବାପ ମା ମରିଯାଇଥିବା କିମ୍ବା ସେମାନଙ୍କ ଦ୍ୱାରା ପରିତ୍ୟକ୍ତ ଅନେକ ଅନାଥ ପିଲା ବୁଲୁଥିବାର ଦେଖାଯାଇଥିଲା । ସେମାନେ ମାଗି ଯାଚି ଖାଇ ଟିକିଏ ବଡ଼ ହେବା ପରେ ଜଳଖିଆ ଦୋକାନ ଓ ହୋଟେଲମାନଙ୍କରେ ଅଇଁଠା ବାସନ ମାଜି କିମ୍ବା ଅନ୍ୟ କାମ ଦାମ କରି ଚଳୁଥିଲେ । ଲୋକେ ସେମାନଙ୍କୁ କହୁଥିଲେ 'ସରକାରୀ ପିଲା ।' ଏଇ ପିଲାମାନେ ବଡ଼ ହେବାପରେ ମୂଲ ମଜୁରୀରେ ଲାଗୁଥିଲେ, ରିକ୍ସା ଚଳାଉଥିଲେ କିମ୍ବା ବିଡ଼ି ମୋଡୁଥିଲେ । ସେମାନଙ୍କ ଭିତରୁ କିଏ ବି ଚୋରି ଡକାୟତି କରି କ୍ରିମିନାଲ ପାଲଟି ଯାଉଥିଲେ । ଖୁବ୍ ଅଳ୍ପପିଲା ପରବର୍ତ୍ତୀ ଜୀବନରେ ନିଜକୁ ପ୍ରତିଷ୍ଠିତ କରିପାରୁଥିଲେ । ଯେଉଁ ଅଳ୍ପ କେତେଜଣ ପିଲା ସଡ଼କ ଛାପ ଜୀବନ ଆରମ୍ଭ କରି ପରେ ସାମାଜିକ ଜୀବନ ଯାପନ କରିପାରିଥିଲେ ସେମାନଙ୍କ ଭିତରୁ କାଙ୍ଗାଳି ଜଣେ । ପ୍ରେମଜୀ ଜଳଖିଆ ଦୋକାନର ସରକାରୀ ପିଲା କାଙ୍ଗାଳି ପରେ ସେହି ଦୋକାନର ସେଲସ୍‌ମ୍ୟାନ ହୋଇଥିଲା । ତାପରେ ସେ ବଜାର ପାଣିକଳ ପାଖରେ ନିଜେ ଗୋଟିଏ ଚା' ଦୋକାନ କଲା । ଚମତ୍କାର ଚା' ମିଳୁଥିଲା ତା ଦୋକାନରେ । ତାପରେ ସେ ଦୋକାନ ଛାଡ଼ିଦେଇ ଚେନାଚୁର ତିଆରି କରି ଚେନାଚୁର ବେପାର କଲା । ତାର ମସଲାଦାର ଚେନାଚୂରର ଭାରି କାଟିତି ଥିଲା ।

ମୟୂରଭଞ୍ଜ ଷ୍ଟେଟର ସ୍ୱାସ୍ଥ୍ୟ-ସେବା ଖୁବ୍ ଉନ୍ନତ ଥିଲା । ଜଣେ ଚିଫ୍ ମେଡ଼ିକାଲ ଅଫିସରଙ୍କ ତତ୍ତ୍ୱାବଧାନରେ ଏହା ପରିଚାଳିତ ହେଉଥିଲା । ବାରିପଦା ଠାରେ ଥିଲା ଗୋଟିଏ ମୁଖ୍ୟ ଡାକ୍ତରଖାନା । ଏହାଛଡ଼ା ସବୁ ସବ୍‌ଡ଼ିଭିଜନ ସଦର ମହକୁମା ଓ ଥାନା ମାନଙ୍କରେ ମଧ୍ୟ ସରକାରୀ ଡାକ୍ତରଖାନାମାନ ରହିଥିଲା । ବାରିପଦାର ଡାକ୍ତରଖାନାଟି ଭାରତ ସମ୍ରାଟ ପଞ୍ଚମ ଜର୍ଜଙ୍କ ନାମାନୁଯାୟୀ କିଂ ଜର୍ଜ ହସପିଟାଲ ଥିଲା ଓ ଏହାର ପ୍ରବେଶ ପଥରେ ପଞ୍ଚମ ଜର୍ଜଙ୍କର ଗୋଟିଏ ଆବକ୍ଷ ବ୍ରୋଞ୍ଜ ପ୍ରତିମୂର୍ତ୍ତି ରଖାଯାଇଥିଲା ।

ମୟୂରଭଞ୍ଜ ଷ୍ଟେଟର ମୁଖ୍ୟ ଚିକିତ୍ସକ ଥିଲେ ଡାକ୍ତର ଚନ୍ଦ୍ରମାଧବ ସିହ୍ନା । ସେ ଜଣେ ଉଚ୍ଚକୋଟିର ଭେଷଜ ବିଶାରଦ ଥିଲେ । ତାଙ୍କର ସହଯୋଗୀ ଭାବେ ବହୁ ପ୍ରଶିକ୍ଷିତ ଡାକ୍ତର କାମ କରୁଥିଲେ । ବାରିପଦା ଡାକ୍ତରଖାନାର

ଶଲ୍ୟ ଚିକିତ୍ସା ବିଶାରଦ ଚିକିତ୍ସକ ଥିଲେ ଡାକ୍ତର ମହେଶ୍ୱର ପତି । ଏକ୍ସରେ ଦାୟିତ୍ୱରେ ଥିବା ରେଡ଼ିଓଲୋଜିଷ୍ଟ ଥିଲେ ଡାକ୍ତର ମାଲାକାର, ପେଥୋଲୋଜିଷ୍ଟ ଥିଲେ ଡାକ୍ତର କ୍ଷୀରୋଦ ଚନ୍ଦ୍ର ପାଳ । ଲେଡ଼ି ଡାକ୍ତର ଥିଲେ ମିସେସ ସାନ୍ତରା । ଏମାନଙ୍କ ବ୍ୟତୀତ ପୃଥ୍ୱୀନାଥ ଦାସ, ସୁରେନ୍ଦ୍ର ଲାଲ ବୋଷ, ଦୁର୍ଗାପ୍ରସାଦ ଘୋଷାଲ, ବାଞ୍ଛାବଟ ବସା, ରମାନାଥ ସାହୁ ପ୍ରଭୃତି ଆହୁରି ବହୁ ଡାକ୍ତର ଥିଲେ । ବାରିପଦା ଡାକ୍ତରଖାନାରେ ମେଡ଼ିସିନ ଓ ସର୍ଜିକାଲ ୱାର୍ଡ଼ ବ୍ୟତୀତ ହଇଜା, ବସନ୍ତ, ଯକ୍ଷ୍ମାରୋଗ ପାଇଁ ସ୍ୱତନ୍ତ୍ର ୱାର୍ଡ଼ ଥିଲା । ସ୍ତ୍ରୀରୋଗ ଓ ପ୍ରସୂତୀ ବିଭାଗ ପାଇଁ ଗୋଟିଏ ଅତ୍ୟାଧୁନିକ ୱାର୍ଡ଼ ନିର୍ମିତ ହୋଇଥିଲା । ଏହାର ନାମ ଥିଲା ଜନାନା ହସ୍‌ପିଟାଲ । ବାରିପଦା ଡାକ୍ତରଖାନାର ବିଶେଷତ୍ୱ ଥିଲା ଏହାର ଏକ୍ସରେ ମେସିନ । ସେତେବେଳେ କଟକ ମେଡ଼ିକାଲ ସ୍କୁଲ (ପରେ କଲେଜ) ବ୍ୟତୀତ ଓଡ଼ିଶାର ଅନ୍ୟ କେଉଁ ଡାକ୍ତରଖାନାରେ ଏକ୍ସରେ ବ୍ୟବସ୍ଥା ନଥିଲା । ବାରିପଦା ଏକ୍ସରେ ମେସିନ୍‌ଟି ଜର୍ମାନୀ ନିର୍ମିତ ମୂଲ୍ୟବାନ ଯନ୍ତ୍ର ହୋଇଥିବାରୁ ଏଠାରେ ଫଟୋ ଉଠାଇବା ପାଇଁ ଭାରି ଭିଡ଼ ହେଉଥିଲା । ଏକ୍ସରେ ଫଟୋ ଉଠାଇବା ପାଇଁ ଭଦ୍ରକ ବାଲେଶ୍ୱର ମେଦିନୀପୁର ଜିଲ୍ଲାମାନଙ୍କରୁ ରୋଗୀ ଏଠାକୁ ଆସୁଥିଲେ ।

ସେ ସମୟରେ ପେଟେଣ୍ଟ ମେଡ଼ିସିନ୍, ଟ୍ୟାବଲେଟ, କ୍ୟାପ୍‌ସୁଲ ଇତ୍ୟାଦିର ଚାଲ୍ ନଥିଲା । ସବୁ ଔଷଧ ପାଇଁ ମିକ୍ସଚର ଦିଆଯାଉଥିଲା । ଡାକ୍ତର ରୋଗ ନିର୍ଣ୍ଣୟ କରି ପ୍ରେସକ୍ରିପସନରେ ମିକ୍ସଚର ତିଆରି କରିବା ପାଇଁ ବିଭିନ୍ନ ଭେଷଜ ଉପାଦାନ ଲେଖି ଦେଉଥିଲେ । କମ୍ପାଉଣ୍ଡର ସେହି ବ୍ୟବସ୍ଥା ପତ୍ର ଦେଖି ଔଷଧ ଉପାଦାନ ଗୁଡ଼ିକୁ ପାଣିରେ ମିଶାଇ ମିକ୍ସଚର କରୁଥିଲେ । ମିକ୍ସଚରକୁ ସ୍ୱାଦିଷ୍ଟ କରିବା ପାଇଁ ସେଥିରେ ସିରାପ୍ ମିଶାଯାଉଥିଲା । ତାପରେ କାଗଜ ପଟିରେ ଚିହ୍ନ କାଟି ତାକୁ ଶିଶି ଉପରେ ଅଠାଦେଇ ଚିଟାଇ ଦିଆଯାଉଥିଲା । ଗୋଟିଏ ଦାଗ ହେଉଚି ପାନେ ଔଷଧ । ତେଣୁ ଡାକ୍ତରଖାନା ମାନଙ୍କରେ କମ୍ପାଉଣ୍ଡର ଅପରିହାର୍ଯ୍ୟ ଥିଲେ । ଆଜିକାଲି ଡାକ୍ତରଖାନାରେ କମ୍ପାଉଣ୍ଡର ନାହାନ୍ତି । ତାଙ୍କ ବଦଳରେ ମେଡ଼ିକାଲ ଟେକ୍‌ନିସିଆନ ଅଛନ୍ତି ।

ରକ୍ତ, ମଳମୂତ୍ର ଇତ୍ୟାଦି ପରୀକ୍ଷା କରିବା ପାଇଁ ପରୀକ୍ଷାଗାର ଦାୟିତ୍ୱରେ ଥିବା ଡାକ୍ତର କ୍ଷୀରୋଦ ଚନ୍ଦ୍ର ପାଳ, ଜଣେ ସୁସାହିତ୍ୟିକ ଥିଲେ । ସେ ଅନୁପ୍ରାସ ଅଳଙ୍କାର ବ୍ୟବହାର କରି ଗଦ୍ୟରେ ଗୋଟିଏ ପୁସ୍ତକ ରଚନା କରିଥିଲେ । ସେହି ବହିଟିର ନାମ ଥିଲା କ ଚ ଟ ତ ପ । ବ୍ୟାକରଣ ଶାସ୍ତ୍ରରେ

ବୈଶିଷ୍ଟ୍ୟ ଲାଭ କରିଥିବା ଏହି ପାଞ୍ଚଟି ବର୍ଣ୍ଣର ଅନୁପ୍ରାସିକ ବ୍ୟବହାର କରି ଲେଖାଯାଇଥିବା ପାଞ୍ଚଟି ହାସ୍ୟରସ ସମ୍ବଳିତ ପ୍ରବନ୍ଧ ଏଥିରେ ସନ୍ନିବେଶିତ ହୋଇଥିଲା । କ୍ଷୀରୋଦ ବାବୁ ବେଳେ ବେଳେ ରହସ୍ୟ କରି କହୁଥିଲେ, ଭଗବାନ ମୋତେ ମା ସରସ୍ୱତୀଙ୍କ ସେବା କରିବା ପାଇଁ ସାମାନ୍ୟ ଟିକିଏ ଗୁଣ ଦେଇ ସଂସାରକୁ ପଠାଇଥିଲେ । ମୋ ଭାଗ୍ୟ ମୋତେ ନେଇ ଘୃଅ-ମୃତ ଘାଣ୍ଟିବାରେ ନିୟୋଜିତ କରିଦେଲା ।

ବାରିପଦା ଡାକ୍ତରଖାନାର ଅନ୍ୟତମ ଚିକିତ୍ସକ ସୁରେନ୍ଦ୍ର ଲାଲ ବୋଷ ଓରଫ ସୁରେନ ବାବୁ ଡାକ୍ତର ଗରିବ ଲୋକଙ୍କ ଧନ୍ୱନ୍ତରୀ ଥିଲେ । ବାରିପଦା ସହରର ଆଦିବାସୀ ହରିଜନ ପ୍ରଭୃତି ଦଳିତ ଲୋକମାନଙ୍କର ବିଶ୍ୱାସ ଥିଲା ସୁରେନବାବୁ ଡାକ୍ତର ପାଖରୁ ପାନେ ଔଷଧ ଖାଇଲେ ରୋଗ ଛାଡ଼ି ଯିବ । ସୁରେନ ବାବୁ ତାଙ୍କ ବେବି ଅଷ୍ଟିନ ଗାଡ଼ିରେ ଚଢ଼ି ହରିଜନ ଆଦିବାସୀ ପଲ୍ଲୀରେ ଘର ଘର ବୁଲି ଚିକିତ୍ସା କରୁଥିଲେ । ସେ କାହାରିଠାରୁ ଦକ୍ଷିଣା ଦାବୀ କରୁନଥିଲେ । ଯିଏ ଯାହା ଶକ୍ତି ଅନୁସାରେ ଦେଲା ସେ ତାହା ଗ୍ରହଣ କରୁଥିଲେ । ତାଙ୍କର ଅଧିକାଂଶ ରୋଗୀ ତାଙ୍କର ଟଙ୍କାଟିଏ ଦକ୍ଷିଣା ଦେଇପାରୁନଥିଲେ । ସେମାନେ ତାଙ୍କୁ ସେମାନଙ୍କ ବାଡ଼ିର ଫଳ ଫୁଲୁରି, କୁକୁଡ଼ା କିମ୍ବା ଅଣ୍ଡା ଭେଟି ଦେଇ ସନ୍ତୋଷ ଲାଭ କରୁଥିଲେ । ତାଙ୍କର ସୁଯୋଗ୍ୟ ପୁତ୍ର ଡାକ୍ତର ସମରେନ୍ଦ୍ର ଲାଲ ବୋଷ କଟକ ଏସ.ସି.ବି ମେଡ଼ିକାଲ କଲେଜ ଭେଷଜ ବିଭାଗର ଜଣେ ଦକ୍ଷ ଓ ନିର୍ଲୋଭ ଅଧ୍ୟାପକ ଚିକିତ୍ସକ ଭାବେ ସୁନାମ ଅର୍ଜନ କରିଥିଲେ । ମୋର ସହପାଠୀ ଓ ବାଲ୍ୟବନ୍ଧୁ ସମରେନ୍ଦ୍ରର ଏହା ଭିତରେ ଅକାଳ ବିୟୋଗ ହୋଇଯାଇଛି ।

ସୁରେନବାବୁଙ୍କୁ ଛାଡ଼ିଦେଲେ ଆଉ ଜଣେ ଜନତା ଚିକିତ୍ସକ ଥିଲେ ବନମାଳି ଜୀଉ । ବନମାଳି ବାବୁ ଡାକ୍ତର ନ ଥିଲେ, ସେ ଥିଲେ ବାରିପଦା ଡାକ୍ତରଖାନାର ମୁଖ୍ୟ-କମ୍ପାଉଣ୍ଡର । ବନମାଳି ବାବୁ ନିଜ ଅଭିଜ୍ଞତା ଓ ଦକ୍ଷତାରୁ ଡାକ୍ତରୀ ବିଦ୍ୟାଟିକୁ ଆୟତ୍ତ କରିନେଇ ଗରିବ ରୋଗୀମାନଙ୍କୁ ଚିକିତ୍ସା କରୁଥିଲେ । ତାଙ୍କର ରୋଗୀ ସଂଖ୍ୟା ଏତେ ବଢ଼ିଯାଇଥିଲା ଯେ ସେ ଗାଧୋଇବା ପାଇଁ କିମ୍ବା ଖାଇବା ପାଇଁ ସମୟ ପାଉ ନଥିଲେ । ସେ ପରସ୍ଥିତିରେ ସରକାରୀ ଚାକିରି କରି ପ୍ରାଇଭେଟ୍ ପ୍ରାକ୍‌ଟିସ୍ କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ସେ ଡାକ୍ତରଖାନାର ହେଡ୍ କମ୍ପାଉଣ୍ଡର ଚାକିରି ଛାଡ଼ିଦେଇ ପୁରା ସମୟ ଘରୋଇ ଚିକିତ୍ସାରେ ବିନିଯୋଗ କରିଥିଲେ ।

ବାରିପଦା ସହରର ବୈଶିଷ୍ଟ ଥିଲା ସେଠିକା ଲୋକମାନଙ୍କର ଏକାତ୍ମବୋଧ, ପରସ୍ପରକୁ ସାହାଯ୍ୟ କରିବା ମନୋବୃତ୍ତି, ଅନ୍ୟର ସୁଖରେ ସୁଖୀ ହେବା ଅନ୍ୟର ଦୁଃଖରେ ଦୁଃଖୀ ହେବା ଭଳି ଆନ୍ତରିକତା । ନିସ୍ୱାର୍ଥ ଭାବେ ଅନ୍ୟକୁ ସାହାଯ୍ୟ କରିବା ମନୋବୃତ୍ତି ଥିଲା ବାରିପଦା ସହରବାସୀଙ୍କ ଚାରିତ୍ରିକ ବୈଶିଷ୍ଟ୍ୟ । ଛୋଟ ସହରଟିରେ ସମସ୍ତେ ସମସ୍ତଙ୍କୁ ଚିହ୍ନୁ ଥିଲେ । ଗୋଟିଏ ମାତ୍ର ସ୍କୁଲ ଥିଲା ସହରରେ, ସହର କାହିଁକି ସାରା ଷ୍ଟେଟରେ । ସେଇ ସ୍କୁଲରେ ସମସ୍ତେ ପଢୁଥିଲେ । ସ୍କୁଲ ଜୀବନର ବନ୍ଧୁତା ଚିରଦିନ ପାଇଁ ଅମଳିନ ହୋଇ ରହିଯାଉଥିଲା । ତା ଭିତରୁ କିଏ ତଳ କ୍ଲାସରୁ ପଢ଼ା ଛାଡ଼ିଦେଇ ଛୋଟ ମୋଟ ବେପାରରେ ଲାଗି ଯାଉଥିଲା କିଏ ପିଅନ କିମ୍ବା ପୋଷ୍ଟମ୍ୟାନ, ଇଲେକ୍ଟ୍ରିକ୍ ଲାଇନମ୍ୟାନ ଭଳି ଛୋଟ ଚାକିରି କରୁଥିଲା । ଆଉ କିଏ ବା ସ୍କୁଲ ପଢ଼ା ଶେଷ କରି କିରାଣି ହେଉଥିଲା କିମ୍ବା ମାଷ୍ଟର ହେଉଥିଲା । ଅଳ୍ପ କେତେଜଣ ମେଧାବୀ ଛାତ୍ର ବାହାରେ କଲେଜରେ ପାଠ ପଢ଼ି ହାକିମ ହେଉଥିଲେ, ଓକିଲ ହେଉଥିଲେ, ଡାକ୍ତର, ଇଞ୍ଜିନିୟର ବି ହେଉଥିଲେ । କିନ୍ତୁ କେହି ଯେତେ ଉଚ୍ଚ ପାହ୍ୟାକୁ ଯାଇଥାଉନା କାହିଁକି ସ୍କୁଲ ଜୀବନର ସହପାଠୀମାନଙ୍କୁ, ଛାତ୍ରଜୀବନର ସଖ୍ୟତାକୁ ଅସ୍ୱୀକାର କରୁନଥିଲେ । ସାରା ସହରଟା ଗୋଟିଏ ପରିବାର ପରି ଥିଲା । ସମସ୍ତେ ନିଜ ନିଜ ଭିତରେ ନିଜର ସୁଖ ଦୁଃଖ ବାଣ୍ଟିବାକୁ କୁଣ୍ଠାବୋଧ କରୁନଥିଲେ । କୌଣସି ବ୍ୟକ୍ତି ଅସୁସ୍ଥ ହୋଇ ଡାକ୍ତରଖାନାରେ ରହି ଚିକିତ୍ସିତ ହେଉଛି ଶୁଣିଲେ ଅନେକ ଲୋକ ଅଯାଚିତ ଭାବେ ସେବା ଶୁଶ୍ରୁଷା କରିବା ପାଇଁ ପହଞ୍ଚି ଯାଉଥିଲେ । ଗୁରୁତର ଭାବେ ପିଡ଼ୀତ ରୋଗୀମାନଙ୍କ ସେବା ପାଇଁ ରାତିରେ ଜଗିବା ପାଇଁ ସ୍ୱେଚ୍ଛାସେବୀଙ୍କ ଅଭାବ ହେଉନଥିଲା । କାହାରି ମୃତ୍ୟୁ ଖବର ଶୁଣିଲେ ଶ୍ମଶାନ ଯାତ୍ରୀ ହେବା ପାଇଁ ବହୁଲୋକ ଉପଯାଚକ ଭାବେ ଆଗେଇ ଆସୁଥିଲେ । ବିବାହ ବ୍ରତ ଭଳି ଉତ୍ସବାନୁଷ୍ଠାନରେ ପାଖ ପଡ଼ୋଶୀ ଲୋକଙ୍କ ଠାରୁ ଅଯାଚିତ ସହଯୋଗ ମିଳୁଥିଲା । ସେତେବେଳେ ଟେଣ୍ଟ ହାଉସ ନଥିଲା । ଭୋଜିଭାତ ପାଇଁ ହଣ୍ଡା ଡେକିଚି କଡ଼େଇ ଇତ୍ୟାଦି ବାସନ କୁସନ କିମ୍ବା ଦରୀ ପେଟ୍ରୋମ୍ୟାକ୍ସ ଇତ୍ୟାଦି ଲୋକମାନଙ୍କ ଠାରୁ ସଂଗ୍ରହ କରିବାକୁ ପଡୁଥିଲା । ଦରକାର ବେଳେ ପାଖ ପଡ଼ୋଶୀଙ୍କୁ ସେସବୁ ଜିନିଷ ଦେବା ପାଇଁ କେହି କୁଣ୍ଠାବୋଧ କରୁନଥିଲେ ।

ବାରିପଦାର ଜଣେ ବିଶିଷ୍ଟ ବ୍ୟକ୍ତି ମଦନ ସର୍ଦ୍ଦାରଙ୍କର ଗୋଟିଏ

ଜାତୀଆ ମୂଳଚାନୀ ଷଣ୍ଢଥିଲା । ବିଶାଳକାୟ ସେହି ବୃଷଭର ରଙ୍ଗଥିଲା ଶଙ୍ଖ ଶୁଭ୍ର । ସେ ସର୍ବର ଘରେ ତାର ପ୍ରାତଃରାଶ ଶେଷ କରି ସହର ପରିକ୍ରମାରେ ବାହାରି ପଡୁଥିଲା । ସେ ଯାହାଘର ଆଗରେ ଛିଡ଼ା ହେଉଥିଲା ସିଏ ବିଡ଼ାଏ ଘାସ କିମ୍ବା ବାଲଟିଏ ପେଜ-ତୋରାଣୀ ଆଣି ତା ଆଗରେ ଥୋଉଥିଲା । କିଏ କିଛି ନପାଇଲେ ପରିବାଡାଲାରୁ ଯୋଡ଼ାଏ ବାଇଗଣ ଆଣି ଖୋଇ ଦେଉଥିଲା । ଭାରି ଶାନ୍ତ ଓ ସୁଧାର ଥିଲା ସେ ଷଣ୍ଢ । କେହି ତାକୁ ଆଉଁସି ଦେଲେ ସେ ମୁଣ୍ଡତଳକୁ କରି ଛିଡ଼ା ହୋଇ ରହୁଥିଲା । ତାପରେ ପୁଣିସେ ରାଜକୀୟ ଠାଣୀରେ ଚାଲିବା ଆରମ୍ଭ କରି ଦେଉଥିଲା ।

ବାରିପଦାରେ ଜଣେ କୁମ୍ଭୀପାଟୁଆ ବାବାଜୀ ଥିଲେ । ସେ ଥିଲେ ବିଶାଳକାୟ ବ୍ୟକ୍ତି, ମୁଣ୍ଡରେ ଥିଲା ତାଙ୍କର ବିଶାଳ ଜଟା । ତାକୁ ଗୁଡ଼େଇ ଗୁଡ଼େଇ ମରହଟ୍ଟା ମାନଙ୍କ ପଗଡ଼ି ପରି ବନ୍ଧାଯାଇଥାଏ । ପରିଧାନ କେବଳ ଗୋଟିଏ ଗେରୁଆ କଉପୁନି ଆଉ ମୁଣ୍ଡ ଉପରେ ବିରାଟ ତାଳପତ୍ର ଛତା । ତାଙ୍କ ଚେହେରାରେ ଦର୍ଶନୀୟ ଥିଲା ତାଙ୍କ ଅତଳ ପେଟ । ଅଳ୍ପ ଦାଢ଼ି ନିଶ ଭରି ମୁହଁଟା ତାଙ୍କର ସବୁବେଳେ ଶିଶୁ ସୁଲଭ ହସରେ ଉଦ୍ଭାସିତ । ଛୋଟ ଛୋଟ ପିଲାଙ୍କୁ ଦେଖିଲେ ସେ ଭାରି ଖୁସି ହେଉଥିଲେ । ତାଙ୍କ ମୁହଁରେ ଲାଖି ରହିଥିବା ସ୍ମିତହାସ୍ୟକୁ ଆହୁରି ପରିସ୍ଫୁଟ କରି ଗୋଟିଏ ବିଶେଷ କାଇଦାରେ ତାଙ୍କ ଅତଳ ପେଟଟି ନଚାଇ ନଚାଇ ସେ ଗୀତ ଗାଉଥିଲେ;

ଆସ ଆସ ପିଲା ବାଳକ
ନାଚ ନାଚ ପିଲା ବାଳକ
ଗାଅ ଗାଅ ପିଲା ବାଳକ
ହସ ହସ ପିଲା ବାଳକ

ପିଲାଏ ତାଙ୍କ ଚାରିପଟେ ତାଳି ଦେଇ ନାଚି ନାଚି ଗୀତ ଗାଇ ଗାଇ ଚାଲୁଥିଲେ- 'ଆସ ଆସ ପିଲା ବାଳକ, ନାଚ ନାଚ ପିଲାବାଳକ, ଗୁରୁ ମହାରାଜ ପେଟକୁ ଦେଖ.... ।' ବିଶାଳ ତାଳପତ୍ର ଛତା ମୁଣ୍ଡାଇ ପିଲାଙ୍କ ଗହଣରେ ଚାଲୁ ଚାଲୁ ବାବାଜୀ ମଝିରେ ମଝିରେ ନିଜ ପେଟକୁ ନଚାଇ ଗାଇ ଉଠୁଥିଲେ ନାଚ ନାଚ ପିଲାବାଳକ ।

ଆଉ ଜଣେ ଥିଲେ ଦଣ୍ଡୀ ବାବାଜୀ ମହାରାଜ । ଏହି ଦୀର୍ଘଦେହୀ ବୃଦ୍ଧ ସନ୍ୟାସୀ ଜଣକ ଉନ୍ମାଦ ଥିଲେ । ସେ ବୋଧହୁଏ ଓଡ଼ିଆ ନଥିଲେ । ତାଙ୍କ କଥାରେ ହିନ୍ଦୀ ଶବ୍ଦ ଓ ଉଚ୍ଚାରଣ ଭଙ୍ଗୀ ମିଶି ରହୁଥିଲା । ସେ ଦଣ୍ଡୀ

ସମ୍ପ୍ରଦାୟର ସାଧୁ ଥିଲେ ବୋଲି ଲୋକେ ତାଙ୍କୁ ଦଣ୍ଡୀ ବାବାଜୀ ବୋଲି କହୁଥିଲେ । ହଠାତ୍ ସେ ଆସି କୌଣସି ଗୃହସ୍ଥ ଘରେ ପହଞ୍ଚି ଧୀର ସ୍ୱରରେ ସେହି ଘରର ଗୃହିଣୀଙ୍କୁ ଡାକି କହୁଥିଲେ, 'ମା ଆଜି ମୁଁ ତୋ ଘରେ ପ୍ରସାଦ ସେବା କରିବି । ତାଙ୍କୁ ଡାଲି ଚାଉଳ ପରିବା ପତ୍ର ଇତ୍ୟାଦି ସିଧା କାଢ଼ି ଦେଲେ ସେ ସ୍ୱପାକରେ ଖେଚୁଡ଼ି ପ୍ରସ୍ତୁତ କରି ତାକୁ ଭୋଗ ଲଗାଇ ସେହି ଗୃହସ୍ଥ ପରିବାରର ସବୁଲୋକଙ୍କୁ ପ୍ରସାଦ ବାଣ୍ଟିବା ପରେ ନିଜେ ସାମାନ୍ୟ ଟିକିଏ ସେବା କରୁଥିଲେ । ତାଙ୍କୁ ଦେଖିଲେ ସେ ସୁସ୍ଥ ମାନସିକତାର ଲୋକ ବୋଲି ଜଣା ପଡୁଥିଲେ । କିନ୍ତୁ ଗୋଟିଏ ଆଚରଣ ତାଙ୍କ ମସ୍ତିଷ୍କ ବିକୃତିର ସୂଚନା ଦେଉଥିଲା । ସେ ଶିଶୁ କନ୍ୟାଟିଏ ଦେଖିଲେ ସେହି ଶିଶୁର ମା'ଙ୍କୁ ତାଙ୍କ ଝୋଲା ଭିତରୁ କଦଳୀ କମଳା ବା ପିଜୁଳିଟିଏ କାଢ଼ି ତାଙ୍କ ହାତରେ ଦେଇ କହୁଥିଲେ 'ମା ମୁଁ ତୋ ଝିଅକୁ ବିଭା ହେବି । ତୋର ଆପତ୍ତି ଅଛି କି ?'

ଶିଶୁଟିର ମା ହାତ ଯୋଡ଼ି କହୁଥିଲା, 'ଆପଣଙ୍କୁ ଜାମାତା ଭାବେ ପାଇବା ମୋ ସୌଭାଗ୍ୟ । ମୁଁ କାହିଁକି ଆପତ୍ତି କରିବି ? ତେବେ ସେ ତ ବର୍ତ୍ତମାନ ବହୁତ ସାନ । ସେ ବଡ଼ ହୋଇଯାଉ ଆପଣ ବିଭା ହେବେ ।'

ଦଣ୍ଡୀ ବାବାଜୀ ତାଙ୍କ ଦନ୍ତହୀନ ମୁହଁରେ ସସ୍ନେହ ହସ ଫୁଟାଇ କହୁଥିଲେ, 'ମୁଁ ତ ବର୍ତ୍ତମାନ ବିଭା ହେବା କଥା କହୁନାହିଁ । ସେ ବଡ଼ ହୋଇଯାଉ- ତାପରେ ତାକୁ ମୁଁ ବିଭାହେବି । ମୋର କହିବା କଥା ତୁମେ ତାପାଇଁ ବର ଖୋଜିବ ନାହିଁ ।' ତାପରେ ସେ ଖୁସି ମନରେ ଚାଲିଯାଉଥିଲେ ।

ବାରିପଦାର ସାଂସ୍କୃତିକ ଜୀବନ ଅତି ଋଦ୍ଧିମନ୍ତ ଥିଲା । ବାରିପଦାର ଲୋକମାନେ ସାହିତ୍ୟ ସଙ୍ଗୀତ ନୃତ୍ୟ ଅଭିନୟ ଚିତ୍ରକଳା ଭାସ୍କର୍ଯ୍ୟ ଫଟୋଗ୍ରାଫି ଇତ୍ୟାଦି ସବୁ ବିଷୟରେ ରୁଚି ରଖୁଥିଲେ । ମୟୂରଭଞ୍ଜର ମହାରାଜା ଜଣେ ସଂସ୍କୃତି ପ୍ରେମୀ ବ୍ୟକ୍ତି ଥିଲେ । ରାଜ ସରକାରଙ୍କ ତରଫରୁ ଭଞ୍ଜ ପ୍ରଦୀପ ବୋଲି ଗୋଟିଏ ଉଚ୍ଚକୋଟୀର ସାହିତ୍ୟ ପତ୍ରିକା ପ୍ରକାଶିତ ହେଉଥିଲା । ଏହି ପତ୍ରିକାରେ ଲେଖୁଥିବା କବି ଓ ଲେଖକ ମାନଙ୍କୁ ଆର୍ଥିକ ପାରିତୋଷିକ ମିଳୁଥିଲା । ମୟୂରଭଞ୍ଜ ଷ୍ଟେଟର ଓଡ଼ିଶାରେ ମିଶ୍ରଣ ସମୟରେ ବସନ୍ତ ଶତପଥୀ ଏହାର ସମ୍ପାଦନା କରୁଥିଲେ । ମହାରାଜାଙ୍କର ଉଚ୍ଚାଙ୍ଗ ସଙ୍ଗୀତ, ନୃତ୍ୟକଳା ତଥା ଚିତ୍ରକଳା ଇତ୍ୟାଦିରେ ଗଭୀର ରୁଚି ଥିଲା । ଓସ୍ତାଦ ସୁଧୀର ଚନ୍ଦ୍ର ରାୟ ବୋଲି ଜଣେ ଉଚ୍ଚକୋଟୀର ହିନ୍ଦୁସ୍ତାନୀ ଶାସ୍ତ୍ରୀୟ ସଙ୍ଗୀତ ବିଶାରଦ ଦରବାରୀ

ସଙ୍ଗୀତଜ୍ଞ ଥିଲେ । ମହାରାଜା ମଝିରେ ମଝିରେ ଓଡ଼ିଶାର ଖ୍ୟାତନାମା ସଙ୍ଗୀତଜ୍ଞମାନଙ୍କୁ ବାରିପଦା ଆମନ୍ତ୍ରଣ କରି ସେମାନଙ୍କ ସହିତ ଓଡ଼ିଶୀ ନୃତ୍ୟ ସଙ୍ଗୀତ ବିଷୟରେ ଆଲୋଚନା କରୁଥିଲେ । ମହାରାଜାଙ୍କ ପୃଷ୍ଠପୋଷକତାରେ ମୟୂରଭଞ୍ଜ ଛଉନାଚର ବିଶେଷ ଉନ୍ନତି ସାଧିତ ହୋଇଥିଲା । ସେ ଏହି ନୃତ୍ୟକଳାରେ ବିଶେଷ ପାରଦର୍ଶୀ ଥିଲେ । ସେ ଚୈତ୍ରପର୍ବ ଉପଲକ୍ଷେ ହେଉଥିବା ଛଉନାଚର ପ୍ରତିଟି ନାଚକୁ ଖୁଣ୍ଟି ନାଣ୍ଟି ପରୀକ୍ଷା କରି ତାର ମୂଲ୍ୟାୟନ କରୁଥିଲେ । ନାଚର ସାମାନ୍ୟତମ ତ୍ରୁଟି ସେ ଧରି ପକାଉଥିଲେ । ମହାରାଜା କଲିକତାର ଜଣେ ବିଶିଷ୍ଟ ଚିତ୍ରକରଙ୍କୁ ମୋଟା ଦରମାରେ ନିଯୁକ୍ତି ଦେଇ ତାଙ୍କ ଦ୍ୱାରା ପୂର୍ବତନ ମହାରାଜାମାନଙ୍କର ପୂର୍ଣ୍ଣାୟବ ତୈଳଚିତ୍ର ଅଙ୍କନ କରାଇଥିଲେ । ସେହି ଅବସରରେ ସେ ନିଜେ ମଧ୍ୟ ତୈଳଚିତ୍ରାଙ୍କନ ଶିକ୍ଷା କରିଥିଲେ । ଓଡ଼ିଶା ସାହିତ୍ୟ ଓ ସଂସ୍କୃତିକୁ ସମୃଦ୍ଧ କରିବା ପାଇଁ ବାରିପଦାର ସେହି ପୃଷ୍ଠଭୂମିରୁ ଆଗେଇ ଆସିଥିଲେ, ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କଥାକାର ଓ କବି ବସନ୍ତ ଶତପଥୀ, ମହେଶ ମହାପାତ୍ର, ମହେଶ୍ୱର ନାଏକ, ପ୍ରଭାସ ବ୍ରହ୍ମା, ସାତକଡ଼ି ହୋତା, ଚିନ୍ତାମଣି ବେହେରା, ରବି ପଟ୍ଟନାୟକ, ସୌରୀନ୍ଦ୍ର ବାରିକ ପ୍ରଭୃତି । ନାଟ୍ୟକାର ଭଞ୍ଜ କିଶୋର ପଟ୍ଟନାୟକ, ଆନନ୍ଦ ଶଙ୍କର ଦାସ, ଗୀତିକାର ଶିବବ୍ରତ ଦାସ, ଜୀବନାନନ୍ଦ ପାଣି, ଗୁରୁକୃଷ୍ଣ ଗୋସ୍ୱାମୀ ଓ ଜୀତେନ୍ଦ୍ର ପଟ୍ଟନାୟକ ପ୍ରଭୃତି, ସାମ୍ବାଦିକ ଭବତୋଷ ଦାଶ, ମହେଶ ପ୍ରସାଦ ସିହ୍ନା, ସଙ୍ଗୀତଜ୍ଞ ଓ କଣ୍ଠଶିଳ୍ପୀ ରାଧାକୃଷ୍ଣ ଭଞ୍ଜ, ଅତିସ କୁମାର ମଜୁମ୍‌ଦାର, ପ୍ରଫୁଲ୍ଲ ଚନ୍ଦ୍ର ସିଂହଦେଓ, ନଗେନ୍ଦ୍ର ନାଥ ପଟ୍ଟନାୟକ(କଟିବାବୁ) ଅଭିରାମ ରାୟ, ଶାନ୍ତନୁ ମହାପାତ୍ର, ଇନ୍ଦ୍ରାଣୀ ମିଶ୍ର, ଦେବାଶୀଷ ମହାପାତ୍ର, ସରୋଜ ପଟ୍ଟନାୟକ, ଅଭିନେତା ଉତ୍ତମ ମହାନ୍ତି, ବିଜୟ ମହାନ୍ତି, ଅସୀତ ପତି, ଅଜିତ ଦାସ, ଓ ଗଡ଼ି ପ୍ରଭୃତି ଚିତ୍ରଶିଳ୍ପୀ ଜତୀନ ଦାସ, ଶିବ ପାଣିଗ୍ରାହୀ, ହରିଶ ସିଂହବାବୁ, ରମେଶ ଚନ୍ଦ୍ର ମହାନ୍ତି ଓ ନୃତ୍ୟଶିଳ୍ପୀ ଧୀରେନ ପଟ୍ଟନାୟକ, ମଦନ ଲେଙ୍କା, କୃଷ୍ଣ ନାଏକ, ଚନ୍ଦ୍ରଶେଖର ଭଞ୍ଜ ପ୍ରଭୃତି । ଏମାନଙ୍କ ବ୍ୟତୀତ ବାରିପଦାରେ ଆହୁରି ଅନେକ ସାହିତ୍ୟ ସାଧକ ଶିଳ୍ପୀ ସଙ୍ଗୀତଜ୍ଞ ଓ କଳାକାର ଜନ୍ମଗ୍ରହଣ କରି ଓଡ଼ିଶାର ସାଂସ୍କୃତିକ ଜୀବନକୁ ସମୃଦ୍ଧ କରିଛନ୍ତି । ଏଇ ମୁହୂର୍ତ୍ତରେ ସେମାନଙ୍କ ନାମ ମୋ ସ୍ମରଣକୁ ଆସୁ ନଥିବାରୁ ମୁଁ ତାହା ଉଲ୍ଲେଖ କରିପାରୁନାହିଁ ।

ବାରିପଦାର ଆଦି ଫଟୋଗ୍ରାଫର ଥିଲେ ଜନମୋହନ ମହାପାତ୍ର ।

ସେ ଗୋଟିଏ ବିରାଟ ବାକ୍ସ ଭଳି କ୍ୟାମେରାକୁ ତିପାହ୍ୟା ଉପରେ ରଖି ତା ଉପରେ କଳାକନା ଘୋଡ଼ାଇ ଅନେକ ବେଳ ସଜଡ଼ା ସଜଡ଼ି କରିବା ପରେ ଗୋଟିଏ ପ୍ଲେଟ୍‌କୁ କ୍ୟାମେରାରେ ପୂରାଇ ଚଟକରି କାଢ଼ି ଆଣି ଫଟୋ ଉଠାଉଥିଲେ । ସେହି ଫଟୋ ଉଠାଇବା ପାଇଁ ବହୁ ଆୟୋଜନ କରିବାକୁ ପଡୁଥିଲା । ତାପରେ ହେମେନ୍ଦ୍ର ଲେଙ୍କା ବୋଲି ଜଣେ ଫଟୋଗ୍ରାଫର ଗୋଟିଏ ଷ୍ଟୁଡ଼ିଓକରି ଫଟୋ ଉଠାଉଥିଲେ । ଲେଙ୍କାବାବୁ ଫଟୋଗ୍ରାଫି ଛାଡ଼ିଦେଇ ଔଷଧ ଦୋକାନ କଲେ । ଜଣେ ସଚ୍ଚୋଟ ବ୍ୟବସାୟୀ ଭାବେ ତାଙ୍କର ସୁଖ୍ୟାତି ଥିଲା ।

ବାରିପଦାରେ ଆଧୁନିକ ଫଟୋଗ୍ରାଫି ପ୍ରବର୍ତ୍ତନ କଲେ ପୂର୍ଣ୍ଣ ବିନ୍ଧାଣୀ । ସେ ନିଜକୁ ଆଲୋକ ଚିତ୍ର ଶିଳ୍ପୀ ବୋଲି ପରିଚିତ କରୁଥିଲେ । ଫଟୋ ଷ୍ଟୁଡ଼ିଓ କରିବା ସହିତ ସେ ଚିତ୍ର ସାମ୍ବାଦିକତା ମଧ୍ୟ କରୁଥିଲେ । ପୂର୍ଣ୍ଣ ବିନ୍ଧାଣୀ ଜଣେ ସଦା ହସଖୁସି ମେଜାଜର ମଣିଷ ଓ ବାରିପଦାର ଜଣେ ଲୋକପ୍ରିୟ ବ୍ୟକ୍ତିତ୍ୱ । ଅନ୍ୟ ଜଣେ ଫଟୋଗ୍ରାଫର ହେଉଛନ୍ତି ନରେନ୍ଦ୍ର ପଟ୍ଟନାୟକ ବା କଟିବାବୁ । କଟିବାବୁ ଜଣେ ପ୍ରତିଭାରଧର ଶିଳ୍ପୀ । ସେ ଚିତ୍ରାଙ୍କନ ମୂର୍ତ୍ତି ଗଠନ ସଙ୍ଗୀତ ସାଧନା ସବୁ ବିଷୟରେ ଧୁରନ୍ଧର । ଟୁଇଲା ବୋଲି ଗୋଟିଏ ଆଦିବାସୀ ବାଦ୍ୟଯନ୍ତ୍ରରେ ସେ ବିଭିନ୍ନ ଶାସ୍ତ୍ରୀୟ ରାଗ ରାଗିଣୀ ବଜାଇ ଏହାକୁ ଲୋକପ୍ରିୟ କରି ପାରିଥିଲେ । କଟିବାବୁ ଓ ପୂର୍ଣ୍ଣ ବିନ୍ଧାଣୀଙ୍କ ପାଖରେ ପ୍ରଶିକ୍ଷିତ ହୋଇ ବହୁ ଫଟୋଗ୍ରାଫର ଭୁବନେଶ୍ୱର ରାଉରକେଲା ପ୍ରଭୃତି ସ୍ଥାନରେ ଫଟୋ ଷ୍ଟୁଡ଼ିଓ ଖୋଲି ସୁନାମ ଅର୍ଜନ କରିଛନ୍ତି ।

ଏହା ପୂର୍ବରୁ ବାରିପଦା ସହରର ସବୁଲୋକଙ୍କର ଏକାତ୍ମବୋଧ କଥା କହିଥିଲି । ଧନୀ ଦରିଦ୍ର ଶିକ୍ଷିତ ଅଶିକ୍ଷିତ ଉଚ୍ଚ ନୀଚ ନିର୍ବିଶେଷରେ ସମସ୍ତେ ସମସ୍ତଙ୍କୁ ଆପଣାର ବୋଲି ଭାବୁଥିଲେ । ଛୋଟ ସହରଟିରେ ଅଳ୍ପ ଲୋକ ବାସ କରୁଥିଲେ । ସବୁଲୋକ ପ୍ରାୟ ସବୁଲୋକଙ୍କୁ ଚିହ୍ନିଥିଲେ । ନାମ ନଜାଣିଲେ ବି ଜାଣିଥିଲେ ଇଏ ଅମୁକ ଲୋକର ପୁଅ କିମ୍ବା ଇୟା ଘର ଅମୁକ ସାହିରେ । ପାଲବଣିରୁ ଭଞ୍ଜପୁର, ଦାରୋଗାଡାହିରୁ ଶଙ୍ଖପଟା ଏଇତ ବାରିପଦା । ସେଇ ଛୋଟ ସହରଟିରେ ସମସ୍ତେ ସମସ୍ତଙ୍କୁ ଚିହ୍ନିବା ବିଚିତ୍ର ନଥିଲା ।

ଓଡ଼ିଶା ସହ ମୟୂରଭଞ୍ଜ ଷ୍ଟେଟର ମିଶ୍ରଣ ହେବା ପରେ ଅନେକ ବାହାରର ଲୋକ ବାରିପଦାକୁ ଆସିଲେ । ଅନେକ ଦିନ ବାରିପଦାରେ ଚାଲିଥିବା ସାମାଜିକ ଚଳଣି ଏହାଦ୍ୱାରା ବିପର୍ଯ୍ୟସ୍ତ ହୋଇ ଯାଇଥିଲା ।

ଘୋଷାଲ ବାବୁ ବୋଲି ଜଣେ ବଙ୍ଗାଳୀ ଭଦ୍ରଲୋକ ବାରିପଦାରେ ଚାକିରି ଆରମ୍ଭ କରି ଷ୍ଟେଟ୍‌ର ଅଡିଟ୍ ଅଫିସର ହୋଇଥିଲେ । ଚାକିରିରୁ ଅବସର ନେବା ପରେ ବାରିପଦାରେ ସ୍ଥାୟୀ ଭାବେ ବସବାସ କରିବା ପାଇଁ ତାଙ୍କର ଇଚ୍ଛା ଥିଲା । ସେଠାରେ ଘରଟିଏ ତୋଳିବା ପାଇଁ ସେ ଘରଡିହ ଖଣ୍ଡିଏ କିଣିଥିଲେ । ମିଶ୍ରଣ ପରେ ସେ ଭୁବନେଶ୍ୱର ସଚିବାଳୟକୁ ବଦଳି ହୋଇ ଆସିଥିଲେ । କେତେବର୍ଷ ପରେ ଭୁବନେଶ୍ୱରରେ ମୋ ସହିତ ତାଙ୍କର ଦେଖା ହେବାରୁ ସେ ପଚାରିଲେ, 'ତୁମେ ଏହା ଭିତରେ କେବେ ବାରିପଦା ଯାଇଚ ?' 'ମୁଁ କହିଲି, କାହିଁକି କୁହନ୍ତୁ ତ ?'

ସେ ବିଷର୍ଣ୍ଣ ଭାବେ ମୋତେ କହିଲେ 'ନା- ଏମିତି ପଚାରୁଥିଲି । ମୁଁ ଏବେ ବାରିପଦା ଯାଇଥିଲି । ସେ ଆଗ ବାରିପଦା ଆଉ ନାହିଁ ହେ । ସେଠି ବର୍ତ୍ତମାନ ସମସ୍ତ ନୂଆ ଲୋକ, ଖାଲି ଅଚିହ୍ନା ମୁହଁରେ ଭରିଯାଇଚି ବାରିପଦା ସହର । କେହି କାହାରିକୁ ଚିହ୍ନୁ ନାହାନ୍ତି । ମୁଁ ବାରିପଦାରେ ଘର କରିବା ପାଇଁ ଯେଉଁ ଜାଗାଟା ରଖିଥିଲି, ସେ ଜାଗାଟି ବିକିଦେଲି । କାହିଁକି କେଜାଣି ବାରିପଦାରେ ରହିବା ପାଇଁ ଆଉ ଇଚ୍ଛା ହେଲାନାହିଁ । ଏଇଠି ବାପୁଜୀ ନଗରରେ ଗୋଟିଏ ପ୍ଲଟ ମିଳିଚି ମୋତେ । ଅବସର ନେବା ପରେ ସେଇଠି ଘର କରି ରହିଯିବି ।'

ହଁ କ୍ରମେ ଆମମାନଙ୍କ ନିକଟରେ ବାରିପଦା ଅଚିହ୍ନା ହୋଇଗଲା । ବାରିପଦା ସହରରେ ଅନେକ ଖୋଜିବାପରେ ବି ଚିହ୍ନାମୁହଁଟିଏ ମିଳିବା କଷ୍ଟକର ହୋଇପଡ଼ିଲା । ଦ୍ରୁତ ଗତିରେ ବାରିପଦାର ରୂପ ବଦଳିବା ଆରମ୍ଭ କରିଦେଲା । କିନ୍ତୁ ମୋ ମନ ଭିତରେ ବାରିପଦାର ଯେଉଁ ପ୍ରତିଛବି ସ୍ଥାୟୀ ହୋଇ ରହିଯାଇଥିଲା ତାହା ହେଉଚି ସେଦିନର ବାରିପଦା- ମୋ ବାଲ୍ୟ ଓ କୈଶୋରର ବାରିପଦାର ଗୋଟିଏ ଅତି ସୁନ୍ଦର ମନୋଗ୍ରାହୀ ରୂପ । ରସ ରାସମୟୀ କଳା କୁଞ୍ଜ ଭୂମୀ ସୁନ୍ଦରୀ ବାରିପଦାର ସ୍ମୃତି ଗୋଟିଏ ଦୀର୍ଘଶ୍ୱାସ ହୋଇ ମୋ ଛାତି ଭିତରେ ସଂଗୋପନରେ ଛପି ରହିଗଲା ।

ଦେଶ ସ୍ୱାଧୀନ ହେବାର ଅବ୍ୟବହିତ ପରେ ଦିନେ ମହାରାଜା ଭାରତ ବର୍ଷର ବାଣିଜ୍ୟ ମନ୍ତ୍ରୀ କ୍ଷୀତିଶ ଚନ୍ଦ୍ର ନିୟୋଗୀଙ୍କ ଠାରୁ ଜରୁରୀ ତାର ବାର୍ତ୍ତା ପାଇ ତାଙ୍କୁ ଯାଇ ବାଲେଶ୍ୱର ରେଳ ଷ୍ଟେସନରେ ଦେଖା କରିଥିଲେ । ନିୟୋଗୀ ମହାଶୟ ସେଦିନ କଲିକତାରୁ ମାନ୍ଦ୍ରାଜ ମେଲ ଯୋଗେ ଦକ୍ଷିଣକୁ ଯାତ୍ରା

କରୁଥିଲେ । ବାଲେଶ୍ୱର ଷ୍ଟେସନରେ ମହାରାଜା ସେଦିନ ତାଙ୍କ ସହିତ ଗୋପନ ଆଲୋଚନା କରି ବାରିପଦା ଫେରି ଆସିବା ପରେ ମୟୂରଭଞ୍ଜ ପ୍ରଜାମଣ୍ଡଳର ସଭାପତି ଶରତ ଚନ୍ଦ୍ର ଦାସଙ୍କୁ ଡକାଇ ଗୋଟିଏ ଲୋକପ୍ରିୟ ମନ୍ତ୍ରୀମଣ୍ଡଳ ଗଠନ କରି ମୟୂରଭଞ୍ଜ ଷ୍ଟେଟର ଶାସନ ଭାର ଗ୍ରହଣ କରିବା ପାଇଁ ଅନୁରୋଧ କରିଥିଲେ । ମୟୂରଭଞ୍ଜ ଷ୍ଟେଟରେ ୧୯୪୫ ମସିହାରୁ ୨୭ ଜଣ ସଭ୍ୟ ବିଶିଷ୍ଟ ଗୋଟିଏ ପ୍ରଜା ପରିଷଦ ଗଠିତ ହୋଇଥିଲା । ତାହା ନିଷ୍କ୍ରିୟ ଅବସ୍ଥାରେ ଥିଲା । ସେହି ପ୍ରଜା ପରିଷଦକୁ ବିସ୍ତାରିତ କରି ୫୧ଜଣ ସଭ୍ୟ ବିଶିଷ୍ଟ କରାଗଲା । ବିଭିନ୍ନ ଦଳରୁ ସଭ୍ୟ ମନୋନୀତ କରାଯାଇ ଏହାକୁ ସକ୍ରୀୟ କରି ଦିଆଗଲା । ପ୍ରଜା ପରିଷଦରେ ପ୍ରଜାମଣ୍ଡଳର ସଂଖ୍ୟାଧିକ ସଭ୍ୟ ରହିଲେ । ବିଶିଷ୍ଟ ଆଇନଜୀବି ଲାଲମୋହନ ପତିଙ୍କ ନେତୃତ୍ୱରେ କେତେଜଣ ସ୍ୱାଧୀନ ସଭ୍ୟ ଓ ଆଦିବାସୀ ନେତା ସୁନାରାମ ସରେନଙ୍କର ଝାଡ଼ଖଣ୍ଡ ଦଳର କେତେକ ସଭ୍ୟ ବିରୋଧି ଦଳରେ ରହିଲେ । ମହାରାଜା ରାଜ୍ୟର ଶାସନ ମୁଖ୍ୟ ହୋଇ ରହିଲେ । ତିନିଜଣିଆ ମନ୍ତ୍ରୀ ମଣ୍ଡଳରେ ଶରତ ବାବୁ ପ୍ରଧାନ ମନ୍ତ୍ରୀ ଓ ବିଦ୍ୟାଧର ମହାପାତ୍ର, ମହେଶ୍ୱର ନାଏକ ମନ୍ତ୍ରୀ ଭାବେ ରହିଲେ । ପ୍ରଜା ପରିଷଦ ବା ବିଧାନସଭାର ବାଚସ୍ପତି ହୋଇଥିଲେ ବ୍ରଜଗୋପାଲ ଘୋଷାଲ ବୋଲି ଜଣେ ଆଇନଜୀବି ।

ନୂତନ ବ୍ୟବସ୍ଥା ଅନୁସାରେ ମହାରାଜାଙ୍କ ବ୍ୟକ୍ତିଗତ ସମ୍ପତ୍ତିକୁ ଷ୍ଟେଟ ସମ୍ପତ୍ତିରୁ ଭିନ୍ନ କରି ଚିହ୍ନଟ କରାଗଲା । ତାକୁ କୁହାଗଲା ସିଭିଲ-ଲିଷ୍ଟ ସମ୍ପତ୍ତି । ସିଭିଲ-ଲିଷ୍ଟ ସମ୍ପତ୍ତି ପରିଚାଳନା ପାଇଁ ମହାରାଜାଙ୍କ ଅଧୀନରେ କେତେଜଣ କର୍ମଚାରୀ ରହିଲେ । ଶାସନ ମୁଖ୍ୟ ମହାରାଜାଙ୍କ ରକ୍ଷଣାବେକ୍ଷଣ ଓ ତାଙ୍କ ବ୍ୟକ୍ତିଗତ ସମ୍ପତ୍ତିର ପରିଚାଳନା ପାଇଁ ମହାରାଜା ଷ୍ଟେଟରୁ ମୋଟା ଅଙ୍କର ଭତ୍ତା ପାଇବା ବିଷୟ ସ୍ଥିର ହେଲା ।

ମହାରାଜା, ହଠାତ୍ ରାଜ୍ୟର ଶାସନ ଭାର ସେଯାବତ୍ ତାଙ୍କ ବିଷ ଦୃଷ୍ଟିରେ ଥିବା ପ୍ରଜାମଣ୍ଡଳ ହାତକୁ କାହିଁକି ହସ୍ତାନ୍ତର କରିଦେଲେ ସେ ରହସ୍ୟ ପ୍ରଥମେ ଲୋକମାନେ ବୁଝି ପାରିନଥିଲେ । ଅଳ୍ପଦିନ ପରେ ତାହା ଜଣା ପଡ଼ିଥିଲା । ୧୯୪୭ ମସିହା ଡିସେମ୍ବର ମାସରେ ଭାରତ ବର୍ଷର ସୌରାଷ୍ଟ୍ର ମନ୍ତ୍ରୀ ଲୌହମାନବ ସର୍ଦ୍ଦାର ପଟେଲ ଓଡ଼ିଶାର ସବୁ ଗଡ଼ଜାତ ରାଜାମାନଙ୍କୁ କଟକ ଡକାଇ ସେମାନଙ୍କ ରାଜ୍ୟଗୁଡ଼ିକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇ ଦେବା ପାଇଁ ଚୁକ୍ତି ସମ୍ପାଦନ କରିବାକୁ କହିଥିଲେ । ତାଙ୍କ କଥା ଅମାନ୍ୟ

କରିବା ଶକ୍ତି କୌଣସି ଗଡ଼ଜାତ ରାଜାଙ୍କର ନଥିଲା । ସବୁ ରାଜା ବାଧହୋଇ ମିଶ୍ରଣ-ଚୁକ୍ତି ସମ୍ପାଦନ କରିଦେଇଥିଲେ । କିନ୍ତୁ ମୟୂରଭଞ୍ଜ ମହାରାଜା ମିଶ୍ରଣ ଚୁକ୍ତିରେ ସ୍ୱାକ୍ଷର କରିବା ପାଇଁ ନିଜର ଅକ୍ଷମତା ପ୍ରକାଶ କରି କହିଲେ ଯେ ତାଙ୍କ ରାଜ୍ୟରେ ଲୋକପ୍ରତିନିଧି ମୂଳକ ଶାସନ ଚାଲି ଥିବାରୁ ସେ ତାଙ୍କ ସରକାରଙ୍କ ବିନା ପରାମର୍ଶରେ ମିଶ୍ରଣ ଚୁକ୍ତିରେ ସ୍ୱାକ୍ଷର କରିପାରିବେ ନାହିଁ । ଅବଶ୍ୟ ସେ ଭାରତ ସରକାରଙ୍କ ଏ ପ୍ରସ୍ତାବ ତାଙ୍କ ସରକାରଙ୍କ ବିଚାର ପାଇଁ ଦେବେ ଓ ସରକାରଙ୍କ ମତାମତ ଭାରତ ସରକାରଙ୍କୁ ଜଣାଇ ଦେବେ । ସୌରାଷ୍ଟମନ୍ତ୍ରୀ ସର୍ଦ୍ଦାର ପଟେଲ ଓ ଓଡ଼ିଶା ପ୍ରଦେଶର ପ୍ରଧାନ ମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ପାଖରେ ମହାରାଜଙ୍କ ଏହି ପ୍ରସ୍ତାବକୁ ଅଗ୍ରାହ୍ୟ କରିବା ପାଇଁ କୌଣସି ଯୁକ୍ତି ନଥିଲା । ତେଣୁ ମୟୂରଭଞ୍ଜ ଷ୍ଟେଟର ୧୯୪୭ ମସିହା ଡିସେମ୍ବର ମାସରେ ଅନ୍ୟ ଗଡ଼ଜାତମାନଙ୍କ ପରି ଓଡ଼ିଶା ସହ ମିଶ୍ରଣ ନହୋଇ ତାହା ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ଭାବେ ଲୋକପ୍ରିୟ ସରକାରଙ୍କ ଶାସନାଧୀନ ହୋଇରହିଲା ।

୧୯୪୭ ମସିହା ଡିସେମ୍ବର ମାସରୁ ୧୯୪୮ ମସିହା ଅକ୍ଟୋବର ପର୍ଯ୍ୟନ୍ତ ମୟୂରଭଞ୍ଜ ଷ୍ଟେଟ ଲୋକପ୍ରିୟ ଶାସନାଧୀନ ରହିବା ପରେ ମୟୂରଭଞ୍ଜରେ ଆଦିବାସୀ ଆନ୍ଦୋଳନ ତୀବ୍ର ଆକାର ଧାରଣ କରିଥିଲା । ବିହାର ସରକାରଙ୍କ ଇଚ୍ଛାନୁଯାୟୀ ଟାଟା କମ୍ପାନୀ ଯୁବ ଆଦିବାସୀ ଓକିଲ ସୋନାରାମ ସରେନଙ୍କୁ ମୟୂରଭଞ୍ଜ ଷ୍ଟେଟକୁ ବିହାର ପ୍ରଦେଶ ସହିତ ମିଶାଇବା ପାଇଁ ଆନ୍ଦୋଳନ କରିବାକୁ ପ୍ରରୋଚିତ କରିଥିଲେ । ସେହି ଆନ୍ଦୋଳନ କ୍ରମେ ହିଂସ୍ରରୂପ ଧାରଣ କରିବାରୁ ମୟୂରଭଞ୍ଜ ପ୍ରଜାପରିଷଦ ମୟୂରଭଞ୍ଜକୁ ଭାରତ ସରକାରଙ୍କ ଅଧୀନରେ କେନ୍ଦ୍ର ଶାସିତ ଅଞ୍ଚଳ ରୂପେ ରଖିବା ପାଇଁ ସୁପାରିଶ କରିବାରୁ କେନ୍ଦ୍ର ସରକାର ଏହାର ଦାୟିତ୍ୱ ନେଇ ମିଷ୍ଟର ଡି.ଭି. ରିଗେ ବୋଲି ଜଣେ ଆ.ସି.ଏସ୍ ଅଫିସରଙ୍କୁ ମୟୂରଭଞ୍ଜର ପ୍ରଶାସକ ଭାବେ ବାରିପଦା ପଠାଇଥିଲେ ।

ଶରତବାବୁଙ୍କ ଲୋକପ୍ରିୟ ମନ୍ତ୍ରୀମଣ୍ଡଳର ଶାସନାଧୀନ ହୋଇ ମୟୂରଭଞ୍ଜ ଷ୍ଟେଟ ଦଶମାସ ମାତ୍ର ରହିଥିଲା । ସେ ସ୍ୱଳ୍ପ ସମୟ ଭିତରେ ଅନେକ ଗୁଡ଼ିଏ ଲୋକାଭିମୁଖୀ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା । ଷ୍ଟେଟ ରିଜର୍ଭ ଫଣ୍ଡରେ ସଞ୍ଚିତ ଅର୍ଥ ବିନିଯୋଗ କରି ବାରିପଦା ସହରର ସବୁ ଗୋଡ଼ି ରାସ୍ତାକୁ ପିଚୁ କରାଯାଇଥିଲା । ମହାରାଜାଙ୍କ ଅମଳରୁ ଅନେକ

ଗୁଡ଼ିଏ ପୁରୁଣା ମୋଟର ଗାଡ଼ି ବ୍ୟବହାର ନହୋଇ ପଡ଼ି ରହିଥିଲା । ତାର ରକ୍ଷଣା ବେକ୍ଷଣ ପାଇଁ କର୍ମଚାରୀ ଥିଲେ ଓ କେତେକ ଅନାବଶ୍ୟକୀୟ ଖର୍ଚ୍ଚ ହେଉଥିଲା । ସରକାର ସେ ପୁରୁଣା ମୋଟର ଗାଡ଼ିଗୁଡ଼ିକୁ ନିଲାମ କରି ବିକ୍ରି କରିଦେଇଥିଲେ । ମହାରାଜାଙ୍କ ଘୋଡ଼ାଶାଳରେ ଅନେକ ଗୁଡ଼ିଏ ଘୋଡ଼ାଦୌଡ଼ରେ ଦୌଡ଼ିବା ଉପଯୋଗୀ ରେସ୍ ହର୍ଷ ଅଷ୍ଟ୍ରେଲିଆରୁ ଆମଦାନୀ କରାଯାଇ ରଖାଯାଇଥିଲା । ସେଗୁଡ଼ିକ କୌଣସି କାମରେ ଲାଗୁନଥିଲା । ସରକାର ସେ ଘୋଡ଼ାଗୁଡ଼ିକୁ ବିକ୍ରିକରି ଦେଇଥିଲେ । ପୋଲିସ ବାହିନୀର ସଂସ୍କାର କରାଯାଇ ଅଧିକ ସଶସ୍ତ୍ର ପୋଲିସ ମୁତୟନ କରାଯାଉଥିଲା । ଷ୍ଟେଟ୍ ପୋଲିସ୍ ପୂର୍ବରୁ ପୁରୁଣା କାଳିଆ ମାସ୍କେଟ ବନ୍ଧୁକ ବ୍ୟବହାର କରୁଥିଲେ । ତା ବଦଳରେ ପୋଲିସ ବାହିନୀକୁ ଥ୍ରୀ ନଟ୍ ଥ୍ରୀ ରାଇଫଲ୍ ଯୋଗାଇ ଦିଆଯାଇଥିଲା । ରାଜ୍ୟ ସରକାର କୋହଳ ନୀତି ଅନୁସରଣ କରି ଭୂମିହୀନ ଲୋକଙ୍କ ଘରଡିହ ଓ ଚାଷ ଜମି ପଟ୍ଟା ଦେଇଥିଲେ । ମନ୍ତ୍ରୀ ମଣ୍ଡଳର ସବୁଠାରୁ ଉଲ୍ଲେଖନୀୟ କାମ ଥିଲା ରାଜସ୍ୱ ଆଦାୟରେ ସଂସ୍କାର ଓ ଶିକ୍ଷା ବିସ୍ତାର । ମୟୂରଭଞ୍ଜ ଷ୍ଟେଟ ଅମଳରେ ଭୂରାଜସ୍ୱ ପଧାନ ଓ ସର୍ଦ୍ଦାରମାନଙ୍କ ଜରିଆରେ ଆଦାୟ କରାଯାଉଥିଲା । ଏମାନେ କମିଶନ ନେଇ ରାଜସ୍ୱ ଆଦାୟ କରିବା ପାଇଁ ନିଯୁକ୍ତ ହୋଇଥିଲେ ହେଁ ବ୍ରିଟିଶ ଶାସିତ ଭାରତର ଜମିଦାର ମାନଙ୍କ ପରି ବ୍ୟବହାର କରୁଥିଲେ ଓ ବହୁ ସୁବିଧା ସୁଯୋଗ ପାଉଥିଲେ । ସେମାନେ ଥିଲେ ସାମନ୍ତବାଦୀ ଶୋଷଣ ଓ ଅତ୍ୟାଚାରର ପ୍ରତୀକ । ମୟୂରଭଞ୍ଜ ପ୍ରଜାମଣ୍ଡଳ ମୁଖ୍ୟତ ଏମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରୁଥିଲା । ମନ୍ତ୍ରୀମଣ୍ଡଳ ଗଠିତ ହେବା ପରେ ଏହି ପଧାନି ଓ ସର୍ଦ୍ଦାର ପ୍ରଥା ଉଚ୍ଛେଦ କରାଯାଇ ନନ୍‌ଗେଜେଟେଡ ତହସିଲଦାରମାନଙ୍କ ଜରିଆରେ ରାଜସ୍ୱ ଆଦାୟ କରିବା ପାଇଁ ପଦକ୍ଷେପ ନିଆଯାଇଥିଲା । ସେହିପରି ମନ୍ତ୍ରୀମଣ୍ଡଳ ଶାସନଭାର ଗ୍ରହଣ କରିବା ପରେ ସର୍ବ ପ୍ରଥମେ ବାରିପଦାଠାରେ ଗୋଟିଏ କଳା ଓ ବିଜ୍ଞାନର ଡିଗ୍ରୀ କଲେଜ ସ୍ଥାପନ କରିବା ପାଇଁ ପଦକ୍ଷେପ ନେଇଥିଲେ । ଏହି କଲେଜ ନିର୍ମାଣ ପାଇଁ ସ୍ୱର୍ଗତ ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କ ବିଧବା ପତ୍ନୀ ବଡ଼ ମହାରାଣୀ ସାହେବା ତାଙ୍କର ତଖତପୁରସ୍ଥିତ ବିସ୍ତୀର୍ଣ୍ଣ ଉଦ୍ୟାନ ବାଟିକା ଦାନ କରିଥିଲେ । ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କ ନାମରେ ଏହି କଲେଜ ନାମିତ ହୋଇଥିଲା । ବାରିପଦାସ୍ଥିତ ବାଳିକା ମଧ୍ୟ ଇଂରାଜୀ ବିଦ୍ୟାଳୟକୁ ବାଳିକା ହାଇସ୍କୁଲରେ ପରିଣତ କରିବା ସହିତ କରଞ୍ଜିଆ ଉଦଳା

ଓ ବେତନଟୀରେ ହାଇସ୍କୁଲମାନ ସ୍ଥାପିତ ହୋଇଥିଲା । ରାଜ୍ୟର ସବୁ ମଧ୍ୟ ଇଂରାଜୀ ବିଦ୍ୟାଳୟକୁ ପର୍ଯ୍ୟାୟ କ୍ରମେ ହାଇସ୍କୁଲରେ ପରିଣତ କରିବା ପାଇଁ ମଧ୍ୟ ସ୍ଥିର ହୋଇଥିଲା ।

ମୟୂରଭଞ୍ଜର ପ୍ରଧାନମନ୍ତ୍ରୀ ଭାବେ ନିଯୁକ୍ତ ହୋଇଥିବା ପ୍ରଜାମଣ୍ଡଳ ନେତା ଶରତ ଚନ୍ଦ୍ର ଦାସ ଥିଲେ ଯାଜପୁର ଅଞ୍ଚଳର ଲୋକ । ସେ ବାରିପଦାରେ ଜଣେ ମୁକ୍ତାର ଭାବେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ଭାରତୀୟ ଜାତୀୟ କଂଗ୍ରେସର ପୃଷ୍ଠପୋଷକତାରେ ଦେଶୀୟ ରାଜ୍ୟ ମାନଙ୍କରେ ପ୍ରଜାମଣ୍ଡଳ ଆନ୍ଦୋଳନ ଆରମ୍ଭ କରାଯିବା ପରେ ଶରତବାବୁ ମୟୂରଭଞ୍ଜ ପ୍ରଜାମଣ୍ଡଳର ସଙ୍ଗଠନ କରିଥିଲେ । ପ୍ରଜାମଣ୍ଡଳର ପ୍ରଧାନ ଲକ୍ଷ୍ୟଥିଲା ବ୍ରିଟିଶ ସରକାରର ପଦଲେହନ କାରୀ ରାଜତନ୍ତ୍ରର ଉଚ୍ଛେଦ । ପୁଣ୍ୟଶ୍ଳୋକ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଅମଳରୁ ମୟୂରଭଞ୍ଜରେ ପ୍ରଜାକଲ୍ୟାଣମୁଖୀ ସୁଶାସନ ପ୍ରବର୍ତ୍ତିତ ହୋଇଥିଲା । ପରବର୍ତ୍ତୀ ରାଜାମାନେ ମଧ୍ୟ ସେହି ନୀତି ଅନୁସରଣ କରିଥିଲେ । ତେଣୁ ଏହି ଗଡ଼ଜାତ ରାଜ୍ୟଟିରେ ରାଜତନ୍ତ୍ର ବିରୁଦ୍ଧରେ ପ୍ରଜା ଅସନ୍ତୋଷ ନଥିଲା କହିଲେ ଚଳେ । ଯାହା କିଛି ଅସନ୍ତୋଷ ଥିଲା ତାହାଥିଲା ଖଜଣା ଅସୁଲକାରୀ ସର୍ଦ୍ଦାର, ପଧାନ, ହାଟ ପଟ୍ଟାଦାର, ସୁଧଖୋର ମହାଜନ ଓ ଦୁର୍ନୀତି ଗ୍ରସ୍ତ ପୋଲିସ ଓ ଜଙ୍ଗଲ ବିଭାଗର ତଳିଆ କର୍ମଚାରୀମାନଙ୍କ ବିରୁଦ୍ଧରେ । ମୟୂରଭଞ୍ଜରେ ପ୍ରଜାମଣ୍ଡଳକୁ ପ୍ରତିଷ୍ଠିତ କରିବା ଅତ୍ୟନ୍ତ କଷ୍ଟସାଧ୍ୟ ଥିଲା । ସେହି କଷ୍ଟ ସାଧ୍ୟ କାମରେ ନିଜକୁ ନିୟୋଜିତ କରିଥିଲେ ଶରତ ବାବୁ । ଫଳରେ ସାରା ଜୀବନ ସେ ପାଇଥିଲେ ଦାରିଦ୍ର୍ୟ, ଉପେକ୍ଷା ଓ ରାଜରୋଷ । ତଥାପି ଏହି ଗାନ୍ଧୀବାଦୀ ନେତା ହତୋତ୍ସାହ ନହୋଇ ତାଙ୍କ ସଂଗ୍ରାମ ଜାରି ରଖିଥିଲେ । ନିଜ ହାତରେ ସେ ଗଢ଼ିଥିଲେ ହରିହର ମହାନ୍ତି ପ୍ରସନ୍ନ ଦାଶ, ସାକିଲା ସରେନ, ଗିରୀଶ ରାୟ ପ୍ରଭୃତି କେତେଜଣ ନିଷ୍ଠାପର ଓ ଉତ୍ସର୍ଗୀକୃତ ଦେଶପ୍ରେମୀଙ୍କୁ । ଶରତବାବୁଙ୍କ ଗାନ୍ଧୀବାଦ ପ୍ରତି ନିଷ୍ଠା ତାଙ୍କୁ ମୟୂରଭଞ୍ଜ ଗାନ୍ଧୀ ଉପାଧିରେ ଭୂଷିତ କରିଥିଲା ।

ମୟୂରଭଞ୍ଜର ପ୍ରଧାନ ମନ୍ତ୍ରୀ ହେବା କାଳରେ ଦେଓ୍ୱାନକୋଠି (ବର୍ତ୍ତମାନ ଜିଲ୍ଲାପାଳଙ୍କ ନିବାସ) ଥିଲା ତାଙ୍କ ସରକାରୀ ବାସ ଭବନ । ସେ ସେହି ପ୍ରାସାଦୋପମ ଘରେ ମଧ୍ୟ ନିଜର ନିରାଡ଼ମ୍ବର ଜୀବନ ଯାପନ କରୁଥିଲେ । ସେ ସେହି ଘରେ ଥିବାବେଳେ ସରକାରୀ ଆସବାବ ପତ୍ର ଖଟ ପଲଙ୍କ ଗଦି ଦିଆ ବିଛଣା ବ୍ୟବହାର ନକରି ସବୁଦିନେ ବ୍ୟବହାର କରୁଥିବା

ଦଉଡ଼ିଆ ଖଟିଆଟିରେ ଶୋଉଥିଲେ । ତାଙ୍କ ପତ୍ନୀ ତଳେ ସପଟିଏ ପାରି ଶୋଉଥିଲେ । ସେ ନିଜ ପିଲାମାନଙ୍କୁ ସରକାରୀ ବାସଭବନକୁ ନେଇ ନଥିଲେ । ସେମାନେ ପୂର୍ବପରି ବାରିପଦା ସହରରେ ସେମାନଙ୍କ ଛୋଟ ଚାଳଘରେ ରହୁଥିଲେ । ମନ୍ତ୍ରୀମଣ୍ଡଳ ବରିଷ୍ଠ ସଦସ୍ୟ ରାଜସ୍ୱ ଓ ଆଇନ ମନ୍ତ୍ରୀ ବିଦ୍ୟାଧର ମହାପାତ୍ର ଥିଲେ ମୟୂରଭଞ୍ଜ ଷ୍ଟେଟର ପ୍ରାକ୍ତନ ଷ୍ଟେଟ ଜଜ୍ ଓ ଚିଫ୍ ରେଭିନ୍ୟୁ ଅଫିସର । ସେ ମୁଖ୍ୟ ଜଜ୍ ଭାବେ ଓ ରାଜସ୍ୱ ପ୍ରଶାସନର ମୁଖ୍ୟ ଭାବେ ଦୀର୍ଘକାଳ କାର୍ଯ୍ୟ କରିଥିବାରୁ ପ୍ରଶାସନିକ କାର୍ଯ୍ୟରେ ଅଭିଜ୍ଞ ଥିଲେ । ବିଦ୍ୟାଧର ବାବୁ ଥିଲେ ମୟୂରଭଞ୍ଜ ଷ୍ଟେଟ୍‌ର ପ୍ରଥମ ଗ୍ରାଜୁଏଟ । ଜଣେ ଡେପୁଟି ମାଜିଷ୍ଟ୍ରେଟ ଭାବେ କାର୍ଯ୍ୟ ଆରମ୍ଭ କରି ସେ ଷ୍ଟେଟ ସର୍ଭିସ୍‌ର ସର୍ବୋଚ୍ଚ ପଦବୀକୁ ଉନ୍ନୀତ ହୋଇଥିଲେ । ମନ୍ତ୍ରୀମଣ୍ଡଳର ଅନ୍ୟତମ ସଦସ୍ୟ ଆଦିବାସୀ ପ୍ରତିନିଧି ତଥା ବିକାଶ ମନ୍ତ୍ରୀ ମହେଶ୍ୱର ନାଏକ ଉଚ୍ଚଶିକ୍ଷା ସମାପ୍ତ କରି ଷ୍ଟେଟ ଚାକିରିରେ ଯୋଗଦେଇ ଶିକ୍ଷ ବିଭାଗର ସହକାରୀ ନିର୍ଦ୍ଦେଶକ ପଦୀବରେ ଅବସ୍ଥାପିତ ହୋଇଥିଲେ । କିନ୍ତୁ ତାଙ୍କ ଯୋଗ୍ୟତା ଓ ବରିଷ୍ଠତାକୁ ଉପେକ୍ଷା କରି ତାଙ୍କୁ ପଦୋନ୍ନତି ଦିଆ ନିଯିବାରୁ ସେ ଚାକିରିରୁ ଇସ୍ତଫା ଦେଇ ଦେଇଥିଲେ । ମହେଶ୍ୱର ବାବୁ ଜଣେ ନାଟ୍ୟକାର ଓ କବି ଥିଲେ । ପରବର୍ତ୍ତୀ ଜୀବନରେ ସେ ସକ୍ରୀୟ ରାଜନୀତିରେ ଯୋଗଦେଇ ଲୋକସଭା ସଦସ୍ୟ ଭବେ ନିର୍ବାଚିତ ହୋଇଥିଲେ ।

ଗୋଟିଏ ବର୍ଷ ମୟୂରଭଞ୍ଜ ସ୍ୱତନ୍ତ୍ର ରହିବା ଅବସରରେ ମହାରାଜା ନିଜ ପାଇଁ ଅନେକ ଗୁଡ଼ିଏ ସୁବିଧା ହାସଲ କରିନେଇଥିଲେ । ସେହି ସମୟ ଭିତରେ ସେ ଷ୍ଟେଟ ସରକାରଙ୍କ ଠାରୁ ତାଙ୍କ ବ୍ୟକ୍ତିଗତ ସମ୍ପତ୍ତି ଚିହ୍ନଟ କରି ବଣ୍ଟୁଆରା କରି ନେଇଥିଲେ । ସରକାରଙ୍କ ରିଜର୍ଭ ଫଣ୍ଡରେ ଥିବା ଦୁଇକୋଟି ଟଙ୍କା ଭିତରୁ ମହାରାଜା ତାଙ୍କ ଭାଗ କୋଟିଏ ଟଙ୍କା ନିଜ ବ୍ୟକ୍ତିଗତ ଏକାଉଣ୍ଟକୁ ନେଇଯାଇଥିଲେ । ସେ ଯେଉଁ ବିପୁଳ ପରିମାଣର ସୁନା କିଣି ଟ୍ରେଜେରୀ ଷ୍ଟ୍ରଂ ରୁମ୍‌ରେ ରଖିଥିଲେ ତାହାକୁ ନିଜ ନାମରେ ବ୍ୟାଙ୍କ୍‌ରେ ନେଇ ରଖି ଦେଇଥିଲେ । ସରକାରୀ କର୍ମଚାରିଙ୍କ ପାଇଁ ଉଦ୍ଦିଷ୍ଟ ବାସଗୃହ ମଧ୍ୟରୁ କେତୋଟି ବାସଗୃହ ନିଜ କର୍ମଚାରୀମାନଙ୍କ ପାଇଁ ନେଇଥିଲେ । ରାଣୀବାଗ ମଞ୍ଚାବନ୍ଧା ପ୍ରଭୃତି ବଗିଚା ଓ ପ୍ରଚୁର ପରିମାଣର ଉତ୍କୃଷ୍ଟ ଚାଷ ଜମି ମଧ୍ୟରେ ବ୍ୟକ୍ତିଗତ ସମ୍ପତ୍ତି ଭାବେ ନେଇଥିଲେ । ସେହିବର୍ଷକ ଭିତରେ ମହାରାଜା ଭାରତବର୍ଷ ଛାଡ଼ି ବିଲାତ ଚାଲିଯାଉଥିବା ଆସାମ ଓ ଦାର୍ଜ୍ଜିଲିଂ ଅଞ୍ଚଳର ବ୍ରିଟିଶ ଚା

ବଗିଚା ମାଲିକମାନଙ୍କ ପାଖରୁ ବିପୁଳ ପରିମାଣରେ ଚା ବଗିଚା ଶସ୍ତା ଦରରେ କିଣିଥିଲେ । କଲିକତାରେ ବହୁ ବ୍ୟବସାୟ ପ୍ରତିଷ୍ଠାନରେ ଅଂଶଧନ ବିନିଯୋଗ କରି ନିଜର ଭବିଷ୍ୟତ ସୁରକ୍ଷିତ କରିବା ପାଇଁ ସକ୍ଷମ ହୋଇଥିଲେ ।

ମୟୂରଭଞ୍ଜ ରାଜ୍ୟ ଓଡ଼ିଶାରେ ନ ମିଶି ଅଲଗା ହୋଇ ରହିବା ଦ୍ୱାରା ନିଶ୍ଚିତ ଭାବେ ମୟୂରଭଞ୍ଜ ମହାରାଜା ନିଜ ସ୍ୱାର୍ଥ ସୁରକ୍ଷିତ କରି ପାରିଥିଲେ । କିନ୍ତୁ ଏହାଦ୍ୱାରା ଓଡ଼ିଶାର ପ୍ରଭୂତ କ୍ଷତି ହୋଇଥିଲା । ୧୯୪୭ ମସିହା ଡିସେମ୍ବର ମାସରେ ଓଡ଼ିଶା ସହିତ ମିଶିଥିବା ଦୁଇଟି ଓଡ଼ିଆ ଭାଷାଭାଷୀ ଦେଶୀୟ ରାଜ୍ୟ ଷଢ଼େଇକଳା ଓ ଖରସୁଆଁକୁ ଓଡ଼ିଶାରୁ କାଢ଼ିନିଆ ଯାଇ ବିହାରରେ ମିଶାଇ ଦିଆଯାଇଥିଲା । ମୟୂରଭଞ୍ଜ ସ୍ୱତନ୍ତ୍ର ହୋଇ ରହିବା ଦ୍ୱାରା ରାଜନୈତିକ ମାନଚିତ୍ରରେ ଓଡ଼ିଶା ସହିତ ଷଢ଼େଇକଳା ଖରସୁଆଁ ସଂଯୁକ୍ତ ହୋଇ ରହିପାରିନଥିଲା । ମଝିରେ ରହିଯାଉଥିଲା ସ୍ୱତନ୍ତ୍ର ମୟୂରଭଞ୍ଜ ରାଜ୍ୟ । ସେହି ଯୁକ୍ତି ଦର୍ଶାଇ ଏହି ଦେଶୀୟ ରାଜ୍ୟ ଦୁଇଟିକୁ ଭାରତ ସରକାର ଓଡ଼ିଶାରୁ କାଢ଼ିନେଇ ଅସ୍ଥାୟୀ ଭାବେ ବିହାରରେ ମିଶାଇ ଦେଲେ । ଓଡ଼ିଶାର ଦୁର୍ବଳ ନେତୃତ୍ୱ ବିହାରର ସର୍ବମାନ୍ୟ ନେତା ବାବୁ ରାଜେନ୍ଦ୍ର ପ୍ରସାଦଙ୍କ ଇଚ୍ଛା ବିରୁଦ୍ଧରେ ପାଟି ଫିଟାଇବାକୁ ସାହସ କରିନଥିଲେ । ତାପରେ ବିହାର ସରକାର ମୟୂରଭଞ୍ଜକୁ ନେବାପାଇଁ ଚକ୍ରାନ୍ତ ଆରମ୍ଭ କରିଦେଇଥିଲା । ଆଦିବାସୀ ନେତା ସୁନାରାମ ସରେନ ମୟୂରଭଞ୍ଜକୁ ବିହାରରେ ମିଶାଇବା ପାଇଁ ଆନ୍ଦୋଳନ ଆରମ୍ଭ କରିଦେଲେ । ପ୍ରତିଦିନ ହଜାର ହଜାର ସଂଖ୍ୟାରେ ଆଦିବାସୀ ନାରୀ-ପୁରୁଷ ବିଭିନ୍ନ ପ୍ରକାର ମାରଣାସ୍ତ୍ରରେ ସଜ୍ଜିତ ହୋଇ ଶୋଭାଯାତ୍ରା କରି ବାରିପଦା ସହର ପରିକ୍ରମା କରିବାକୁ ଲାଗିଲେ । ସେମାନଙ୍କର ସ୍ଲୋଗାନ ଥିଲା ଉଡ଼ିଶା ମୁଲୁକ ବାଂଚଲା... ଆମେ ଓଡ଼ିଶାରେ ମିଶିବାକୁ ଚାହୁଁନା ।

ମୟୂରଭଞ୍ଜ ମନ୍ତ୍ରୀମଣ୍ଡଳ ସ୍ୱତନ୍ତ୍ର ମୟୂରଭଞ୍ଜ ରାଜ୍ୟରେ ହିଂସାମୁଖୀ ଆଦିବାସୀ ଆନ୍ଦୋଳନକୁ ପ୍ରତିହତ କରିବା ପାଇଁ ଅସମର୍ଥ ବୋଲି ଉପଲବ୍ଧି କରିବା ପରେ ଭାରତ ସରକାରଙ୍କୁ କ୍ଷମତା ହସ୍ତାନ୍ତର କରିଦେବା ପାଇଁ ନିଷ୍ପତ୍ତି ନେଇଥିଲେ । ମହାରାଜା ଓ ଶରତବାବୁ ୧୯୪୮ ଅକ୍ଟୋବର ୧୬ ତାରିଖ ଦିନ ଦିଲ୍ଲୀ ଯାଇ ମହାରାଜା ଭାରତ ସହିତ ମୟୂରଭଞ୍ଜର ମିଶ୍ରଣ ଚୁକ୍ତି ସ୍ୱାକ୍ଷର କରିଦେଇଥିଲେ । ମୟୂରଭଞ୍ଜର ପ୍ରଶାସକ ଭାବେ ଆସିଥିଲେ ଶ୍ରୀ ଡି.ଭି. ରିଗେ ଆଇ.ସି.ଏସ୍ । ସେ ନଭେମ୍ବର ମାସରେ ମୟୂରଭଞ୍ଜର ଚିଫ୍ କମିଶନର ଭାବେ ଶାସନ କ୍ଷମତା ଗ୍ରହଣ କରିଥିଲେ । ଶ୍ରୀ ରିଗେ

ମୟୂରଭଞ୍ଜର ସମସ୍ୟାକୁ ସବୁ ଦିଗରୁ ଅନୁଧ୍ୟାନ କରି ତାହା ଓଡ଼ିଶା ସହିତ ମିଶିବା ଉଚିତ ବୋଲି ସୁପାରିଶ କରିଥିଲେ ଓ ଜାନୁୟାରୀ ୧୯୪୯ରେ ଭାରତ ସରକାର ମୟୂରଭଞ୍ଜକୁ ଓଡ଼ିଶା ସହିତ ମିଶାଇ ଦେଇଥିଲେ। ତାପରେ ଆଦିବାସୀ ଆନ୍ଦୋଳନ ତୀବ୍ର ରୂପ ନେଇ ଥିଲା । କିନ୍ତୁ ଓଡ଼ିଶା ସରକାର ସେହି ଆନ୍ଦୋଳନକୁ ଦମନ କରିଦେଇଥିଲେ । ସବୁ ହେଲା- କିନ୍ତୁ ଅସ୍ଥାୟୀ ଭାବେ ବିହାର ସହିତ ମିଶିଥିବା ଷଢେଇକଳା- ଖରସୂଆଁ ଆଉ ଓଡ଼ିଶାକୁ ଫେରିଲା ନାହିଁ ।

ଆଗରୁ କହିଚି ମୟୂରଭଞ୍ଜ ଷ୍ଟେଟର ପ୍ରଜାମଣ୍ଡଳ ଆନ୍ଦୋଳନ ବିଶେଷ ଦାନା ବାନ୍ଧି ପାରିନଥିଲା । ଏହି ଦେଶୀୟ ରାଜ୍ୟଟିର ଶାସନ ବ୍ୟବସ୍ଥା ପରିମାର୍ଜିତ ଓ ଉନ୍ନତ ଥିଲା । ମୋଗଲବନ୍ଦୀ ଅଞ୍ଚଳର ବ୍ରିଟିଶ ଶାସନ ବ୍ୟବସ୍ଥା ସହିତ ଏହା ପ୍ରାୟ ସମକକ୍ଷ ଥିଲା । ପ୍ରଜାମାନଙ୍କର ରାଜାଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ନଥିଲା । ତଥାପି ମହାରାଜା ଆଦିବାସୀ ପ୍ରଜାମାନଙ୍କୁ ପ୍ରଜାମଣ୍ଡଳ ଆନ୍ଦୋଳନରୁ ଦୂରେଇ ରଖିବା ପାଇଁ ରାଞ୍ଚିର ଜୟପାଲ ସିଂହଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ଝାଡ଼ଖଣ୍ଡ ଆନ୍ଦୋଳନକୁ ନିଜ ରାଜ୍ୟରେ ପରୋକ୍ଷ ଭାବେ ଉତ୍ସାହିତ କରିଥିଲେ । ମହାରାଜାଙ୍କର ଏହି ଡିଭାଇଡ୍ ଏଣ୍ଡ ରୁଲ୍ ନୀତି ଯୋଗୁ ପରବର୍ତ୍ତୀ ସମୟରେ ମୟୂରଭଞ୍ଜରେ ଓଡ଼ିଶା ବିରୋଧୀ ଆଦିବାସୀ ଆନ୍ଦୋଳନ ହୋଇଥିଲା । ମୟୂରଭଞ୍ଜର ଓଡ଼ିଶା ସହିତ ମିଶ୍ରଣ ପରେ ଓଡ଼ିଶାର କଂଗ୍ରେସ କର୍ତ୍ତୃପକ୍ଷ ମଧ୍ୟ ଭୁଲ୍ ନିଷ୍ପତ୍ତି ନେଇ ମୟୂରଭଞ୍ଜ ପ୍ରଜାମଣ୍ଡଳରେ କଂଗ୍ରେସ ପ୍ରେମୀ ଗାନ୍ଧିବାଦୀ କର୍ମୀମାନଙ୍କୁ କଂଗ୍ରେସ ସଂଗଠନରେ ଗ୍ରହଣ କରି ନଥିଲେ । ସେମାନଙ୍କର ଦୋଷ ଥିଲା ସେମାନେ ମୟୂରଭଞ୍ଜକୁ ଗୋଟିଏ ସ୍ୱତନ୍ତ୍ର କେନ୍ଦ୍ରଶାସିତ ଅଞ୍ଚଳ ରୂପେ ରଖିବାକୁ ଚାହିଁଥିଲେ । ଏହି ଅଭିଯୋଗ ଅନେକଟା କାଳ୍ପନିକ ଥିଲା । ମୟୂରଭଞ୍ଜର ଅଧିକାଂଶ ଲୋକ ଓଡ଼ିଶାରେ ନ ମିଶି ସ୍ୱତନ୍ତ୍ର ସତ୍ତା ବଜାଏ ରଖିବା ସପକ୍ଷରେ ଥିଲେ । ପ୍ରଜାମଣ୍ଡଳ କର୍ମୀମାନଙ୍କର ସେ ଦିଗରେ ବିଶେଷ କିଛି ଭୂମିକା ନଥିଲା । ଭାଗ୍ୟର ବିଡ଼ମ୍ବନା- ଦଳେ ସୁବିଧାବାଦୀ ଲୋକ, ଯେଉଁମାନେ ସାରାଜୀବନ ରାଜାଙ୍କ ଗୋଡ଼ାଣିଆ ହୋଇ ଏ ଦେଶର ସ୍ୱାଧୀନତା ଲାଭର ବିରୋଧ କରୁଥିଲେ- ଓଡ଼ିଶା ସହ ମିଶ୍ରଣର ଯୋରଦାର ପ୍ରତିବାଦ କରୁଥିଲେ, ସେମାନେ ମିଶ୍ରଣ ପରେ ଖଦଡ଼ ପୋଷାକ ପିନ୍ଧି ରାତାରାତି କଂଗ୍ରେସ ବାଲା ହୋଇଗଲେ । ଉତ୍କଳ କଂଗ୍ରେସ କମିଟି ସେମାନଙ୍କୁ ସ୍ୱୀକୃତି ଦେଇ ନିଜ ଅନୁଷ୍ଠାନରେ ଗ୍ରହଣ କରିନେଲା । ବାଧ୍ୟହୋଇ ପ୍ରଜାମଣ୍ଡଳ କର୍ମୀମାନେ ପ୍ରଜା

ସୋସାଲିଷ୍ଟ ଦଳରେ ସାମିଲ ହୋଇଯାଉଥିଲେ । ଫଳରେ ମୟୂରଭଞ୍ଜରେ ଜନସ୍ୱାର୍ଥ ବିରୋଧି ସାମନ୍ତବାଦୀ ଲୋକମାନଙ୍କ ଦ୍ୱାରା ପରିପୁଷ୍ଟ କଂଗ୍ରେସ ଦଳ ଲୋକପ୍ରିୟ ହୋଇପାରିନଥିଲା । ପ୍ରଜାମଣ୍ଡଳ କର୍ମୀମାନଙ୍କ ଦ୍ୱାରା ଗଠିତ ପ୍ରଜା ସାମ୍ୟବାଦୀ ଦଳ ସର୍ବାଧିକ ଲୋକପ୍ରିୟ ରାଜନୈତିକ ଦଳ ଥିଲା । ମୟୂରଭଞ୍ଜରୁ ପ୍ରଜା ସୋସାଲିଷ୍ଟ ଦଳ, ମହାରାଜାଙ୍କ ଭାଇ ବିରାବରମାନଙ୍କ ଦ୍ୱାରା ପରିପୁଷ୍ଟ ଗଣତନ୍ତ୍ର ପରିଷଦ ଓ ଆଦିବାସୀ ମାନଙ୍କ ଝାଡ଼ଖଣ୍ଡ ଦଳର ପ୍ରାର୍ଥୀମାନେ ବିଧାନ ସଭାକୁ ନିର୍ବାଚିତ ହେବାକୁ ଲାଗିଲେ । ମୟୂରଭଞ୍ଜ ଜିଲ୍ଲାରୁ କଂଗ୍ରେସର ସତ୍ତା ଲୋପ ପାଇ ଯାଇଥିଲା । ବିରୋଧି ଦଳ ପ୍ରାର୍ଥୀଙ୍କୁ ଭୋଟ ଦେଉଥିବା ମୟୂରଭଞ୍ଜ ଜିଲ୍ଲାର ଉନ୍ନତି ପାଇଁ ଓଡ଼ିଶାର କଂଗ୍ରେସ ସରକାର ସବୁଦିନେ ବୀତସ୍ପୃହ ଥିଲେ । ଫଳରେ ମୟୂରଭଞ୍ଜରେ କୌଣସି ଆଖି ଦୃଶିଆ ଉନ୍ନୟନ କାମ ହୋଇନଥିଲା । ସେଠାରେ ଶିଳ୍ପାୟନ ହୋଇ ପାରିନଥିଲା । ବିଗତ ପଚାଶ ବର୍ଷ ଭିତରେ ଶିକ୍ଷିତ ଯୁବକମାନଙ୍କୁ କର୍ମ ସଂସ୍ଥାନ ଦେଇ ପାରିବା ଭଳି ଗୋଟିଏ ବି ବୃହତ ବା ମଧ୍ୟମ ଧରଣର ଶିଳ୍ପ ମୟୂରଭଞ୍ଜରେ ପ୍ରତିଷ୍ଠିତ ହୋଇପାରିନାହିଁ । ରାଜୁଡ଼ା ଅମଳରୁ ଯେଉଁସବୁ କୁଟୀର ଶିଳ୍ପ ବା ଛୋଟ ଛୋଟ ଶିଳ୍ପ କାରଖାନା ଗଢ଼ି ଉଠିଥିଲା ସରକାରୀ ପୃଷ୍ଠ ପୋଷକତା ଅଭାବରୁ ସେ ସବୁ ବିଲୁପ୍ତ ହୋଇଯାଇଥିଲା । ମିଶ୍ରଣ ପୂର୍ବରୁ ବାରିପଦାର ମୟୂରଭଞ୍ଜ ଟେକ୍ସଟାଇଲରୁ ଉତ୍ପାଦିତ ମୟୂରଭଞ୍ଜ ଗେଞ୍ଜିର ବହୁତ ଚାହିଦା ଥିଲା । ସେହି ସରକାରୀ ଗେଞ୍ଜି ଫ୍ୟାକ୍ଟରୀଟିକୁ ବନ୍ଦ କରି ଦିଆଯାଇଥିଲା । ମୟୂରଭଞ୍ଜରେ ଟସର ଉତ୍ପାଦିତ ହୋଇ ବାରିପଦାରେ ଟସର ଓ ବାପ୍ତା କପଡ଼ାର ଉତ୍ପାଦନ କରାଯାଉଥିଲା । ଏହି ଦେଶଜ ସିଲ୍କର ଦେଶ ବିଦେଶରେ ପ୍ରବଳ ଚାହିଦା ଥିବା ସତ୍ତ୍ୱେ ଏହାର ପ୍ରସାର ପାଇଁ କିଛି କାର୍ଯ୍ୟ କରାଯାଇନଥିଲା । ଉଚ୍ଚଶିକ୍ଷା ବିସ୍ତାର ପାଇଁ ସରକାର କୌଣସି ପଦକ୍ଷେପ ନେଇ ନଥିଲେ । ବାରିପଦାରେ ଗୋଟିଏ ଇଞ୍ଜିନିୟରିଂ ବା ମେଡ଼ିକେଲ କଲେଜ ସ୍ଥାପନ କରିବା ପାଇଁ ଆବଶ୍ୟକତା ଓ ସୁବିଧା ସୁଯୋଗ ଥିବା ସତ୍ତ୍ୱେ ସରକାର ସେଥିପ୍ରତି କୌଣସି ଆଗ୍ରହ ଦେଖାଇ ନଥିଲେ । ଏପରିକି ବାରିପଦାର ଏମ.ପି.ସି. କଲେଜକୁ ତଖତପୁରରେ ନିର୍ମିତ ନିଜସ୍ୱ କୋଠାକୁ ଉଠାଇ ଦେବାପାଇଁ ମଧ୍ୟ କୌଣସି ସରକାରୀ ତତ୍ପରତା ପ୍ରକାଶ ପାଇନଥିଲା ।

କ୍ରମାଗତ ସରକାରୀ ଅବହେଳାର ଶିକାର ହୋଇ ହୋଇ ମୟୂରଭଞ୍ଜ ସହ ତାର ରାଜଧାନୀ ବାରିପଦା କ୍ରମେ ନିଷ୍ପ୍ରଭରୁ ନିଷ୍ପ୍ରଭତର ହୋଇଯାଇ

ନିଜର ସବୁ ବୈଶିଷ୍ଟ୍ୟ ହରାଇ ଦେଇଥିଲା । ଏକଦା ରସରାସମୟୀ ସୁନ୍ଦରୀ ନର୍ମଦା ବାରିପଦା ଗୋଟିଏ ଅତି ସାଧାରଣ ଜିଲ୍ଲା ସଦର ମହକୁମା ସହରରେ ପରିଣତ ହୋଇଗଲା । କିନ୍ତୁ ମିଶ୍ରଣ ପରେ ବାରିପଦାର ଜନସଂଖ୍ୟା ହଠାତ୍ ବହୁଗୁଣରେ ବଢ଼ିଯାଇଥିଲା । ଏହାପରେ ଚାକିରି କ୍ଷେତ୍ରରେ ବଦଳି ହୋଇ ବହୁ ବାହାରର ଲୋକ ବାରିପଦା ଆସିଥିଲେ । ନୂଆମୁହଁରେ ବାରିପଦା ସହର ଭରିଯାଇଥିଲା । ସେମାନେ ବାରିପଦା ଯାଇ ସେଠାକାର ସୁନ୍ଦର ଜଳବାୟୁ, ଗୃହ ନିର୍ମାଣ ଉପଯୋଗୀ ଜମିର ସୁଲଭତା, ଶସ୍ତାରେ ମିଳୁଥିବା କାଠ ଇଟା ପ୍ରଭୃତି ଗୃହ ନିର୍ମାଣ ଜିନିଷ, ମୂଲିଆ ମିସ୍ତ୍ରୀ ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଦ୍ୱାରା ଆକୃଷ୍ଟ ହୋଇ ସେଠାରେ ଘରଦ୍ୱାର କରି ସ୍ଥାୟୀ ହୋଇ ରହିଗଲେ । ବାରିପଦାର ଜୀବନ ପ୍ରବାହ, ଲୋକମାନଙ୍କର ଚାଲି ଚଳଣ ଆଚାର-ସଂସ୍କୃତି କ୍ରମେ ବଦଳିବା ଆରମ୍ଭ କରି ଦେଇଥିଲା । କେତେଦିନ ପରେ ବାରିପଦା ସହର ରାଜୁଡ଼ା ଅମଳର ବାରିପଦାଠାରୁ ସମ୍ପୂର୍ଣ୍ଣ ଭିନ୍ନ ହୋଇଯାଇଥିଲା ।

ଆଗରୁ କହିଚି ପରସ୍ପରକୁ ସାହାଯ୍ୟ କରିବା ମନୋବୃତ୍ତି ଅନ୍ୟ ସୁଖରେ ସୁଖିହେବା ଅନ୍ୟ ଦୁଃଖରେ ଦୁଃଖୀ ହେବା ଭଳି ଆନ୍ତରିକତା, ନିସ୍ୱାର୍ଥଭାବେ ଅନ୍ୟକୁ ସାହାଯ୍ୟ କରିବା ମନୋବୃତ୍ତି ଥିଲା ବାରିପଦା ସହରର ଚାରିତ୍ରିକ ବୈଶିଷ୍ଟ୍ୟ । ମିଶ୍ରଣ ପରେ ଯେଉଁ ବାହାରର ଲୋକ ଆସି ବାରିପଦାର ସ୍ଥାୟୀ ବାସିନ୍ଦା ହେଲେ ସେମାନଙ୍କ ଭିତରୁ ଅନେକେ ଥିଲେ ଆତ୍ମକୈନ୍ଦ୍ରୀକ । ବାରିପଦା ସଂସ୍କୃତି ସହ ଅପରିଚିତ ଥିଲେ ସେମାନେ । ଏହି ଆଗନ୍ତୁକ ମାନେ ବାରିପଦାର ପୁରୁଣା ବାସିନ୍ଦାଙ୍କ ସହିତ ଏକାତ୍ମ ହୋଇଯାଇ ପାରିନଥିଲେ । ସେମାନଙ୍କ ସହିତ ମନ ଖୋଲି ମିଶିବା ପାଇଁ ସ୍ଥାୟୀ ଅଧିବାସୀ ମାନଙ୍କ ମନରେ ମଧ କୁଣ୍ଠା ଓ ସଂକୋଚ ଥିଲା । ବାରିପଦା ସହରର ଅନେକ ପରିବର୍ତ୍ତନ ହୋଇଗଲା । ତାର ସାମାଜିକ ବ୍ୟବସ୍ଥା ଲଣ୍ଡଭଣ୍ଡ ହୋଇ ଯାଇଥିଲା । ତା ସହିତ ପରସ୍ପରକୁ ସାହାଯ୍ୟ କରିବା ମନୋଭାବଟା ବି ଧୀରେ ଧୀରେ ନିସ୍ତେଜ ହୋଇ ଯାଇଥିଲା । କିନ୍ତୁ ବାରିପଦାର ସେହି ଚାରିତ୍ରିକ ଗୁଣଟା ସମ୍ପୂର୍ଣ୍ଣ ଲୋପପାଇ ଯାଇନଥିଲା । ସେ କଥା ଜଣା ପଡ଼ିଲା ଅନେକ ଦିନ ପରେ । ୧୯୯୭ ମସିହା ଫେବୃୟାରୀ ମାସରେ ମଧୁବନଠାରେ ଚାଲିଥିବା ନିଗମାନନ୍ଦ ସରସ୍ୱତୀଙ୍କ ଭକ୍ତ ସମ୍ମିଳନୀ ଶିବିରରେ ଭୟାବହ ଅଗ୍ନିକାଣ୍ଡ ଘଟି ଦୁଇ ଶତାଧିକ ଭକ୍ତଙ୍କର ମୃତ୍ୟୁ ହୋଇଯାଇଥିଲା । ଆହୁରି ବହୁ ସଂଖ୍ୟକ ଭକ୍ତ ପୋଡ଼ିହୋଇ ଆହତ ହୋଇଥିଲେ । ସେତେବେଳେ ବାରିପଦାର ଜନସାଧାରଣ ସ୍ୱତଃସ୍ଫୂର୍ତ୍ତ

ଭାବେ ଯେପରି ଉଦ୍ଧାର ଓ ସେବାକାର୍ଯ୍ୟ କରିଥିଲେ ତାହା ଅତୁଳନୀୟ । ତାହା ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ଓ ଓଡ଼ିଶାର ଦୈନିକ ସମ୍ବାଦ ପତ୍ରମାନେ ତାର ଭୂୟସୀ ପ୍ରଶଂସା କରିଥିଲେ ।

ଓଡ଼ିଶା ସରକାର ଓ ଓଡ଼ିଶା ରେଡ଼କ୍ରସ ସୋସାଇଟି ତରଫରୁ ପ୍ରେରିତ ହୋଇ ଭୁବନେଶ୍ୱରର ବିଶିଷ୍ଟ ପ୍ଲାଷ୍ଟିକ ସର୍ଜନ ଡାକ୍ତର ସୁଦର୍ଶନ ବଳିଆରସିଂହ ନିଆଁରେ ପୋଡ଼ିହୋଇ ଆହତ ହୋଇଥିବା ଲୋକମାନଙ୍କ ଚିକିତ୍ସାପାଇଁ ବାରିପଦା ଯାଇଥିଲେ । ସେ ଆହତମାନଙ୍କ ସେବା ଶୁଶ୍ରୁଷା କାର୍ଯ୍ୟରେ ସ୍ଥାନୀୟ ଲୋକମାନଙ୍କ ସହଯୋଗ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଡକ୍ଟର ବଳିଆର ସିଂହ ମୋତେ କହିଥିଲେ ଯେ, ଜଣେ ଲୋକ ଗୋଟିଏ ପୋଡ଼ିହୋଇ ଯାଇଥିବା ଆହତ ଶିଶୁକୁ ଧରି ଡାକ୍ତରଖାନାରେ ଆସି ସକାଳୁ ପହଞ୍ଚିଥିଲା । ବହୁ ଗୁରୁତର ଆହତ ରୋଗୀ ଥିବାରୁ ଶିଶୁଟିକୁ ଚିକିତ୍ସା କରିବା ପାଇଁ ବିଳମ୍ବ ହୋଇଥିଲା । ଡାକ୍ତରବାବୁ ଦୀର୍ଘସମୟ ଧରି ଅପେକ୍ଷା କରୁଥିବା ସେହି ଲୋକଟିକୁ କହିଥିଲେ "ଆପଣ ତ ପିଲାଟିକୁ କୋଳରେ ଧରି ଅନେକ ବେଳୁ ବସି ରହିଲେଣି, ଆପଣଙ୍କୁ କଷ୍ଟ ହେଉଥିବ । ତା ମା ବା ଅନ୍ୟ କାହାକୁ କୁହନ୍ତୁ ପିଲାଟିକୁ ଧରିବେ, ଆପଣ ଟିକିଏ ଆରାମ ବୋଧ କରିବେ ।' ଲୋକଟି ଡାକ୍ତରବାବୁଙ୍କୁ କହିଲା, 'ପିଲାଟି ଏପରି ଭାବେ ଆହତ ହୋଇଚି ଯେ ତାକୁ ତଳେ ଶୁଆଇ ହେଉନାହିଁ, ଆଉ ତା ମା ବାପାଙ୍କୁ ତ ମୁଁ ଚିହ୍ନିନାହିଁ, କିମ୍ବା ସେମାନେ ପିଲାଟିକୁ ଖୋଜି ଏଯାଏ ଏଠାକୁ ଆସିନାହାନ୍ତି । ନିଆଁ ଭିତରୁ ଉଦ୍ଧାର କରି ମୁଁ ପିଲାଟିକୁ ଚିକିତ୍ସା ପାଇଁ ଆଣିଚି । ଏ କାହା ପିଲା ମୁଁ ଜାଣିନାହିଁ ।' ଲୋକଟି କଥା ଶୁଣି ଆଶ୍ଚର୍ଯ୍ୟ ହୋଇ ଡାକ୍ତର ବଳିଆର ସିଂହ କହିଲେ 'ପିଲାଟି ଆପଣଙ୍କର ନୁହେଁ ? ଅଥଚ କି ଆଶ୍ଚର୍ଯ୍ୟ ଆପଣ ଦୀର୍ଘ ସମୟ ଧରି ନିଜର ଶାରୀରିକ କ୍ଳେଶ ଓ ଯନ୍ତ୍ରଣାକୁ ଉପେକ୍ଷା କରି ପର ପିଲାଟିକୁ କୋଳରେ ଧରି ବସି ରହିଛନ୍ତି.... ।'

ଏଇ ହେଉଚି ବାରିପଦା- ମୋ ବାଲ୍ୟର ମୋ କୈଶୋରର ମୋ ସ୍ୱପ୍ନର ବାରିପଦା । ବାରିପଦାକୁ ମୁଁ ଯେମିତି ଦେଖିଚି କେବଳ ସ୍ମୃତି ଉପରେ ନିର୍ଭର କରି ସେମିତି ତାର ବର୍ଣ୍ଣନା ଦେବାକୁ ଚେଷ୍ଟା କରିଚି । ଯାଣେନା ସବୁ କଥା ମୁଁ ଠିକ୍ ଭାବେ କହିପାରିଚି କି ନା । ଯଦି କିଛି ତ୍ରୁଟିଥାଏ ସୁଧୀ ପାଠକ ସେଥିପାଇଁ ମୋର ଅପାରଗତାକୁ କ୍ଷମା କରିବାକୁ ଅନୁରୋଧ ।





**ଶ୍ରୀ ପ୍ରିୟବ୍ରତ ଦାସ**

---

ଜନ୍ମ : ୧୯୩୨ ଜୁନ୍ ୪ ତାରିଖ (ସାବିତ୍ରୀ ଅମାବାସ୍ୟା), ଜନ୍ମସ୍ଥାନ : ବାରିପଦା ଆଦିନିବାସ-ସୁନହଟ, ବାଲେଶ୍ୱର ସହର, ପିତା ୰ ଶଚୀନ୍ଦ୍ର ନାଥ ଦାସ, ତତ୍କାଳୀନ ମୟୂରଭଞ୍ଜ ଷ୍ଟେଟର ଶିକ୍ଷାବିଭାଗର ଅଧୀକ୍ଷକ ଥିଲେ । ସେ ଜଣେ ଶିକ୍ଷାବିତ୍ ଇଂରାଜୀ ଓ ସଂସ୍କୃତ ଭାଷାର ବିଦ୍ୱାନ ତଥା ରାଧାନାଥ ପରବର୍ତ୍ତୀ ଯୁଗର ଜଣେ କବି ଓ ଅନୁବାଦକ ଭାବେ ସୁପରିଚିତ ଥିଲେ । ମାତା ୰ କୁମୁଦିନୀ ଦେବୀ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସହୋଦରା ଥିଲେ ଓ ନିଜେ ମଧ୍ୟ ସୁଲେଖିକା ଥିଲେ । ଏକ ବଳିଷ୍ଠ ସାହିତ୍ୟିକ ପରମ୍ପରାର ଉତ୍ତରଦାୟାଦ ଭାବେ ଶ୍ରୀ ଦାସ ଆବାଲ୍ୟରୁ ସାହିତ୍ୟାନୁରାଗୀ । ଛାତ୍ରାବସ୍ଥାରୁ ସେ ଗଳ୍ପ ରଚନା ପ୍ରତି ଆଗ୍ରହୀ ଥିଲେ । ତାଙ୍କର ପ୍ରଥମ ଗଳ୍ପ ୧୯୪୮ ମସିହାରେ ପ୍ରତିଷ୍ଠିତ ସାହିତ୍ୟ ପତ୍ର 'ଡଗର'ରେ ପ୍ରକାଶିତ ହୋଇଥିଲା ।

ବାରିପଦା ଓ ବାଲେଶ୍ୱରରେ ଶିକ୍ଷା ସମାପ୍ତ କରିବା ପରେ ସେ ଓଡ଼ିଶା ପ୍ରଶାସନିକ ସେବାରେ ଯୋଗଦାନ କରି ୧୯୯୧ ମସିହାରେ ସେବାନିବୃତ୍ତ ହୋଇଥିଲେ । ସେ ୧୯୯୦ ମସିହାରୁ ଓଡ଼ିଶା ଲେଖକ ସମବାୟ ସମିତି ସହିତ ସାଙ୍ଗଠନିକ ସ୍ତରରେ ସଂଯୁକ୍ତ ଅଛନ୍ତି । ଚାକିରି ଜୀବନର କର୍ମବ୍ୟସ୍ତତା ସତ୍ତ୍ୱେ ତାଙ୍କର ସାହିତ୍ୟ ସାଧନା ଅବ୍ୟାହତ ଥିଲା । ଏ ପର୍ଯ୍ୟନ୍ତ ସେ ଚାରୋଟି ଗଳ୍ପ ସଂକଳନ, ନଅଟି ଉପନ୍ୟାସ, ତିନୋଟି ସ୍ମୃତିକଥା ଓ ଦୁଇଟି ଶିଶୁ ସାହିତ୍ୟ ପୁସ୍ତକ ରଚନା କରିବା ସହ ଦୁଇଟି ପୁସ୍ତକର ସମ୍ପାଦନା ମଧ୍ୟ କରିଛନ୍ତି ।

---